ମହାପୁରୁଷ

# ଜଗନ୍ନାଥ ଦାସଙ୍କ




ଦଶମସ୍କନ୍ଧ

## ଗୋପଲୀଳା

* ମହାପୁରୁଷ ଜଗନ୍ନାଥ ଦାସଙ୍କ କୃତ *

# ଶ୍ରୀମଦ୍ଭାଗବତ

ଉତ୍କଳ ପଦ୍ୟାନୁବାଦ

୰ ରାଜକିଶୋର ଦାସଙ୍କ ସଂକଳିତ

## ଦଶମସ୍କନ୍ଧ ଗୋପଲୀଳା

( ସଟୀକ ବିଶୁଦ୍ଧ ଚତୁର୍ଥ ସଂସ୍କରଣ )

ପ୍ରକାଶକ—**ଶ୍ରୀ ରଣଜିତ ସିଂହ**, ବି. ଏ. (ଅନର୍ସ) ଡି.ଇଡି.

ଶ୍ରୀମଦ୍ ଭାଗବତାଖ୍ୟଃ ସୁରତରୁସ୍ତାରାଙ୍କୁରଃ ସଜ୍ଜନୈଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ୍ ଭକ୍ତ୍ୟାଲବାଳୋଦୟଃ,
ଦ୍ୱାତ୍ରିଂଶତ୍ରିଶତଂ ଚ ଯସ୍ୟ ବିଲସଚ୍ଛାଖାଃ ସହସ୍ରାଣ୍ୟଳଂ
ପର୍ଣ୍ଣାନ୍ୟଷ୍ଟଦଶେଷ୍ଟଦୋଽତିସୁଲଭୋ ବର୍ବର୍ତ୍ତି ସର୍ବୋପରି ।

—ପ୍ରାପ୍ତିସ୍ଥାନ—

ଓଡ଼ିଶା ଜଗନ୍ନାଥ କମ୍ପାନୀ
ପ୍ରତିଷ୍ଠାତା ୰ ଜଗନ୍ନାଥ ସିଂହ
ବାଲୁବଜାର, କଟକ-୨

ମୂଲ୍ୟ ଃ ୬-୫୦ **ଛଅ ଟଙ୍କା ପଚାଶ ପଇସା ମାତ୍ର**



## —:* ବିଜ୍ଞାପନ *:—

ଶ୍ରୀମଦ୍‌ଭାଗବତ ଦଶମସ୍କନ୍ଧ ମୂଳ ସଂସ୍କୃତ ଅନୁସାରେ ୯୦ ଅଧ୍ୟାୟ ଥିବା ସ୍ଥଳେ ମହାତ୍ମା ଜଗନ୍ନାଥ ଦାସଙ୍କ ଉତ୍କଳପଦ୍ୟାନୁବାଦରେ ୯୬ ଅଧ୍ୟାୟ ହୋଇଅଛି ବୋଲି ପାଠକଗଣ ଭାବିବେ ନାହିଁ ଯେ ମହାତ୍ମା ଏଥିରେ ଅନ୍ୟ କିଛି ବିଷୟ ସନ୍ନିବେଶିତ କରି କଳେବର ବୃଦ୍ଧି କରିଅଛନ୍ତି । ମହାତ୍ମା ଦାସେ ମୂଳ ସଂସ୍କୃତର ୧-୩୪-୩୬-୪୫-୫୮-୭୮ ଏହି ୬ଟି ଅଧ୍ୟାୟକୁ ଦୁଇ ଦୁଇ ଅଧ୍ୟାୟ କରିବା ଦ୍ୱାରା କେବଳ ସଂଖ୍ୟାରେ ୬ଟି ଅଧ୍ୟାୟ ବଢ଼ି ଯାଇଅଛି, କିନ୍ତୁ ତହିଁର ବିଷୟମାନ ଠିକ୍ ମୂଳାନୁରୂପ ଅଛି । ପାଠକମାନଙ୍କୁ ଏହି ବର୍ଦ୍ଧିତ ଅଧ୍ୟାୟ ସଂଖ୍ୟା ମୂଳ ସଂସ୍କୃତ ସହିତ ମିଳାଇବାକୁ ଅସୁବିଧା ହେବ ବୋଧକରି ଏହି ପୁସ୍ତକର ପ୍ରତ୍ୟେକ ଅଧ୍ୟାୟ ମୂଳରେ ଯେଉଁ ଅଧ୍ୟାୟଟି ଯେଉଁ ଅଧ୍ୟାୟର ଅନୁବାଦ ତାହା ଉଲ୍ଲେଖ କରିଅଛୁଁ, ଦେଖି ମିଳାଇ ନେବେ ।



## —ସୂଚୀପତ୍ର—

# ମଙ୍ଗଳାଚରଣଂ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ॥
ବିଶ୍ୱସର୍ଗ ବିସର୍ଗାଦି—ନବଲକ୍ଷଣଲକ୍ଷିତଂ ।
ଶ୍ରୀକୃଷ୍ଣାଖ୍ୟଂ ପରଂ ଧାମ ଜଗଦ୍ଧାମ ନମାମି ତତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ଯଂ ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ ।
ବେଦୈଃ ସାଙ୍ଗପଦକ୍ରମୋପନିଷଦୈ ର୍ଗାୟନ୍ତି ଯଂ ସାମଗାଃ ॥
ଧ୍ୟାନାବସ୍ଥିତ ତଦ୍ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ ।
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ।
ନୌମୀଡ୍ୟ ! ତେଽଭ୍ରବପୁଷେ ତଡ଼ିଦମ୍ବରାୟ
ଗୁଞ୍ଜାବତଂସପରିପିଚ୍ଛ—ଲସନ୍ମୁଖାୟ ।
ବନ୍ୟସ୍ରଜେ କବଳ ବେତ୍ର-ବିଷାଣବେଣୁ-
ଲକ୍ଷ୍ମଶ୍ରିୟେ ମୃଦୁପଦେ ପଶୁପାଙ୍ଗଜାୟ ॥
ଜୟତି ଜନନିବାସୋ ଦେବକୀଜନ୍ମବାଦୋ ।
ଯଦୁବରପରିଷତ୍ ସ୍ୱୈର୍ଦୋର୍ଭିରସ୍ୟନ୍ନଧର୍ମଂ ॥
ସ୍ଥିରଚରବୃଜିନଘ୍ନଃ ସୁସ୍ମିତ ଶ୍ରୀମୁଖେନ
ବ୍ରଜପୁର ବନିତାନାଂ ବର୍ଦ୍ଧୟନ୍ କାମଦେବଂ ॥
ବ୍ରହ୍ମାଦି ଜୟସଂରୂଢ଼—ଦର୍ପକନ୍ଦର୍ପଦର୍ପହା ।
ଜୟତି ଶ୍ରୀପତି ର୍ଗୋପୀ—ରାସମଣ୍ଡଳମଣ୍ଡନଃ ॥
କସ୍ତୁରୀ ତିଳକଂ ଲଲାଟପଟଳେ ବକ୍ଷଃସ୍ଥଳେ କୌସ୍ତୁଭଂ ।
ନାସାଗ୍ରେ ବରମୌକ୍ତିକଂ କରତଳେ ବେଣୁଃ କରେ କଙ୍କଣଂ ।
ସର୍ବାଙ୍ଗେ ହରିଚନ୍ଦନଂ ସୁଲଳିତଂ କଣ୍ଠେ ଚ ମୁକ୍ତାବଳୀ ।
ଗୋପସ୍ତ୍ରୀ-ପରିବେଷ୍ଟିତୋ ବିଜୟତେ ଗୋପାଳ ଚୂଡ଼ାମଣିଃ ॥



ଶ୍ରୀ ଶ୍ରୀ ରାଧାମଦନମୋହନାଭ୍ୟାଂ ନମଃ

# ଶ୍ରୀମଦ୍ଭାଗବତ

## ଦଶମସ୍କନ୍ଧ-ଗୋପଲୀଳା

***********

( ନିରୋଧ )

### ପ୍ରଥମ ଅଧ୍ୟାୟ

ଦଶମେ ଦଶମଂ ଲକ୍ଷ୍ୟ-ମାଶ୍ରିତାଶ୍ରୟବିଗ୍ରହଂ ।
କ୍ରୀଡ଼ଦ୍ ଯଦୁକୁଳାମ୍ଭୋଧୌ ପରାନନ୍ଦମୁଦୀର୍ଯ୍ୟତେ ॥
ଦଶମେ କୃଷ୍ଣସତ୍କୀର୍ତ୍ତିବିତାନାୟାନୁବର୍ଣ୍ଣ୍ୟତେ ।
ଧର୍ମଗ୍ଳାନିନିମିତ୍ତସ୍ତୁ ନିରୋଧୋ ଦୁଷ୍ଟଭୂଭୁଜାଂ ॥
ତତ୍ର ତୁ ପ୍ରଥମେ କଂସଃ ସ୍ୱମୃତ୍ୟୁଂ ଦେବକୀସୁତାତ୍ ।
ଶ୍ରୁତ୍ୱା ଖ୍ୟାତୋଽବଧୀତ୍ ତସ୍ୟାଃ ଷଡ଼୍ ଗର୍ଭାନିତି ବର୍ଣ୍ଣ୍ୟତେ ॥

ଯେ କୃଷ୍ଣ ପରାନନ୍ଦମୟ । ଅଟନ୍ତି ଆଶ୍ରିତ ଆଶ୍ରୟ ॥
ବିହରି ଯାଦବ ସାଗରେ । ଯଶ ବିସ୍ତାରି ଏ ସଂସାରେ ॥
ନିରୋଧ କରି ଦୁଷ୍ଟ ଜନ । କରିଲେ ଧର୍ମ ସୁରକ୍ଷଣ ॥
ତାହାର ଗୁଣ ଲୀଳାରସ । ଦଶମସ୍କନ୍ଧରେ ପ୍ରକାଶ ॥
ଦେବକୀ ପୁତ୍ରେ ନିଜନାଶ । ହୋଇବ ଶୁଣି ଭୟେ କଂସ ॥
ତା ଷଡ଼ପୁତ୍ର କଲା ନାଶ । ପ୍ରଥମ ଅଧ୍ୟାୟେ ପ୍ରକାଶ ॥

ବନ୍ଦଇ ଦେବ ଲମ୍ବୋଦର
ପାଶ ଅଙ୍କୁଶ ବେନିକର
ସ୍ଥୁଳ ଜଠର ସୁନ୍ଦର
ଗଜ ବଦନ ଗଣେଶ୍ୱର
ଅନାଦିନାଥର ନନ୍ଦନ
ଅମୃତ ପାନେ ତୋଷମନ
ଯଜ୍ଞ ଆରମ୍ଭେ ତୋର ପୂଜା
ଉତ୍ତରୀ କଣ୍ଠେ ନାଗରାଜା

ଶ୍ୟାମସୁନ୍ଦର ତନୁ ବର୍ଣ୍ଣ
ଅନେକ ବିଘ୍ନ ବିନାଶନ
ତୋହାର ମହିମା ମୁଖେ କହି
କେ ପାରେ ନରଦେହ ବହି
ହୁଅ ସଦୟ ଗଣନାଥ
କହିବି କୃଷ୍ଣର ଚରିତ
ନମଇଁ ପ୍ରଭୁ ନରହରି
ହିରଣ୍ୟକଶିପୁ ବିଦାରି

ଉଦିତ ରବି ଜିଣି ତେଜ
ସୁନ୍ଦର ଶୋଭେ ଚତୁର୍ଭୁଜ
କୁଣ୍ଡଳ ଶଶୀ ଦିବାକର
ନକ୍ଷତ୍ରମାଳ ହୃଦେ ହାର
ବ୍ରହ୍ମାଣ୍ଡ ମାଳ ମାଳ ହୋଇ
ତୋ ଲୋମକୂପେ ଛନ୍ତି ରହି
ଧର୍ମ୍ମ ପାଳନ ତୁ ଜଗତେ
ଶରୀର ବହୁ ଭୃତ୍ୟହିତେ
ଦୁଷ୍ଟ ନିବାରି ସନ୍ଥ ପାଳୁ
ତୁ ନାଥ ପରମ ଦୟାଳୁ
କରି ହେ ଦୟା ନରହରି
କହିବି ତୋ ଲୀଳା ବିସ୍ତାରି
ପରମ ମଙ୍ଗଳ ତୋ ନାମ
ଖଣ୍ଡେ ସକଳ ବିଘ୍ନମାନ ।।
ବ୍ୟାସ କୁମର ପାଦ ଧରି
ବୋଲେ ପରୀକ୍ଷ ଦଣ୍ଡଧାରୀ ।

ପରୀକ୍ଷିଦୁବାଚ

ହେ ମୁନି ! ହୁଅ ତୁ ସଦୟେ
ମୋ ଚିତ୍ତ ଥାଉ ତୋର ପାଏ
ପାଣ୍ଡବକୁଳେ ମୋର ଜନ୍ମ
ମୋହର ବନ୍ଧୁ ଜନାର୍ଦ୍ଦନ
ଦ୍ରୋଣ-କୁମର ବାଣ ତ୍ରାସେ
ମରିବି କହିଗଲେ ବ୍ୟାସେ
ତା ଶୁଣି ଜନନୀ ମୋହର
ଶରଣ ଗଲା ଚକ୍ରଧର
ଗର୍ଭେ ପଡ଼ିଲା ଆସି ବାଣ
ମୋତେ ରଖିଲେ ନାରାୟଣ
ତେଣୁ କୃଷ୍ଣର ମୋ ଶରୀର
ଜାଣିଲି ସେବକ ମୁଁ ତାର

ତାର ଚରିତ କର୍ଣ୍ଣେ ଶୁଣି
ତରିବି ଭବ-ତରଙ୍ଗିଣୀ
ଶ୍ରୀକୃଷ୍ଣ ଲୀଳାର ଚରିତ
ମୁଖ-ପଦ୍ମରୁ ତୋର ଚ୍ୟୁତ
ଶ୍ରୁତିଯୁଗଳେ ପାନ କରି
ହେଲେ ତରିବି ଭବ-ବାରି
ପାଣ୍ଡବେ ଯାହାର ବିଶ୍ୱାସୁଁ
ତରିଲେ କୁରୁବଳ ତ୍ରାସୁଁ
ବତ୍ସାଚରଣ ଜଳ ତୁଲେ
ହେଲେ ତରିଲେ କୁରୁ-ବଳେ
ଯାହାର ଚରିତ୍ର ଗହନ
ଧ୍ୟାନେ ଶ୍ରବନ୍ତି ମୁନିଜନ
ମୁକ୍ତ ମୁମୁକ୍ଷୁ ଯେ ବିଷୟୀ
ସର୍ବେ ତରନ୍ତି ପଦ ଧ୍ୟାୟି
ଉତ୍ତମ ଶ୍ଳୋକ ଭଗବାନ
ଗୁଣ କୀର୍ତ୍ତନେ ମୁକ୍ତ ଜନ
ଭବସାଗର ପରମାଦ
ବିଷୟୀବିଷକୁ ଏ ଗଦ
ମୁମୁକ୍ଷୁ ଜୀବ ଏହା ପାଇ
ଆନନ୍ଦେ ଦିନକୁ ବଞ୍ଚଇ
ବିଷୟୀ ଶୁଣି ସେ ବାରତା
ପାସୋରେ ବିଷୟର କଥା
ଗୁଣ୍ଡାକୁଁ ବ୍ରହ୍ମ ଯାଏ ଲୋକ
ଚଳେ ଶୁଣି ହୋଇବ ବିମୁଖ
ଅଶେଷ ଜନ୍ତୁ ଦେହ ବହି
ଯେ କାଳରୂପେ ଅଛୁ ରହି
ମାୟାମନୁଷ୍ୟ ରୂପେ ଜାତ
ଯେ ହରି ଦିଏ ମୃତାମୃତ
ନବମସ୍କନ୍ଧେ ଅଛୁ ଶୁଣି
ସେ କଥା ମନେ ମନେ ଗୁଣି

ବିଶ୍ୱର କଲି ଭ୍ରମ ଚିତ୍ତ
ହେ ମୁନି ! କହିବା ତଦନ୍ତ
ଧାର୍ମିକକୁଳେ ଯଦୁ ବଂଶେ
ଜନ୍ମ ହୋଇଲେ ନିଜ ଅଂଶେ
ନୀଳ ଧବଳ ରୂପ ଦୁଇ
ଦେବକୀଗର୍ଭେ ଜାତ ହୋଇ,
କେମନ୍ତେ ରୋହିଣୀର ସୁତ
ରାମଙ୍କୁ ବୋଲନ୍ତି ଜଗତ ?
ବେନି ଉଦରୁଁ ଏକ ଦେହ
ହେ ମୁନି ! ଫେଡ଼ିବା ସନ୍ଦେହ । ୧-୮ ।
କେବଣ ହେତୁ ଭଗବାନ
ଗୁପତେ ଗଲେ ବୃନ୍ଦାବନ
ଭକ୍ତଙ୍କୁ ତାରିବାର ଆଶେ
ରମିଲେ ବାଳକ ବିଶ୍ୱାସେ
ପୁଣିହିଁ କେତେଦିନେ ହରି
ମିଳିଲେ ମଥୁରା ନଗରୀ
ଜଗତ ଜନଙ୍କର ଗୁରୁ
ଯାର ମହିମା ମହାମେରୁ
କପାଁ ଅମିତ ଆଚରିଲେ ?
ସୋଦର ମଉଳା ମାଇଲେ
ଏ କି ତାଙ୍କର ପରମାଣ ?
ଯାହାର ନାମ ନାରାୟଣ । ୯-୧୦ ।
ମନୁଷ୍ୟ ରୂପେ ହୋଇ ଜନ୍ମ,
କେତେ ବରଷ ଭୋଗ କର୍ମ ?
ଯାଦବ ସଙ୍ଗତେ ବିହରି,
କେତେ କଳସ ଭୋଗ କରି
ଏ ଆଦି ଯେତେକ ଚରିତ
ହେ ମୁନି ! କହ ତୋଷ ଚିତ୍ତ । ୧୧-୧୨
ଦେଖି ମରଣ କାଳ ମୋର
ହେ ମୁନି ! ତେଜିଲି ଆହାର
ହରି-ଚରିତ ସୁଧା-ଧାର
ଶ୍ରୁତି-ପୁଟରେ ପାନକରି
ଜଗତ-ସଂହାରିଣୀ କ୍ଷୁଧା,
ସେ ମୋତେ ନ କରଇ ବାଧା ।୧୩।

ଶ୍ରୀସୂତ ଉବାଚ

ଶୁଣି ରଜାର ସାଧୁ କଥା
ମୁନି-ପଣ୍ଡିତ-ସାମରଥା
କୃଷ୍ଣ-ଚରଣେ ଦେଇ ଚିତ୍ତ
ବୋଲନ୍ତି ଶୁଣ ଭାଗବତ ।୧୪।

ଶ୍ରୀ ଶୁକ ଉବାଚ

ସାଧୁ ଚରିତ ତୋର ବୁଦ୍ଧି
କୃଷ୍ଣ-ଚରଣେ ଚିତ୍ତ ଖେଦି
ଗୋବିନ୍ଦେ ତୋର ମନ ଯେତେ
ମୁଁ କହି ପାରିବି କି ତୋତେ ।୧୫
ଗୋବିନ୍ଦ-କଥା ପରଶନ
ହେଲେ ତାରଇ ତିନି ଜଣ
ଶ୍ରୋତା ବକତା, ଯେ ପଚ୍ଛରି
ଏ ତିନି ଜଣେ ଯାନ୍ତି ତରି
ତା -ପାଦ ଗଙ୍ଗା-ଜଳ ଯେହ୍ନେ,
ତାରଇ ସ୍ନାନ, ପିଣ୍ଡଦାନେ
ନାମ ମାତ୍ରକେ ପାପ ନାଶେ
ତାରଇ ସେ ତିନି ପୁରୁଷେ ।୧୬
କହିବି କୃଷ୍ଣ ଲୀଳାମାନ
ରଜନ ! ହୁଅ ସାବଧାନ
ଅସୁର ବଳ ପାଦଭରେ
ଭୂମି କମ୍ପଇ ଥରହରେ
ଭାରେଁ ନ ପାରଇ ଚଳି
ଅଧରୁଁ ରୁଧିର ନିକଳି
ହିନେକ ବିଗୁରଇ ବସି
କେ ମୋର ଶରୀର ଆଶ୍ୱାସି

ଗୁଡ଼ିବ ସଂସାର ଧାରଣ
ପଶିବ ବ୍ରହ୍ମରେ ଶରଣ । ୧୭ ।
ମାୟା ସୁରଭି ରୂପ ହୋଇ
କାନ୍ଦଇ ତଣ୍ଡଦଗ ଗୃହିଁ
ବିଧାତା ନିକଟେ ମିଳିଲି
ନିଜ ବେଦନା ଜଣାଇଲି ।୧୮।
ବିଧାତା ଶୁଣି ତା ବିକଳ
ସଙ୍ଗେ ଘେନିଲେ ଦେବ-ବଳ ,
ଶଙ୍କର ଘେନି ସର୍ବ ଆଗେ
ମିଳିଲେ କ୍ଷୀରସିନ୍ଧୁ ଲଗେ ।୧୯।
ଜଳଧି କୂଳେ ଦେବଗଣ
ଡାକନ୍ତି 'ରଖ, ନାରାୟଣ'
ଅନେକମତେ ସ୍ତୁତି କଲେ
ହରି ସନ୍ଦେଶ ନ ପାଇଲେ ।୨୦।
ଅନେକମତେ ଶନ୍ତ ଧ୍ୟାନ
ବ୍ରହ୍ମା ହୋଇଲେ ମନେ ଛିନ୍ନ
ଅନନ୍ତ ନ ଦେଖି ବିଧାତା
ମନେ ପାଇଲା ଗୁରୁ-ଚିନ୍ତା
ସମାଧି ବସିଲା ତକ୍ଷଣ
ଚିନ୍ତେ ଅନାଦି ନାରାୟଣ ।୨୧।
ବ୍ରହ୍ମାର ଦେଖିଣ ବିକଳ
କରୁଣା କଲେ ଆଦିମୂଳ
ନିଦ୍ରାର ବଚନ ମନ ହରି
ସ୍ୱପନେ କହିଲେ ମୁରାରି
ବ୍ରହ୍ମାଙ୍କୁ ଦିଶିଲା ସ୍ୱପନ
କହନ୍ତି ପ୍ରଭୁ ଭଗବାନ
ଶୁଣ ବଚନ ମୋର ଧାତା !
ମୁଁ ଯେ ଜଗତ ପିତା ମାତା
ସକଳ ମୋହର ଭିଆଣ
କେବଳ ଦେଇଲି ପରମାଣ ।
ମୋର ବଚନ ଶିରେ ଧରି
ତୁ ଧାତା ଜଗତ ଆଚାରି
ବେଦ ବିଧିରେ ସୃଷ୍ଟି ପାଳୁ
ଅବନୀ ଭାରେ କମ୍ପା ଭାଳୁ ?
ମୁଁ ତାହା ଜାଣଇଛି ସର୍ବ
ନାଶିବ ଅସୁରଙ୍କ ଗର୍ବ ।
ଏବେ ସକଳ ଦେବେ ଯାଅ
ମର୍ତ୍ତ୍ୟ-ମଣ୍ଡଳେ ଜାତ ହୁଅ
ଯାଦବ ଆଦି ସାତ ବଂଶ
କଂସକୁ ହୋଇବ ବିଶ୍ୱାସ
ଗୋପିଗୋପାଳ ରୂପ ହୋଇ
ଗୋପେ ଜନ୍ମିବ ଦେହବହି ।୨୨
ମୁଁ ଜାତ ବସୁଦେବ ଘରେ
ବଢ଼ିବ ଯଶୋଦାର କୋଳେ
ଖେଳି ସହସ୍ର ଗୋପନାରୀ
ରମିବ ବୃନ୍ଦାବନେ ହରି
ଅନେକ ନାଶିବ ଅସୁର
ଖଣ୍ଡିବି ଅବନୀର ଭାର
ଭକତଜନଙ୍କୁ ତାରିବ
ପୁଣି ସ୍ୱଧାମେ ବାହୁଡ଼ିବ
ଯା ବେଗେ ଏମନ୍ତ ତୁ କର
କହିବୁ ଦେବଙ୍କ ଆଗର
ବେଗେ ହୁଅନ୍ତୁ ମର୍ତ୍ତ୍ୟେ ଜନ୍ମ
କହି ହୋଇଲେ ଅନ୍ତର୍ଦ୍ଧାନ
ସ୍ୱପନ ଚେତି ବେଧାବର
କହିଲେ ଦେବଙ୍କ ଆଗର
ଶୁଣି ସାନନ୍ଦ ଦେବଗଣ
ନମନ୍ତି ଧାତାର ଚରଣ
ବୋଲନ୍ତି ଶୁଣ, "ବେଦବର
ଯାହା ବୋଇଲେ ଚକ୍ରଧର

ଅବନୀ ମଧ୍ୟେ ଦେହ ଧରି
ଗୋପେ ଯାଦବେ ଅବତରି,
ହୋଇବୁଁ ଏ ଆମ୍ଭର ସତ୍ୟ
କି କି କହିଲେ ଜଗନ୍ନାଥ ?
ସେ କଥା କହ ପ୍ରଜାପତି !
ଶୁଣି ନିର୍ମଳ ହେଉ ମତି"

ବ୍ରହ୍ମୋବାଚ

ବ୍ରହ୍ମା ବୋଇଲେ ଦେବେ ଶୁଣ
ଯାହା ବୋଇଲେ ନାରାୟଣ
ଯାଦବ ବସୁଦେବ-ଘରେ
ଜନ୍ମିବେ ଦେବକୀ ଉଦରେ
ହରିର କଳାରେ ଅନନ୍ତ
ଆଗେ ହୋଇବେ ଗର୍ଭଗତ
ମାୟାର ଯୋଗବଳେ କରି
ଦେବକୀ ଗର୍ଭୁଁ ତାହା ହରି
ରୋହିଣୀ-ଗର୍ଭେ ତାହା ଥୋଇ,
ଦାସ-ବତ୍ସଳ ଭବଗ୍ରାହୀ
ଆପଣେ ପ୍ରଭୁ ଜଗନ୍ନାଥ
ଦେବକୀ ଗର୍ଭେ ହେବେ ଜାତ
ଦୁର୍ଗାଙ୍କୁ ଯଶୋଦାର କୋଳେ
ଜାତ କରିବେ ଯୋଗବଳେ
ଏମନ୍ତେ ତାରିବେ ସଂସାର
ଦାସ-ବତ୍ସଳ ଦାମୋଦର । ୨୩-୨୫

ଶୁଣି ବିଧାତାର ବଚନ
ଦେବେ ଆନନ୍ଦ କଲେ ମନ
ଗୃହିଁଲେ ଧରଣୀ-ବଦନ
ବୋଲନ୍ତି "ଧନ୍ୟ ତୋ ଜୀବନ
ତୋର ଉପରେ ଚକ୍ରଧର
ମନୁଷ୍ୟ ଦେହେଁ ଅବତାର
ନାଶିବେ ତୋର ଦୁଃଖ ରାଶି
ଆନନ୍ଦ ଦେଖିବୁଁ ବ୍ରହ୍ମଋଷି"
ପୃଥ୍ୱୀ ଆଶ୍ୱାସି ଦେବଗଣ
ଚଳେ ସେ ଯେ ଯାହା ଭୁବନ
ଏବେ ହୋ ଶୁଣ ମହୀପତି !
ଯେମନ୍ତ କଲେ ଦାଶରଥି । ୨୬।

ହରି ଚରଣେ ଦେଇ ଚିତ୍ତ
କହଇ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣବିବର୍ଣ୍ଣନେ
ନାମ ପ୍ରଥମୋଽଧ୍ୟାୟଃ ।

—:O:—

## ଦ୍ୱିତୀୟ ଅଧ୍ୟାୟ

ମୂଳାନୁସାରେ ୧ମ ଅଧ୍ୟାୟ

ପ୍ରଥମ ଅଧ୍ୟା ଅବଶେଷ । ବୃତ୍ତାନ୍ତ ବିଶେଷେ ପ୍ରକାଶ ॥

ଶ୍ରୀ ଶୁକ ଉବାଚ

ନମଇଁ ନୃସିଂହ ଚରଣ
କହିବ ବିଷ୍ଣୁର ପୁରାଣ
ଶୁକ କହନ୍ତି ଶୁଣ ରାୟେ
ମର୍ତ୍ତ୍ୟେ ଜନ୍ମିଲେ ଦେବତାଏ

ଭୋଜ ବଂଶରେ ଉତପନ୍ନ
ପ୍ରତାପୀ ରାଜା ଶୂରସେନ
ପୂର୍ବେ ମଥୁରା-ପୁରେ ଥିଲ
ଅନେକ ନୃପତ୍ତ ଜିଣିଲ
ତେଣୁ କଣ୍ଟକ ମଧୁପୁରୀ
ଯଦୁଁ ବଜାୟ ନରହରି । ୨୭-୨୮ ।
ସେ ରାଜା ଗୋବିନ୍ଦ-ଭକତ
ତାହାର ଉଗ୍ରସେନ ସୁତ
ଦେବକ ନାମେ ତାର ଭ୍ରାତ
ତାହାର ଦେବକୀ ଦୁହିତ
ରୂପେ କମଳ ନୋହେ ସରି
ସେ କନ୍ୟା ବସୁଦେବ ବରି
ମାୟା ଭିଆଣ ପଦ୍ମନାଭ
କରନ୍ତି ବିଭାର ଉତ୍ସବ
ବିଭା କରାଇ କନ୍ୟାବର
ଯାବତ ମଙ୍ଗଳ ବେଭାର
ଜନ ବ୍ୟେଭାରେ ସେ ଦେବକ
ଅନେକ ଦେଲା ଯଉତୁକ
ଚତୁର ଶତ ହସ୍ତୀ ଦେଲ
କଣ୍ଠେ ଲମ୍ବାଇ ସ୍ୱର୍ଣ୍ଣମାଳା
ଅଠର ଶତ ରଥଯୁକ୍ତ
ଅଶ୍ୱ ଦେଲ ଦେଢ଼ ଅଯୁତ
ବେନ ଶତେକ ପରିଚାରୀ
ଦେଲ ସେ ଅଳଙ୍କାର କରି । ୨୯-୩୨
ବାଜଇ ବାଦ୍ୟତୂର ନାଦ
କେ କହୁ ବିଭାର ସମ୍ପଦ
ରଥେ ବସାଇ କନ୍ୟାବର
ନବରୁଁ ହୋଇଲେ ବାହାର
କୁସୁମ ବରଷନ୍ତି ଦେବେ
ମଙ୍ଗଳ କଲେ ବେଦଧ୍ୱନି । ୩୩

ଉଗ୍ରସେନର କଂସ ସୁତ
ଦେଖିଣ ହୋଇଲ୍ଲ ଉଷତ
ଯାହାର ନାମେ ଦେବେ ଡ଼ରି
ଗୃହଲକ୍ଷ୍ମୀ କମ୍ପେ ବସୁନ୍ଧରୀ
ଶୁଦ୍ଧ-ସୁବର୍ଣ୍ଣ-ରଥେ ବସି
ରାଜାଏ କଂସରେ ପ୍ରଶଂସି
ଭଗ୍ନୀର ପ୍ରିୟ ବନ୍ଧୁପଣେ
ରଥରେ ବସିଲ ଆପଣେ
ଅଶ୍ୱ ଦଉଡ଼ି ଧରି କରେ
ରଥ ବାହଇ ଧୀରେ ଧୀରେ
ଥୋକାଏ ଦୂର ପଥ ଗଲ
ଆକାଶୁଁ ଶବଦ ଶୁଭିଲ
ତା ଶୁଣି ଚାହିଁଲ ଗଗନ
ଶବଦ କହୁଅଛି ଶୂନ୍ୟ
"ରେ ରେ ଅସୁର କଂସ ! ଶୁଣ
ନ ଜାଣୁ ଆପଣା ମରଣ
ଯାହାର ବାହୁଅଛୁ ରଥ
ତୋତେ ମାରିବ ତାର ସୁତ
ଅଷ୍ଟମ ଗର୍ଭେ ଜାତ ହୋଇ
ମାରଣ ଉଶ୍ୱାସିବେ ମହୀ" । ୩୪ ।
ଶୁଣି ଅନ୍ତରୀକ୍ଷ-ବଚନ
ରଥରୁ ଓହ୍ଲାଇ ବହନ
କରେ ଉପାଡ଼ି କରବାଳ
ଧଇଲ ଦେବକୀର ଚୂଳ
ବୋଲଇ 'ଭଲ ଏ ବଇରୀ
କୂମାରୀ କାଳୁଁ ଯ୍ୟାକୁ ମାରି
ମୂଳ ମାଇଲେ ଯାଉ ସରି
ଦେବଙ୍କ ସଙ୍ଗେ କପଟ୍ଟ କଲ'
ଅଧର ଚାପି ରୋଷେ ଚାହେଁ
କମ୍ପାଇ ଦେବକୀର କାୟେ । ୩୫ ।

କଂସକୁ ବସୁଦେବ ଗୃହିଁ
ଭୟେ ଚିନ୍ତଇ ସ୍ୱବ୍ରାହ୍ମି
କଂସର ଭୁଜ କରେ ଧରି
ବୋଲଇ, "ରକ୍ଷ ଦଣ୍ଡଧାରୀ" । ୩୬
ତୁ ଅଟୁ ମହତ-ପୁରୁଷ
ସଂସାରେ ଥିବ ତୋର ଯଶ
ଧାର୍ମିକ ବୋଲନ୍ତି ସକଳେ
ଦେବକୀ ମାରୁଁ କ୍ଷମା ବଳେ ?
ବିଭାର କାଳେ ଏଡ଼େ କର୍ମ
କେମନ୍ତେ ସମ୍ଭବଟି ଧର୍ମ ? ।୩୭
ଦେହର ସଙ୍ଗେ ମୃତ୍ୟୁ ଜାତ
ନାହିଁକି ତୋହର ତଦନ୍ତ
ବାଳକ ବୃଦ୍ଧ ଯେ ତରୁଣ
ଅବଶ୍ୟ ହୋଇବ ମରଣ
ଦେହ ବହିଲେ ନଷ୍ଟ ମରି
ମରଣ ଗୁରେ କପାଁ ଡରି । ୩୮
ଏ ଜୀବ ମରଣ ନିକଟେ
ବେଗେ ଚିନ୍ତଇ ଅନ୍ୟ ଘଟେ
ଏହାର କଲା କର୍ମମାନ
ତେଣେ ହୁଅନ୍ତି ସାବଧାନ
କର୍ମର ବଶ ହୋଇ ଜନ୍ତୁ
ଜନ୍ମମରଣ କର୍ମହେତୁ । ୩୯
ଜୋକ ଯେ ଏକଇ ଚରଣେ
ଯେସନେ ସଞ୍ଚରଇ ତୃଣେ
ଜୀବ ସେ କର୍ମେ ସଞ୍ଚରଇ
ଜନ୍ମମରଣ ନାମ ଏହି । ୪୦
ନିଦ୍ରାରେ ଯେସନେ ସ୍ୱପନ
ଦେଖିଣ ପାସୋରଇ ମନ
ଦେହରେ ଥାଇ ଯେତେ କରି
ଦେହ ଛାଡ଼ିଲେ ତା ପାସୋରି ।୪୧
କରଇ ପରଲୋକ ଭୋଗ
ପୁଣିହିଁ ରଜ-ବୀର୍ଯ୍ୟ ଯୋଗ
ଜନ୍ମିଲେ ପାସୋରଇ ତାହା
ଏମନ୍ତ ଅନାଦର ମାୟା ।୪୨
ଏକଇ ପୁରୁଷ ମୁରାରି
ସକଳ ଘଟେ ଛନ୍ତି ପୂରି
ଶତେକ ଜଳଘଟ ଥୋଇ
ଗୃହିଁଲେ ଆକାଶ ଦିଶଇ
ପୁଣ ତା କଲେ ଏକଗୋଟି
ତହିଁ ଗୃହିଁଲେ ଥାଇ ଘୋଟି
ଆକାଶ ନୁହଇନା ଭିନ୍ନ
ବିନାଶ ହୋଏ ଘଟମାନ
ଏମନ୍ତ ଆତ୍ମାର ବିବେକ
ଏହା ଜାଣନ୍ତି ଜ୍ଞାନୀଲୋକ ।୪୩
ତୁ ଅଟୁ ମହତ ପୁରୁଷ
କପାଁ ବହେଣୀ କରୁ ନାଶ ?
ଜୀବ ମାରନ୍ତି ଆତ୍ମା-ସୁଖେ
ଅନ୍ତେ ସେ ପଡ଼ନ୍ତି ନରକେ ।୪୪
ଏ ସାନ ବହେଣୀ ତୋହର
ଏହାକୁ ରକ୍ଷା କର ବୀର ! ।୪୫
ଶୁକ ବୋଲନ୍ତି ଶୁଣ ରାୟେ ।
ଅସୁର ସ୍ୱଭାବେ ନିର୍ଦ୍ଦୟେ
ଢ଼ଣୋଲିଁ ବୋଲ ନ ଶୁଣିଲା
ପୁଣିହିଁ ହାଣିବି ବୋଇଲା
ଦେଖି ବସୁଦେବ ବିଗୃର
କାହିଁଣ ସୁମରେ ମୁରାରି
ପୁଣି ବିଚାରୁଅଛି ମନେ;
ଦେବକୀ ରଖିବି କେସନେ
କେ ସହୁ ଏହାର ବିକଳ
ଲୋଭ ଦେଇ ରଖିବି ମୂଳ

କିବା ନୋହିବ ମୋର ସୁତ
କଂସ ହୋଇବ କିବା ହତ
ଅଥବା ନୋହିବଟି ଯୋଏ
ଜାଣନ୍ତି ପ୍ରଭୁ ଦେବରାୟେ ।୪୬-୫୩
ଏମନ୍ତ ମନେ ବିଚାରିଲା
କଂସର ମୁଖକୁ ଗୃହିଁଲା
ବୋଲଇ, ଶୁଣ ବୀର କଂସ,
ଗୁଡ଼ ତୁ ବହେଣୀର କେଶ
ଏହାର ସୁତ ତୋତେ ମାର
ଏ ତୋର ନୁହଇ ବଇରୀ
ଏ ଯେତେ ସୁତ ପ୍ରସବିବ
ତୋର ନିକଟେ ଦେବି ସବ
ତୁ ଅଟୁ ପୁରୁଷ ମହନ୍ତ
ଏ ମୋର ବଚନର ସତ୍ୟ
ଶୁଣନ୍ତୁ ଦଶଦିଗ ଲୋକେ
ଏଠାରେ ଅଛନ୍ତି ଯେ ଥୋକେ
ଏ କଥା ମୋହର ପ୍ରମାଣ
ଏଥିକୁ ସାକ୍ଷୀ ନାରାୟଣ । ୫୪
ବସୁଦେବର ବୋଲ ଶୁଣି
କଂସହିଁ ମନେ ମନେ ଗୁଣି
ବିଚାର ମଣିଲା ବିଶ୍ୱାସ
ଗୁଡ଼ିଲା ବହେଣୀର କେଶ
ଆନନ୍ଦ ହୋଇ ବେନି ଜନେ
ଗଲେ ସେ ଯେ ଯାହା ଭୁବନେ ।୫୫
କେତେହେଁ ଦିନ ତହିଁ ଥିଲା
ଦେବକୀ ଗର୍ଭ ଉପୁଜିଲା
ବରଷ ବରଷକେ ସୁତ
ହୋଇଲା ଏକଇ ଦୁହିତା ।୫୬
ପ୍ରଥମେ ହୋଇଲା ତନୟେ
ରୂପେ ଶୋଭିତ କାମ ପ୍ରାୟେ
ସୁତକୁ ଦେଖି ବସୁଦେବ
ବିକଳେ ଚିନ୍ତଇ ମାଧବ
ଏ ପୁତ୍ର ଦେବିଁ କେମନ୍ତେ
ସତ୍ୟ ଯେ କରିଛି ସୁକଟେ
ଦେବକୀ-ମୁଖକୁ ଗୃହିଁଲା
ହା କୃଷ୍ଣ ! ବୋଲି ଡାକ ଦେଲା
ନୋହଇଲା ହରଷ ବିସ୍ମୟେ
କୋଳରେ ଧଇଲା ତନୟେ
କଂସର ସଭାରେ ମିଳିଲା
ବାଳକ ତଳେ ଶୁଆଇଲା ।୫୭
ଦେଖି ଚକିତ ସଭା ଜନେ
କଂସ ବିଚାରୁଅଛି ମନେ
ଏତ ନୁହଇ ମୋ ବଇରୀ
ଅଷ୍ଟମ ଗର୍ଭ ମୋତେ ମାରି
ଏହାର ମଣିଲି ମୁଁ ସତ୍ୟ
ନେଉ ଏହାର ନିଜ ସୁତ
ହସିଣ ବସୁଦେବ ଗୃହିଁ
ବୋଲଇ ବିଶ୍ୱାସ କରାଇ
ଏବେ ଜାଣିଲି ତୋର ସତ୍ୟ
ନିଅ ତୋହର ନିଜ ସୁତ ।୫୮-୬୦
ଶୁଣି ବସୁଦେବ ଚକିତେ
କଂସକୁ ନ ଯାଇ ପରତେ
କ୍ଷଣକେ ରହିଣ ବିଚାରି
ପୁଣ କୁମର କୋଳେ ଧରି
ବାହେରେ କରଇ ବିଚାର
ଦୁଷ୍ଟ ଦାନବ ଦୁରାଚାର
ଯେବେ ମୁଁ ନେବି ବାହୁଡ଼ାଇ
ପୁଣି ମାରିବ କଂସ ଯାଇ
ଦେବକୀ କଷ୍ଟ ହେବ ବଡ଼
କିସ କରିବି ମୁହିଁ ରାଡ଼

ହରି ଭିଆଣ କଲା ଯାହା
ଅବଶ୍ୟ ଭୁଞ୍ଜିବନା ତାହା
ଏମନ୍ତେ ଦୁଃଖେ ସୁଖେ ଯାଇଁ
ଦେବକୀ ନିକଟେ ମିଳଇ
ସୁତକୁ ଦେଲା ତାର କୋଳେ
କାନ୍ଦଇ ମାୟା ମୋହ ଭୋଳେ
ସୁତକୁ ଦେଖିଣ ଦେବକୀ
ଆନନ୍ଦ କେ ପାରିବ ଲେଖି ।୭୧
ରଜନୀ ହୋଇଲା ପ୍ରବେଶ
ମିଳିଲା ଅନ୍ତଃପୁରେ କଂସ
ଶୀତଳ ମଣୋହି ସାରିଲା
ସୁଖେ ପଲ୍ୟଙ୍କେ ବିଜେ କଲା
ତକ୍ଷଣେ ମିଳିଲେ ନାରଦ
ଆନନ୍ଦେ କଲେ ଆଶୀର୍ବାଦ
ଦେଖିଣ ତେଜିଲା ଶୟନ
ପ୍ରଣାମ କଲାକ ବହନ
ନିଜ ଆସନେ ବସାଇଲା
ବିଶ୍ୱାସେ ଚରଣେ ପୂଜିଲା
ଭକତି ଦେଖିଣ ନାରଦ,
କହନ୍ତି ଶୋକେ ଗଦଗଦ
ଶୁଣ ଅସୁର ଚୂଡ଼ାମଣି !
ତୋର ମରଣ ମୁହିଁ ଶୁଣି
ତୋ ଦୁଃଖ ଦେଖି ମୁଁ ବିକଳ
ଦେଖି ନୟନେ ଅଶ୍ରୁ ଜଳ
ଶୁଣ ଦାନବ ଶିରୋମଣି !
ତୋର ମରଣ ତଥ୍ୟ ବାଣୀ
ଭୂମିର ଦେଖିଣ ବିକଳ
ଗୁହାରି କଲେ ଦେବବଳ
ବ୍ରହ୍ମାର ତୁଳେ ଶୂଳପାଣି
କ୍ଷୀର ସମୁଦ୍ରେ ସ୍ତୁତି ଭଣି
ବ୍ରହ୍ମାଙ୍କୁ କହିଲେ ଅନନ୍ତ
"ମନୁଷ୍ୟେ ହୋଇବି ମୁଁ ଜାତ
ମାରିବି ସକଳ ଅସୁର
ନାଶିବି ଅବନୀର ଭାର"
ଏମନ୍ତ କଲେ ଦେବଗଣ
ତୋତେ ମାରିବେ ନାରାୟଣ
ଦେବକୀ ଅଷ୍ଟମ ଗର୍ଭର
ନିଶ୍ଚୟେ ମରଣ ତୋହର
ବ୍ରହ୍ମାର ବଚନେ ମୁରାରି
ମାୟା ମନୁଷ୍ୟ ରୂପ ଧରି
ତୋତେ ମାରିବେ ସେ ଅନନ୍ତ
ତୁ କମ୍ପା ହୋଇଲୁ ଅଚେତ
ଦେବ ଉପୁଜିଛନ୍ତି ଅଂଶେ
ଗୋପନଗରେ ଭୋଜବଂଶେ
ନନ୍ଦ ଯଶୋଦା ଆଦି ଯେତେ
କହିବି ଏକେ ଏକେ କେତେ
ଦେବକୀ ଦେବୀ, ବସୁଦେବ,
ଏ ଆଦି ଯେତେକ ଯାଦବ
ତୋର ସେବକ ଯେତେ ଲୋକ
ଦେବତାମାନେ ଏଥି ଦେଖ
ଏହା ତୁ ନ କଲେ ବିଚାର
ନିକଟେ ମରିବୁ ଅସୁର
କଂସକୁ କରାଇ ଉଚ୍ଚାଟ
ନାରଦ ଗଲେ ଶୂନ୍ୟବାଟ ।୭୨-୭୬
ଦୁଃଖେ ରଜନୀ ପୁହାଇଲା
ନିଜ ସଭାରେ ବିଜେ କଲା
ଅସୁରବଳ ଘେନି ସଙ୍ଗେ
ଧାଇଁଲା ପବନଠୁଁ ବେଗେ
ଦେବକୀ ମନ୍ଦିରେ ମିଳିଲା
କୋପେ ଅଧର କାମୁଡ଼ିଲା

ଦେବକୀ ମୁଖକୁ ଅନାଇ
ବୋଲଇ କୋପଭରେ ହୋଇ
ତୁ ଅଟୁ ବଇରଣୀ ମୋହର
ମୋର ମରଣେ ତୋ ଉଦର
ମୁଁ ଏହା ଜାଣିବି କେମନ୍ତେ ?
ଭଉଣୀକି ବଚନେ ମନ୍ତେ
ଏମନ୍ତ ବୋଲି କୋପଭରେ
ବାଳୁତ ଧରି କେଶକରେ
ବେନି ଚରଣ କରେ ଧରି
ବୁଲାଇ ଅନ୍ତରୀକେ କରି
କୋପେ ଅନେକ ଗାଳି ଦେଲା
ଶିଳା ଉପରେ କଚାଡ଼ିଲା
ଦେବକୀ ବସୁଦେବ ଆଣି
ବନ୍ଧନ କଲା ପାଦ ପାଣି
ମାଡ଼ ମାରଇ ମହାରୋଷେ
ପାଦେ ଭରିଲା ଲୋହ ପାଶେ
ଧନ ସମ୍ପଦ କଲା ଜର
ଆଣି ଭରିଲା ବନ୍ଦୀଘର ।
ସାତ କବାଟ ମହାବଳ
ଲୋହ କଳଣୀ ଅନର୍ଗଳ
ପ୍ରହରୀ ଶତେକ ଜଗାଇ
କହଇ ରୋଷଭରେ ହୋଇ
ଦେବକୀ ଯେବେ ପ୍ରସବିବ
ମୋହର ଆଗେ ଜଣାଇବ

ଯେ ମୋର ନ କରିବ ବୋଲ
ସେହି ମୋହର ଶତ୍ରୁ ଶଲ । ୬୫-୬୭
ନିଜ ପିଅରେ ଅଣାଇଲା
ଅନେକ ମାଡ଼ ମରାଇଲା
ତାଙ୍କୁ ଦେଲା ବନ୍ଦୀଘରେ
ଅନେକ ଯାଦବ ସଙ୍ଗରେ
ଅସୁର ସ୍ୱଭାବେ ବଶ କଂସ
ମାଇଲା ଆପଣାର ବଂଶ
କୋପ ସଂହରି ନିଜ ପୁରେ
ଦଇତ୍ୟ ପଶିଲା ଭିତରେ
କଂସ ଜାଣଇ ଯୋଗବଳେ
ମୁଁ ଜାତ ଯାଦବଙ୍କ କୁଳେ
ଅନେକବାର ମୋତେ ମାରି
ମୋକ୍ଷ ନ ଦେଲେ ନରହରି
ଏବେ ମାରିବେ ହରି ମୋତେ
ଭାଗ୍ୟ ମୋ କେ କରିବ ଅନ୍ତେ
ଏମନ୍ତ ମନେ ବିଚାରିଲା
ଯଦୁଙ୍କ ସଙ୍ଗେ ବାଦ କଲା । ୬୭-୬୯
ଶୁଣ ସୁଜନେ କୃଷ୍ଣ ଗୀତ
ଗୋବିନ୍ଦ ପାଦେ ଦେଇ ଚିତ୍ତ
ପଣ୍ଡିତେ ନ ଘେନିବା ଦୋଷ
କୃଷ୍ଣ-ଚରିତ ସୁଧାରସ
ହରି ଚରଣେ ଦେଇ ଚିତ୍ତ
କହନ୍ତି ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଦେବକୀବିବାହେ
ନାମ ଦ୍ୱିତୀୟୋଽଧ୍ୟାୟଃ । ୨ ।

## ତୃତୀୟ ଅଧ୍ୟାୟ

( ମୂଳାନୁସାରେ ୨ୟ ଅଧ୍ୟାୟ )

ଦ୍ୱିତୀୟେ କଂସନାଶାୟ ଦେବକ୍ୟା ଗର୍ଭଗୋ ହରିଃ ।
ବ୍ରହ୍ମାଦ୍ୟୈଃ ସ୍ତୁତଃ ସା ଚ ଶାନ୍ତ୍ୱିତେତି ନିରୂପ୍ୟତେ ॥

ତୃତୀୟେ କଂସନାଶ ପାଇଁ, । କୃଷ୍ଣ ଦେବକୀ ଗର୍ଭେ ଯାଇଁ ॥
ରହିଲେ ଜାଣି ସର୍ବଦେବ, । ଦେବକୀ ବୋଧି କଲେ ସ୍ତବ ॥

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟ !
ଅସୁର କଲା ମହାଭୟ
ଦୂତ ପେଷିଲେ ଗୃହ ଘରେ
ବିଶ୍ୱାସୀ ଦାନବଙ୍କ ସଙ୍ଗେ
କଂସର ଯେତେ ମିତ୍ରଗଣ
ଆସି ମିଳିଲେ ଜଣେ ଜଣ
ଚାଣୁର, ତୃଣାବର୍ତ୍ତ ବୀର
ମୁଷ୍ଟିକ, ଅଘା, ଷଣ୍ଢାସୁର
ଦ୍ୱିବିଦ ନାମେଣ ବାନର
ପ୍ରଲମ୍ବା, ବକା, ବତ୍ସାସୁର
ପୂତନା ନାମେଣ ରାକ୍ଷସୀ
ଆଗେ ମିଳିଲା ବୀରକେଶୀ
ବେଗେ ମିଳିଲା ଜରାସୁର
ବାଣ, ନାରକ, ବେନି ବୀର
ଏମନ୍ତ କହିବଇଁ କେତେ
କଂସର ମିତ୍ର ଛନ୍ତି ଯେତେ
ସବୁଙ୍କୁ ବସାଇ ଆସନେ
କଂସ କହଇ ଖେଦମନେ
ଶୁଣ ସକଳ ବୀରମଣି
ମୋହର କର୍ମଫଳ ବାଣୀ
ନାରଦେ କହିଗଲେ ମୋତେ
ଯଦୁଙ୍କୁ ନ ଯିବ ପରତେ
ଯେତେକ ମୋହର ବିଶ୍ୱାସ
ଯଦୁଙ୍କୁ କର ବେଗେ ନାଶ
ଶୁଣି ଅସୁରେ ପରଜ୍ୱଳ
ଯେସନେ ସମୁଦ୍ର ଉଚ୍ଛୁଳି
ଯଦୁଙ୍କୁ ଦେଲେ କଷ୍ଟମାନ
ଯହୁଁ ରଖିବେ ଭଗବାନ ୧-୨ ।
ଯାଦବେ ଅସୁରଙ୍କ ଡରେ
ପଳାଇ ଗଲେ ଦେଶାନ୍ତରେ
କେ କୁରୁ ନଗରେ ପଶିଲେ
ପଞ୍ଚାଳ ଦେଶେ କେ ଲୁଚିଲେ
ବିଦର୍ଭ ନିଷଧ କୋଶଳ
ପଶିଲେ ଜୀବନ ବିକଳ
ଯେ ଅବା ଯାଇ ନ ପାରିଲେ
କଂସରେ ଶରଣ ପଶିଲେ
କେହୁ ସେବକ ପଣେ ଦାସ
କାହାକୁ ଦେଲା ସ୍ନେହ-ପାଶ । ୩
ଏମନ୍ତ ବରଷେ ପୂରିଲା
ପୁଣି ଦେବକୀ ପ୍ରସବିଲା
ପ୍ରହରୀ ଜଣାଇଲା ଯାଇଁ
ଶୁଣି ଧାଇଁଲା ରୋଷ ବହି
ଦେବକୀ ନିକଟେ ମିଳିଲା
କୋଳୁ ବାଳକ ଉଚ୍ଛୁଡ଼ିଲା
ବେନି ଚରଣ ଧରି କରେ
ବୁଲାଇ ପିଟିଲା ଶିଳାରେ

ଏମନ୍ତ ବରଷେ ବରଷ
ଛ'ପୁତ୍ର କଲା କଂସ ନାଶ
ଦେଖିଣ ଦେବକୀ ବିକଳ
ଦୟା ବସିଲା ଆଦିମୂଳ
ଅନନ୍ତରୂପ ଧରି ହରି
ଦେବକୀ ଗର୍ଭେ ବାସ କରି
ଏରୂପେ ଅନନ୍ତ ବ୍ରହ୍ମାଣ୍ଡ
ଗର୍ଭେ ହୋଇଲେ ଅଷ୍ଟମାସ
ଦେବକୀ ନିଜ ଦେହ ଚାହିଁ
ବିକଳେ ନିଃଶ୍ୱାସ ଛାଡ଼ଇ
କେତେ ପାତକ କଲି ପୂର୍ବେ
ପୁଣି ହୋଇଲା ଆସି ଗର୍ଭେ
କେତେ ସହିବି ଗର୍ଭ କଷ୍ଟ
ବିଧାତା କଲା ମୋତେ ଦୁଷ୍ଟ
ଗର୍ଭେ ଧରିବି ଦଶମାସ
କୋଳେ ଧରିତେ ନାହିଁ ଆଶ
ଏମନ୍ତ ବିଚାରି ବିକଳ
ନୟନୁ ବହେ ଅଶ୍ରୁଜଳ । ୪
ଦାସ-ବତ୍ସଳ ଭଗବାନ
ଜାଣିଲେ ଦେବକୀର ମନ
ଦୁର୍ଗାଙ୍କୁ ନିକଟେ ବସାଇ
କହନ୍ତି ପ୍ରଭୁ ଭାବଗ୍ରାହୀ
ଅମ୍ବିକା ଶୁଣ ମୋ ଉତ୍ତର
ବହନ ଯାଅ ମଧୁପୁର
ମଥୁରା କଂସ ବନ୍ଦୀଘରେ
ମିଳିବ ପ୍ରଥମ ପ୍ରହରେ
ବନ୍ଦୀ କରିଛି କଂସରାଏ
ଏକ ଶାଙ୍କୁଳ ବେନି ପାଏ
ବସୁଦେବଙ୍କୁ ଯେତେବେଳେ
ଧରି ଆଣିଲା କଂସ ବଳେ
ତାହାର ପତ୍ନୀ ନନ୍ଦ ଘରେ
ଯାଇଁ ଲୁଚିଲା କଂସ ଡରେ
ରୋହିଣୀ ନାମେ ବିଦ୍ୟମାନ
ତାହାର ଗର୍ଭ ଅଛି ଶୂନ୍ୟ
ଦେବକୀ ଦେବୀ ନିଦ୍ରାକାଳେ
ଗର୍ଭ ହରିବୁ ଯୋଗବଳେ
ମିଳିବୁ ନନ୍ଦ ଘରେ ଯାଇଁ
ରୋହିଣୀ ଗର୍ଭେ ତାହା ଥୋଇ
ଜନ୍ମିବୁ ଯଶୋଦା ଉଦରେ
ମୁଁ ପୁଣି ମିଳିବି ମଧୁପୁରେ
ଦେବକୀ ଗର୍ଭେ ହେବି ଜାତ
ଜଗତେ ହୋଇବ ବିଦିତ
ମୋତେ ଘେନିଣ ଯିବେ ତାତ
ଯଶୋଦା ଗର୍ଭେ ତୁ ଯେ ଜାତ
ତୋତେ ଆଣିବେ ମୋତେ ଥୋଇ
ଏ କଥା ନ ଜାଣିବେ କେହି
ଏମନ୍ତ କଂସର ମରଣ
ହସି କହନ୍ତି ନାରାୟଣ । ୫-୮
ଲୋକେ ହୋଇବୁ ତୁ ଯେ ଜାତ
ଜଗତେ ହୋଇବୁ ବିଖ୍ୟାତ
ସର୍ବେ କରିବେ ତୋତେ ପୂଜା
ଅନେକ ଦେବେ ବଳିଭୋଜା
ଭକତେ ହୋଇବୁ ପ୍ରସନ୍ନ
ଅନେକ ହେବ ତୋର ନାମ
ମାୟା, ବିଜୟା, ଭଦ୍ରକାଳୀ
ଚଣ୍ଡିକା, କୁମୁଦା, କଙ୍କାଳୀ,
କନ୍ୟକା, କୃଷ୍ଣା ଯେ ମାଧବୀ,
ଈଶାନୀ, ଶାରଦା, ବୈଷ୍ଣବୀ,
ଦୁର୍ଗା, ଅମ୍ବିକା, ନାରାୟଣୀ,
ଏକୁଁ ଅନେକ ନାମ ଭଣି
ଗ୍ରାମ ଗ୍ରାମକେ କରି ସ୍ଥାନ
ପୂଜନ୍ତେ ହୋଇବୁ ପ୍ରସନ୍ନ

ଅନ୍ତ କରିବ ମୁହିଁ କେତେ ?
ଅନେକ ନାମ ହେବ ଜଗତେ
ପୂଜା କରିବେ ସର୍ବ ଜନେ
ରାଜା ପରଜା ସ୍ଥାନେ ସ୍ଥାନେ
ସ୍ତୁତି, ପଠନ, ମନ୍ତ୍ର, ଧ୍ୟାନ,
ଷୋଡ଼ଶ ଉପଚାରମାନ ।୯-୧୧
ଶୁଣ ବଚନ ଆଦ୍ୟମାତା
ଯେତେ ଦେବକୀ ମନଚିନ୍ତା
ଦେବକୀ ଗର୍ଭୁଁ ଯାହା ଆଣି
ପ୍ରବେଶ କରିବୁ ରୋହିଣୀ
ତାହାଙ୍କ ନାମ ସଙ୍କର୍ଷଣ
ଲୋକରେ ହୋଇବ ପ୍ରମାଣ
ନାମ ହୋଇବ ବଳରାମ
ବଳେ ନୋହିବ କେହି ସମ ।୧୨
ଶୁଣି ସାନନ୍ଦ ମନ ହୋଇ
ମର୍ତ୍ତ୍ୟ ଚଳିଲେ ମହାମାୟୀ
ହରି ଆଦେଶ ଘେନି ଶିରେ
ମିଳିଲେ ମଥୁରା ନଗରେ
କଂସ ରାଜାର ବନ୍ଦୀ ଘରେ
ମିଳିଲେ ପ୍ରଥମ ପ୍ରହରେ
ରାତ୍ରେ ଦେବକୀ ନିଦ୍ରା'କାଳେ
ଗର୍ଭ ହରିଲେ ଯୋଗବଳେ
ଅନନ୍ତ ଘେନି ମାୟା ବେଗେ
ଥୋଇଲେ ରୋହିଣୀର ଗର୍ଭେ
ଯାହା ସେ ଦଇବ ନିର୍ମିତ
ଦୁର୍ଗା ହୋଇଲେ ଗର୍ଭ ଗତ
ମିଳିଲେ ନନ୍ଦଘରେ ଯାଇଁ
କୃଷ୍ଣ ଜନ୍ମକୁ ବାଟ ଚାହିଁ
ଦେବକୀ ଗର୍ଭେ ସହୁଁ ଗଲା
ଲୋକେ ବୋଇଲେ ଉଭେଇଲା

ଭକ୍ତି କଲେ ନାରାୟଣ
ଦେବକୀ ନ ପାଉ କଷଣ
ଥୋକେ ବୋଇଲେ ଭଲ ହେଲା
କଂସର ଡରେ ପଳାଇଲା
ଯୋଡ଼ୁ ଏ ଦେବକୀ ଭୂଆଣ
କେ ବୋଲେ କର୍ଣ୍ଣେ ତା ନ ଶୁଣ
ଏଡ଼େ ମଉଡ଼ୀ ଅଛି କାହିଁ ?
କେ ବୋଲେ ମୁଖ ତା ନ ଚାହିଁ
କାନ୍ଦି କେ ହୁଅନ୍ତି ବିକଳ
କେ ବୋଲେ ରଖ ଆଦ୍ୟମୂଳା ।୧୩-୧୪
ଦେବକୀ ମନର କଷଣ
ଜାଣିଲେ ପ୍ରଭୁ ନାରାୟଣ
ତେଜିଲେ ଜଳଧି ଶୟନ
ମଥୁରା ମିଳିଲେ ବହନ
ବସୁଦେବର ଦେହେ ଯାଇ
ପଶିଲେ ଜ୍ୟୋତିରୂପ ହୋଇ
ବସୁଙ୍କ ତେଜ ପରଚଣ୍ଡ
ଯେସନେ ଉଦିତ ମାରତଣ୍ଡ ।୧୫-୧୬
ଅମର ଗୁରୁ ଲଗ୍ନବେଳେ
କାନ୍ତ କାମିନୀ ଏକମେଳେ
ଜଗତ ମଙ୍ଗଳ ପୁରୁଷେ
ଦେବକୀ ଉଦରେ ପ୍ରବେଶ
ଉଦୟକାଳେ ଯେସନେ ଶଶୀ
ପୂର୍ବ ଦିଗକୁ ପରକାଶି
କୃଷ୍ଣକୁ ଧରିଣ ଉଦର
ଦେବକୀ ଦିଶିଲା ସୁନ୍ଦର
ଅନ୍ଧାର ବନ୍ଦୀ-ଘରେ ତେଜ
ଯେସନେ ଉଦିତ ଗ୍ରହରାଜ ।୧୭-୧୯
ଦେବକୀ ଗର୍ଭ ବାସ କଥା
ଶୁଣି ପାଇଲା କଂସ ବ୍ୟଥା

ଭୟେ ଚକିତ ମନେ ଛନ୍ତି
ମିଳିଲା ଦେବକୀ ଭୁବନ
ସାତ କବାଟ ଫେଡ଼ାଇଲା
ଅନ୍ଧାର ଘରକୁ ଚାହିଁଲା
ଉଦୟ ହୋଇ ନିଶାକର
ଯେସନେ ନାଶଇ ତମ ଘୋର
ଦେଖି ଚକିତ କଂସ ମନେ
ଖଳ ବୋଲଇ ଭୟ ଛନ୍ନେ
ନିଶ୍ଚୟ ହୋଇଲା ମରଣ
ଏତ ଅନାଦ୍ୟ ନାରାୟଣ
ଗର୍ଭେ ବିଜୟ ବ୍ରହ୍ମରାଶି
ଏ ମୋର କାଳଦଣ୍ଡ-ଫାଶି
ଜୀବନ ନାଶିବ ମୋହର
ଦେବକୀ ବଢ଼ଇ ସୁନ୍ଦର
ଏ ଯେତେ ଗର୍ଭ ପ୍ରସବିଲା
ଏମନ୍ତ ବେଳେ ନ ଦିଶିଲା । ୧୯
କି ବୁଦ୍ଧି କରିବଇଁ ଆଜ
ହେଲାରେ ହରାଇବ କାର୍ଯ୍ୟ
ହସ୍ତରେ ଅଛି ମୋ ଉପାୟ
ଛାଡ଼ିଲେ ନ ପାଇବ ଥୟ
ଦେବକୀ ପକାଇବ ମାରି
ଗର୍ଭ ନାଶିବ ପେଟ ଚିରି
ପୁଣି ବିଚାରୁ ଅଛି ମନେ
ଏ କର୍ମ୍ମ କରିବି କେସନେ
ଜୀବନ ପାଇଁ ଏତେ ପାପ
କରି ପାଇବ ମନେ ତାପ
ଜୀବ ମାନଣେ ସୁଖ ନାହିଁ
ନରକେ ପଡ଼ିବନା ଯାଇଁ ?
ପାପଙ୍କ ମଧ୍ୟେ ପରମାଦ
ସ୍ତ୍ରୀ, ଗର୍ଭିଣୀ, ସ୍ୱସାବଧ

ଏ ତିନି କର୍ମ ଯେ କରନ୍ତି
ଜୀବନ ଥାଉଁ ସେ ମରନ୍ତି
ଜୀବନ ଛାଡ଼ିବାର କାଳେ
ନିନ୍ଦିତ ବୋଲନ୍ତି ସକଳେ
ଇହ ଲୋକରେ ଅପଯଶ
ମରଣେ ନରକେ ପ୍ରବେଶ । ୨୦-୨୧
ଏମନ୍ତ ମନେ ବିଚାରିଲା
ଖଡ଼ଗ ଘେନି ବାହୁଡ଼ିଲା
ମିଳିଲା ନିଜ ପୁରେ ଯାଇଁ
ଖଳଇ ଚଉଦିଗ ଚାହିଁ
ହରିଙ୍କ କଳି ମହାଭୟେ
କ୍ଷଣ କ୍ଷଣକେ କମ୍ପେ କାୟେ
ଆସନ, ଶୟନ, ଭୋଜନେ
ସ୍ନାନ ମାର୍ଜ୍ଜନ, ଜଳପାନେ,
ଗୋଡ଼ାଇଛନ୍ତି ଯେସନେ ହରି
କମ୍ପଇ ମହାଭୟ କରି
ବୃକ୍ଷ, କାନନ, ବନ, ଗିରି
ସବୁ ମଣଇ ନରହରି । ୨୨-୨୩
ଏମନ୍ତେ ରଜନୀ ହୋଇଲା
ଘୋର ତିମିର ପ୍ରବେଶିଲା
ବ୍ରହ୍ମା ଶଙ୍କର ମୁନିମେଳେ
ତେତିଶ କୋଟି ଦେବବଳେ
ମିଳିଲେ ମଥୁରା ନଗରେ
ଦେବକୀ ଦେବୀ ବନ୍ଦୀଘରେ
ପ୍ରଣାମ କଲେ ଜଣେ ଜଣେ
ଶ୍ରୀକୃଷ୍ଣ-ଜନନୀ-ଚରଣେ
ଗର୍ଭକୁ ଚାହିଁ ଗଙ୍ଗାଧର
ସ୍ତୁତି କରନ୍ତି ବେଦବର
ବାସବ ଆଦି ଦିଗପତି
ଯେ ଯାହା ମତି କଲେ ସ୍ତୁତି ।୨୪

ଜୟ ଗୋବିନ୍ଦ ଦାମୋଦର
ସତ୍ୟ-ବଚନ ସ୍ୱାମୀ ! ତୋର
ଆଚାର ଅଛୁ ତିନି ସତ୍ୟ
ସୃଷ୍ଟିର ଆଦି ମଧ୍ୟ ଅନ୍ତ
ସତ୍ୟେ ତୁ ପାଳୁ ବସୁନ୍ଧରା
ତୋର ଭିଆଣ ନରହରି
ସତ୍ୟେ ବ୍ରହ୍ମାଙ୍କୁ କଲୁ ଜାତ
ସତ୍ୟ ସ୍ୱରୂପ ତୁ ଅଚ୍ୟୁତ
ସତ୍ୟର ହେଉ ତୁହି ସତ୍ୟ
ସତ୍ୟ ବଚନ ସତ୍ୟନେତ୍ର
ସତ୍ୟ ତୋହର ଆତଯାତ
ଆମ୍ଭେ ଜାଣିଲୁ ତୋର ସତ୍ୟ
ଅସାଧୁ ମାତ୍ର ସତ୍ୟ ପାଳ
ତୋହର ଶରଣ ସକଳ । ୨୫
ସଂସାର ମଧ୍ୟେ ଦେହ ବୃକ୍ଷେ
ଏଥେଁ ତୁ ମିଳିଲୁ ପ୍ରତ୍ୟକ୍ଷେ
ବୃକ୍ଷର ଯେତେ ଗୁଣମାନ
ଶରୀରେ ତୋହର ଭିଆଣ
ଏକଇ ବୃକ୍ଷ ବେନି ଫଳ
ଚଉର ରସ ତିନି ମୂଳ
ପଞ୍ଚ ଶିକଡ଼ ତଳେ ଗଣି
ଆତ୍ମା ଆହାର ଷଡ଼ ଗୋଟି
ସାତ ବକଳ ଦେହ ଜଡ଼ି
ଅଷ୍ଟମ ଡାଳେ ଛନ୍ତି ବେଢ଼ି
ଗଣି ସ୍ୱଭାବେ ନବ ନେତ୍ର*
ବିସ୍ତାର ହୋଇ ଦଶ ପତ୍ର
ଉପରେ ଅଛି ବେନି ପକ୍ଷୀ
ଏମନ୍ତ ବୃକ୍ଷ ଦେହେ ଲକ୍ଷି
ମୁନି ବୋଲନ୍ତି ସତ୍ୟେ ଶୁଣ
ଦେହ କହିବା ବୃକ୍ଷ ଗୁଣ

ବୃକ୍ଷର ପ୍ରାୟ ଦେହ ଏକ
ଫଳ ଯୋଡ଼ିଏ ଦୁଃଖ ସୁଖ
ତାମସ, ରଜ ସତ୍ତ୍ୱ ଗୁଣ
ଏହାର ମୂଳଟି ପ୍ରମାଣ
ଧର୍ମ, ଅର୍ଥ, ଯେ କାମ, ମୋକ୍ଷ,
ଏ ଚଉର ରସଟି ପ୍ରତ୍ୟକ୍ଷ
ଶବଦ, ରୂପ, ରସ, ଗନ୍ଧ,
ସ୍ପରଶ, ପଞ୍ଚ ମୂଳ ଛନ୍ଦ
ଜନ୍ମ ହୋଇଣ ଦେହ ବଢ଼ି
ବାଳୁତ ରୂପେଣ ବଢ଼ଇ
ତରୁଣ, ବୃଦ୍ଧ, କ୍ଷୟ ମୃତ୍ୟୁ
ଆତ୍ମ ବିକାର ଷଡ଼ ହେତୁ
ଚର୍ମ ଶୋଣିତ ମାଂସ ମେଦ
ଅସ୍ଥି ମଜ୍ଜା ଯେ ଶୁକ୍ର ଛନ୍ଦ
ସପତ ବକଳ ଏହାର
ମୁନି କହନ୍ତି ଜ୍ଞାନ ସାର
ଭୂ, ଜଳ, ଅନଳ, ସମୀର
ଖ, ମନ, ବୁଦ୍ଧି ଅହଙ୍କାର
ଏ ଅଷ୍ଟ ଡାଳଟି ଏହାର
ନବମ ଛିଦ୍ର ନବ ଦ୍ୱାର
ଦଶ ଇନ୍ଦ୍ରିୟ ପତ୍ର ଲେଖି
ଜୀବ ପରମ ବେନି ପକ୍ଷୀ ! ।୨୬
ଏମନ୍ତ ବୃକ୍ଷରୂପ ବନ୍ଧି
ଉଦ୍ଧାର କର ନାଥ ! ମନ୍ଥି
ଜଗତ ତୋରଠୁଁ ଜାତ
ଲୟ ପାଳନ ଜଗନ୍ନାଥ
ତୋର ମାୟାରେ ମୂର୍ଖଜନ
ଆତ୍ମାକୁ ଦେଖନ୍ତି ସେ ଭିନ୍ନ
ଜ୍ଞାନୀ ଦେଖନ୍ତି ସେ ଏକ
ମାୟାରେ ଦିଶୁ ତୁ ଅନେକ । ୨୭

* ନେତ୍ର — ଛିଦ୍ର

ତୁ ଏ ସଂସାର ଦୁଃଖ ନାଶେ
ଶରୀର ବହୁ ନାନା ଅଂଶେ
ସାଧୁଙ୍କୁ ରକ୍ଷୁ ତୁ ନିର୍ମଳ
ଖଳ-ଲୋଚନେ ଯମ କାଳ । ୨୮
ଯେ ତୋର ପାଦେ ପଦ୍ମନାଭ
କରନ୍ତି ଆତ୍ମାଜ୍ଞାନେ ଭାବ
ତୋହର ନାମ ନାବ କରି
ହେଲେ ତରନ୍ତି ଭବ-ବାରି ।୨୯-୩୦
ହେ ନାଥ ! କମଳଲୋଚନ
ମାୟାରେ ମୋହୁ ପ୍ରାଣିମନ
ଯେ ତୋର ନାମ ନ ଭଜନ୍ତି
ମାୟାପଟଳେ ବନ୍ଧା ହୋନ୍ତି
ତୀର୍ଥସେବନ ଦାନ ତପେ
ତରିଲୁଁ ବୋଲୁଥାନ୍ତି ଥୋକେ
କରନ୍ତି ସିଦ୍ଧଙ୍କ ଉପାୟେ
ଭେଦନ୍ତି ବ୍ରହ୍ମଲୋକ ଯାଏ
ତୋ ପଦେ ନ କରି ଆଦର
ହୃଦେ ବହନ୍ତି ଅହଙ୍କାର
ତହୁଁ ପଡ଼ନ୍ତି ଦେହ ଘେନି
ଜନ୍ମ ହୁଅନ୍ତି ପଶୁଯୋନି । ୩୧
ଯେ ତୋର ତହିଁ ମିତ୍ରପଣେ
ଚିତ୍ତ ଖଟାନ୍ତି ଅନୁକ୍ଷଣେ
ନିର୍ଭୟେ ବୁଲନ୍ତି ସଂସାରେ
ନୃତ୍ୟ କରନ୍ତି ଯମଶିରେ । ୩୨
ସତ୍ତ୍ୱ ନିର୍ମଳ ଗୁଣ ହେଉ
ଭକତ ପାଇଁ ଦେହ ବହୁ
ତପ ସମାଧି ଯୋଗକ୍ରିୟା
ବେଦେ କହନ୍ତି ମୂଳ ଯାହା
ତୋ ଆରାଧନୁ ନାହିଁ ଅନ୍ୟ
ତୁ ପୂରିଅଛୁ ସ୍ଥୂଳଶୂନ୍ୟ । ୩୩

ତୁ ଯେବେ ନୋହିବୁ ଜଗତେ
ଅଜ୍ଞାନ ନାଶିବୁ କେମନ୍ତେ
ଯେ ତୋତେ ଯେମନ୍ତ ଚିନ୍ତଇ
ଗୁଣେ ପ୍ରକାଶୁ ଦେହ ବହି । ୩୪
ତୋ ଗୁଣ ଜନ୍ମ କର୍ମମାନ
ସଂଖ୍ୟା କେ କରୁ ଭଗବାନ
ମନ ବଚନେହେଁ ନ ଜାଣି
କେବଳ ବେଦେ ପରିମାଣି । ୩୫
ଶ୍ରବଣେ ତୋର ନାମ ଶୁଣି
ତୋ ରୂପ ହୃଦେ ପରମାଣି
ତୋ ପାଦ ପୂଜାର ବିଧାନ
ଏଣେ ଯେ ହୋନ୍ତି ସାବଧାନ
ଜନ୍ମ ମରଣ ତାର ନାହିଁ
ଏମନ୍ତ ପ୍ରଭୁ ଭବଗ୍ରାହୀ । ୩୬
ତୋହର ପାଦ ରଜ ଦେଇ
ଉଶ୍ବାସ କର ନାଥ ! ମହୀ
ସ୍ୱର୍ଗେ ବସିବୁଁ ପଦ୍ମନାଭ
ତହିଁ ଦେଖିବୁଁ ତୋର ପାଦ । ୩୭
ଏ ତୋର ଦେହବନ୍ତ ପଣ
ଏବେ ଜାଣିଲୁ ନାରାୟଣ
ମନୁଷ୍ୟ ଲୀଳାଏ ତୋ ସଧ
ଯା ରୂପ ନ ଜାଣନ୍ତି ବେଦ । ୩୮
ମତ୍ସ୍ୟ, କଚ୍ଛପ, ନରସିଂହ
କୋଳ, ବାମନ, ସିଂହ, ହୟ
ରାଜନ ଋଷି ଦେବ ବଂଶେ
ଜନ୍ମ ତୁ ହେଉ ଯୋଗ ଅଂଶେ
ତିନି ଭୁବନ ଦୁଃଖ ନାଶି
ଆମ୍ଭଙ୍କୁ ପାଳୁ ବ୍ରହ୍ମରାଶି
ଅବନୀଭାର ଏବେ ହର
ହେ ନାଥ ! ଶରଣ ତୋହର । ୩୯

ଏମନ୍ତେ ପାହିଲା ରଜନୀ
ଦେବକୀ ମୁଖ ଚାହିଁ ଭଣି
ତୋର ଉଦରେ ଜଗନ୍ନାଥ
ଭାଗ୍ୟରେ ହୋଇଲେ ଉଦିତ
ଶୁଦ୍ଧ ଚୈତନ୍ୟ ଅଂଶ ଧେନ
ପ୍ରକାଶ ହୋଇବେ ମେଦିନୀ
କଂସର ଭୟ ଗୁଡ଼ ଆଛି
ମରଣ ଇଚ୍ଛା କଲା ସେହି
ଜଗତ ରଖିବେ ତୋ ସୁତ
ଅଚ୍ୟୁତ ମହିମା ଅନନ୍ତ । ୪୦

ଅରୁଣ ତେଜ ପ୍ରକାଶିଲା
ଦେବଙ୍କୁ ଉଚ୍ଛାହ ଲାଗିଲା
ବ୍ରହ୍ମା ଶଙ୍କର ଆଦିକରି
ଦେବେ ଚଳିଲେ ନିଜପୁରୀ । ୪୧
ଶ୍ରୀହରି ଚରଣେ ମୋ ଚିତ୍ତ
ସୁଜନହିତେ କଲି ଗୀତ
ଦଶମସ୍କନ୍ଧେ ଏହୁ ବାଣୀ
ଶୁଣି ନିର୍ମଳ ହୁଅ ପ୍ରାଣୀ
ପୁରାଣ କଲି ଗୀତରସ
କହିଲା ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ଗର୍ଭଗତେ ଦେବସ୍ତୁତି ନାମ ତୃତୀୟୋଽଧ୍ୟାୟଃ । ୩ ।

—ଃ*ଃ—

## ଚତୁର୍ଥ ଅଧ୍ୟାୟ

( ମୂଳାନୁସାରେ ତୃତୀୟ ଅଧ୍ୟାୟ )

ତୃତୀୟେ ନିଜରୂପେଣ ସମ୍ଭୂତସ୍ତୁ ହରିଃ ସ୍ୱୟଂ ।
ପିତୃଭ୍ୟାଂ ସଂସ୍ତୁତୋ ନୀତଃ ପିତ୍ରା ଖତେନ ଗୋକୁଳଂ । ୦ ।

ଚତୁର୍ଥେ କୃଷ୍ଣ ବନ୍ଦିଘରେ । ଜନମିଗଲେ ନନ୍ଦପୁରେ । । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ଶୁକମୁନି ହସି
ହରିଚରିତ ପରଶଂସି
ପରୀକ୍ଷ ମୁଖକୁ ଚାହିଁଲେ
ଆନନ୍ଦେ ଲୋଚନ ବୁଜିଲେ
ସମାଧି ବସି ଯୋଗ ଧାୟି
କୃଷ୍ଣ ଚୈତନ୍ୟ କେଶ ପାଇ
ପୁଣି ଛଡ଼କେ ଚକ୍ଷୁ ଫେଇ
ହସି କହନ୍ତି ରଜା ଚାହିଁ

ଶୁଣ ହେ ଗୋବିନ୍ଦର ଜନ୍ମ
ଯେତେଣେ ଖଣ୍ଡିବ ଭବ ଭ୍ରମ
ସୂର୍ଯ୍ୟରତହୁଁ ଷଡ଼ରତୁ
ପ୍ରକାଶ ଜନସୁଖ ହେତୁ
ରତୁଙ୍କ ମଧ୍ୟେ ଶ୍ରେଷ୍ଠବଳ
ସମ୍ପୂର୍ଣ୍ଣ ବରଷାର କାଳ
ଭାଦ୍ରବ ମାସ କୃଷ୍ଣପକ୍ଷେ
ସକଳ ଗ୍ରହେ ଛନ୍ତି ଉଚ୍ଚେ
ଅଷ୍ଟମୀ ନିଶା ଅର୍ଦ୍ଧଭାଗେ
ରୋହିଣୀ ନକ୍ଷତ୍ର ସଂଯୋଗେ

ବୃଷ ରାଶିରେ ନିଶାକର
ନକ୍ଷତ୍ର ଗ୍ରହେ ବଳୀୟାର
ଗମ୍ଭୀର ଘୋର ମେଘ ଘୋଷ
ବର୍ଗ ଉତ୍ତମ ନବଅଂଶ
ଏହ୍ନି ସମୟେ ସୁରଗଣେ
ଆକାଶେ ଉତ୍ସବ କରାଏ
ଦୁନ୍ଦୁଭି ବାଦ୍ୟନାଦ ଝରା
ରଙ୍ଗେ ନାଚନ୍ତି ଅପସରା
ଦେବେ କରନ୍ତି ପୁଷ୍ପବୃଷ୍ଟି
ଖଣ୍ଡିବେ ଗୋବିନ୍ଦ ଅରିଷ୍ଟି
ଇନ୍ଦ୍ର ପବନକୁ ହକାରି
ବୋଲଇ ଯାଅ ମଧୁପୁରୀ
ତୋହର ଗନ୍ଧ ଗୁଣ ଦେନ
ଆନନ୍ଦେ ବହିବୁ ମେଦିନୀ
କଂସର ବନ୍ଦୀଘରେ ଯାଇଁ
ବହିବୁ ମଳୟ ବୁଲାଇ
ଇନ୍ଦ୍ରର ଆଜ୍ଞା ପାଇ ବେଗେ
ସମୀର ଚଳିଗଲା ଆଗେ
ପବନ ଗଲା ମଧୁପୁରେ
ବହେ ସୁଗନ୍ଧ ରସଭରେ
ନିର୍ମଳ ଦିଶିଲା ଗଗନ
ମହୀ ମଙ୍ଗଳ ବିଦ୍ୟମାନ
ଗ୍ରାମ ପାଟଣା ପୁର ଦେଶ
ମଙ୍ଗଳ ଗୀତ ନାଦ ଘୋଷ
ନଦୀଏ ଉଚ୍ଛୁଳିଲେ ଜଳେ
ପକ୍ଷୀଙ୍କ ନାଦ ବୃକ୍ଷଡାଳେ
ସ୍ତବକ ପୁଷ୍ପ ବନେ ଫୁଟି
ଗନ୍ଧ ପ୍ରସରଇ ପ୍ରକଟି
ବିପ୍ର ମଙ୍ଗଳ ବେଦ ନାଦେ
ଅନଳେ କ୍ଷେପନ୍ତି ସମିଧେ
ଆନନ୍ଦ ହେଉଅଛି ମହୀ
କୃଷ୍ଣ ଜନ୍ମିବେ ଦେହ ବହି
ବଥାଏ ଦେବକୀ ଉଦର
ସ୍ୱାମୀଙ୍କି ବୋଲନ୍ତି ଉତ୍ତର
ହେ ନାଥ ! ଚିନ୍ତ ନାରାୟଣ
କେ ସହୁଁ ଗର୍ଭର କଷଣ
ଶୁଣି ବସୁଦେବ ଉଠିଲା
ଦେବକୀ କଙ୍କାଳ ଧରିଲା
ଆବୋରି ଗୋବିନ୍ଦ ସୁମରି
ଭୟେ ଚିନ୍ତଇ ନରହରି
ଆକାଶେ ଉଦେ ନିଶାକର
ଗୋବିନ୍ଦ ଉଦରୁ ବାହାର । ୧-୮
ନୀଳ ଜୀମୂତ ଦେହ କାନ୍ତି
ବଳୟେ ମଣି ଝଟକନ୍ତି
ପୀତ ବସନ କଟୀ ଶୋହେ
ରୂପ କୋଟିଏ କାମ ମୋହେ
କଟୀ ମେଖଳା ସୁନାସୂତା
ଉତ୍ତରୀ ସୁବର୍ଣ୍ଣ ପଇତା
କିରୀଟି କୁଣ୍ଡଳ କଙ୍କଣ
ପାଦେ ନୂପୁର ରୁଣୁଝୁଣ
ଦିଶଇ ଶଙ୍ଖ ଚକ୍ର ତେଜ
ମର୍କତ ସ୍ତମ୍ଭ ଚତୁର୍ଭୁଜ
ଗଦା କମଳ ଶଙ୍ଖ ଚକ୍ର
ଅଧର ଓଷ୍ଠ ରଙ୍ଗ ରେଖା
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ
ରତ୍ନ ପାଦୁକା ବେନି ପାୟେ
ଅପୂର୍ବ ରୂପ ଯୋଗେଶ୍ୱର
ଦେବ ମାନବେ ଅଗୋଚର
ଦେବକୀ ପ୍ରସବିଣ ସୁତ
ଶ୍ରମେ ହୋଇଲା ମୋହଗତ

ପଛେ ଯେ ବସୁଦେବ ଥିଲା
କୃଷ୍ଣ ରୂପକୁ ଅନାଇଲା । ୯,୧୦
ସ୍ଥିରେ ଗୃହିଁଲା ବସୁଦେବ
ଦେଖିଲା ଅନାଦି ମାଧବ
କ୍ଷଣେ ରହିଲା ସ୍ଥିର ହୋଇ
କୃଷ୍ଣଙ୍କୁ ଦେଖି ବିସ୍ମରଇ
ପୁଣି ହାରିଲା ମୋହେ ଜ୍ଞାନ
ଚକିତେ ବିସ୍ମରଇ ମନ
ମନରେ ଗଙ୍ଗା ସ୍ନାନ କଲା
ଅୟୁତେ ଧନ ଉତ୍ସର୍ଗିଲା
ଏ ପୁତ୍ର କଂସ ନ ମାଇଲେ
ଦେବଇ ଅଳଙ୍କାର ତୁଲେ
ଏ ପୁତ୍ର ନ ମଲେ ମୋହର
ସେବିବି ବିପ୍ରଙ୍କ ପୟର ।୧୧
ଗୃହିଁଲା ଗୋବିନ୍ଦ ବଦନ
ପୁଣି ପାଇଲା ଦିବ୍ୟ ଜ୍ଞାନ
ଭୟେ କମ୍ପଇ ତା ଶରୀର
ଏତ ଅନାଦି ଚକ୍ରଧର
ମୁଁ ତୁଚ୍ଛ ମନୁଷ୍ୟ ଜୀବନ
କେମନ୍ତେ ହୋଇଲେ ପ୍ରସନ୍ନ ?
କି ବୁଦ୍ଧି କରିବଇଁ ମୁହିଁ
କଂସକୁ ଡରେ ମୋର ଦେହୀ
ବୋଲଇ ବସୁଦେବ ଶୋକେ
ଏ କଥା ଜାଣି ମଞ୍ଜ ଲୋକେ
ତେଜେ ବିରାଜେ ବନ୍ଦୀଘର
ଢଳେହେଁ ନ ଦିଶେ ଅନ୍ଧାର
କର ଅଞ୍ଜଳି ଦେଇ ଶିର
ନିର୍ଭୟେ ବୋଲଇ ଉତ୍ତର ।୧୨

ଶ୍ରୀ ବସୁଦେବ ଉବାଚ

ତୋହର ଆଦି ଅନ୍ତ ନାହିଁ
ପ୍ରକୃତି ତୋତେ ନ ଜାଣଇ
କେବଳ ସୂକ୍ଷ୍ମରୂପ ଶୂନ୍ୟ
ମୁନିଙ୍କ ଚିତ୍ତେ ଜ୍ଞାନଗମ୍ୟ । ୧୩
ତୋହର ମାୟାରେ ଜଗତ
ମହତ ଆଦି ପଞ୍ଚ ଭୂତ
ତହିଁରେ ନୋହୁ ତୁ ପ୍ରବେଶ
ପ୍ରବେଶପ୍ରାୟ ତୋ ପ୍ରକାଶ
ବାହାର ଭିତରେ ଅନନ୍ତ
ସୃଷ୍ଟି କରୁ ତୁ ଆତ୍ମଯାତ
ବୁଦ୍ଧି ଲକ୍ଷଣ ଗୁଣ ଯେନ
ତୋତେ ଚିନ୍ତନ୍ତି ଦିବ୍ୟଜ୍ଞାନୀ
କାହୁଁ ଦେଖିବେ ଦେହବନ୍ତ
ତୁ ଦେବ ଅନାଦି ଅଚ୍ୟୁତ ।୧୪-୧୯
ଜଗତ ତୋର ତହୁଁ ଜାତ
ପାଳଣ ପୁଣ କରୁ ଅନ୍ତ
ଜଗତ ଉପୁଜିବା କାଳେ
ଅରୁଣ ବର୍ଣ୍ଣ ହେଉ ବେଳେ
ପାଳିବା କାଳେ ଶୁକ୍ଳ ବର୍ଣ୍ଣ
ସଂସାରେ ବୋଲାଉ ତୁ ଧର୍ମ
ସଂହାର କାଳେ କୃଷ୍ଣ ରୂପ
ତୋର ବିହାରେ ଯେମର କଳ୍ପ ।୨୦
ତୁ ଏବେ ମୋର ଘରେ ନାଥ
ଅଂଶେ ହୋଇଲୁ ଦେହବନ୍ତ
ଜାଣିଲି ଯେତେକ ଅସୁର
ନାଶି କରିବୁ ମହୀ ସ୍ଥିର ।୨୧
ତୋହର ଜନ୍ମ ମୋର ଘରେ
ଶୁଣିଣ କଂସ କୋପଭରେ
ଛ ପୁତ୍ର ମାଇଲା ମୋହର
ତୁ କି ନ ଜାଣୁ ଚକ୍ରଧର ?
ପ୍ରହରୀମାନେ ଜଗିଛନ୍ତି
ଶୁଣିବେ ବୋଲି ମନେ ଭ୍ରାନ୍ତି

କଂସକୁ କହିବେ ତୁରିତେ
ସେ ଆସି ମାରିବଟି ତୋତେ
ତୋତେ ହେ। ତୁହି ରକ୍ଷାକର
ମୁଁ ସ୍ଥୁର ମନୁଷ୍ୟ ମାତର ।୨୨
ଏମନ୍ତେ ଗଦ୍‌ଗଦ ଲ ଶୋଇ
କମ୍ପଇ କୃଷ୍ଣମୁଖ ଚାହିଁ
ଶୀତଳ ବହଇ ପବନ
ଦେବକୀ ପାଇଲା ଚେତନ
ଚକ୍ଷୁ ଫେଇଣ ଚାହେଁ ଧୀରେ
ଯେସନ୍ତେ ଉଦୟ ଦିନକରେ
ଚାହିଁଲା ପୁତ୍ରର ବଦନ
ଚକିତେ ଚାହିଁ ଛନ ଛନ
ଅପୂର୍ବ କାହୁଁ ଏ ଅଇଲା ?
ଜଗତେ ନାହିଁ ନା ଦେଖିଲା
ଏ ତ ପୁରୁଷଙ୍କ ଉତ୍ତମ
କି ଅବା ପ୍ରଭୁ ଭଗବାନ ?
ପୂର୍ଣ୍ଣ ଆନନ୍ଦ ଜ୍ଞାନମୟ
ଦେଖି ପାଇଲା ଦେବୀ ଭୟ
ବିକଳେ ବେନିକର ଯୋଡ଼ି
ହା କୃଷ୍ଣ ! ବୋଲି ପାଦେ ପଡ଼ି
ଚଞ୍ଚଳ ମନ କରି ସ୍ଥିର
ଦେବକୀ ବୋଲଇ ଉତ୍ତର ।୨୩
ହେ ନାଥ ! ନିସ୍ତରିଲି ମୁହିଁ
ତୋହର ଆଦ୍ୟ ଅନ୍ତ ନାହିଁ
ମନ ବଚନେହେଁ ନ ପାଇ
ପ୍ରସନ୍ନ ହୁଅ ମୋତେ ତୁହି
ଜ୍ୟୋତି ସ୍ୱରୂପ ନିରଞ୍ଜନ
ନିର୍ମଳ ପୁଣ୍ୟ ଦିବ୍ୟଜ୍ଞାନ
ଦେବେ ଗୋଚର ନୋହେ ଯେହୁ
ଅଧ୍ୟାତ୍ମାଦୀପ ମହାବାହୁ ।୨୪,୨୫

ବ୍ରହ୍ମାର ଅନ୍ତେ ମହାନାଶେ
ବ୍ରହ୍ମାଣ୍ଡ ଲୁଚନ୍ତି ଆକାଶେ
ମନର ମୂଳେ ପଞ୍ଚଭୂତେ
ତୋହର ଦେହେ ଲୀନ ହୋନ୍ତେ
ରବି ଶଶାଙ୍କ ନାହିଁ କେହି
ତୁ ମାତ୍ର ରହୁ ଶେଷ ହୋଇ ।୨୫
ନିମିଷ ଆଦି ଯେଉଁ କାଳ
ତୋହର ଚେଷ୍ଟା ଅନୁକୂଳ
ଏ ମର୍ତ୍ତ୍ୟ ମୃତ୍ୟୁ ସର୍ପ ରୂପେ
ଦଂଶିବ ବୋଲି ମହାକୋପେ
ଦେଖଇ ପ୍ରାଣୀଙ୍କି ନିରତ
କରଇ କ୍ଷଣେ କ୍ଷଣେ ଗ୍ରସ୍ତ
ଶରଣ ତୋର ପାଦେ ଯେହୁ
ମୃତ୍ୟୁ ପାଇବ ସେବା କାହୁଁ ?
ବାହୁଡ଼ି ହୋଏ ସେ ନିରାଶ
ସେ ପ୍ରାଣୀରହେତୋରପାଶ ।୨୬,୨୭
ତୁ ଏବେ ରଖ ହରି ମୋତେ
କଂସକୁ ନ ଯାଇ ପରତେ
ମୋର ଉଦରୁ ତୋର ଜାତ
ଲୋକେ କରିବେ କାହୁଁ ସତ ?
ତୋ ରୂପ ନ ଜାଣନ୍ତି କେହି
କଂସକୁ ଡରେ ମୋର ଦେହି ।୨୮-୩୧
ଶୁଣି ବୋଲନ୍ତି ନାରାୟଣ
ହେ ମାତ ! ଶୁଣ ମୋ ବଚନ
ବ୍ରହ୍ମା ଯେ ସୃଷ୍ଟି ଭିଆଇଲା
ତୁମ୍ଭ ଦୁହିଙ୍କି ଜାତ କଲା
ପୃଶ୍ନି ସୁତପା ନାମ ବହି
ଜନ୍ମ ହୋଇଲ ତୁମ୍ଭେ ଦୁଇ
ତାର ଆଦେଶ ଘେନି ଶିରେ
ମିଳିଲ ଗହନ ବନରେ

ଅନେକ ଦୁଃଖେ ତପ କରି
ଜଳ ପବନ ପତ୍ର ଫଳ
ବରଷା ଗ୍ରୀଷ୍ମ ଶୀତ କ୍ରମେ
ଶ୍ରୀ ସ ନିରୋଧି ମହାଶ୍ରମେ
ଶତେ ବରଷ ଦେବମତେ
ତପ ସାଧିଲି ଦୃଢ଼ଚିତ୍ତେ
ନିରତେ କଲ ମୋତେ ଧ୍ୟାନ
ମୁଁ ପୁଣି ହୋଇଲି ପ୍ରସନ୍ନ
ଆନନ୍ଦେ ଯାଚିଲି ମୁଁ ବର
ଜାଣିଲ ତୁମ୍ଭର ବିଗ୍ରହ
ମୋର ଭକତି ହୃଦେ ଲଇଁ
ଭଲ ବୋଇଲ ତୁମ୍ଭେ ଦୁଇ
ବୋଇଲ " ଶୁଣ ଚକ୍ରଧର !
ଆମ୍ଭର ହୋଇବ କୁମର" ।୩୨-୩୯
ପ୍ରଥମେ ହୋଇଲି ମୁଁ ଜାତ
ନାମ ମୋ ପୃଶ୍ନି ଗର୍ଭଖ୍ୟାତ
ଦ୍ୱିତୀୟେ କଶ୍ୟପ ଅଦିତି
ରୂପରେ ତୁମ୍ଭ ଉତପତ୍ତି
ମୁଁ ପୁଣି ତୁମ୍ଭ ଗର୍ଭ ଜାତ
ଉପେନ୍ଦ୍ର ବାମନ ବିଖ୍ୟାତ
ମୋହର ନାମ ଭବଗ୍ରାହ୍ୟ
ଜନ୍ମଲି ପୁଣି ଦେହ ବହି
ପୁତ୍ର ଲାଳସେ ପାଳ ମୋତେ
ପଶିବ ମୋର ଦେହ ଅନ୍ତେ
ଦେବଙ୍କ ବଚନେ ମୁଁ ଜାତ
କରିବ ଅସୁର ନିପାତ
ଏବେ କହୁତେ ନାହିଁ ବେଳ
ମୋତେ ଘେନିଣ ବେଗେ ଚଳ
ନନ୍ଦର ଘରେ ମୋତେ ଥୋଇ
କନ୍ୟାକୁ ଆଣ ପାଲଟାଇ ।୪୦-୪୫

ଶ୍ରୀ ଶୁକ ଉବାଚ

ଏମନ୍ତ କହି ନରହରି
ନର ବାଳକ ରୂପ ଧରି
ଗୋବିନ୍ଦ ଜ୍ଞାନ ଘେନି ଶିରେ
କୋଳେ ଧଇଲା ଚକ୍ରଧରେ
ଫିଟିଲା ପୟରୁ ଶାଙ୍କୁଳ
ପଥ କଢାଇଲା ବିଜୁଳି
କୋଳରେ ଦେଖି ନାରାୟଣ
କବାଟ ଫିଟିଲା ତକ୍ଷଣ
ନିଦ୍ରାରେ ମୋହିତ ସକଳ
ବୃଷ୍ଟି କରନ୍ତି ମେଘମାଳ
ତିନ୍ତିବା ଦେଖି ଜଗନ୍ନାଥ
ଫଣାରେ ଢାଙ୍କିଲେ ଅନନ୍ତ।୪୬-୪୯
ଯାଆନ୍ତେ କୃଷ୍ଣଙ୍କୁ ଘେନିଣ
ପଥେ ଓଗାଳେ ଉଗ୍ରସେନ
ବୋଲଇ କାହିଁରେ ତୁ ଚୋର
ନିଶାରେ ହୋଇଲୁ ବାହାର
ଶୁଣି କମ୍ପଇ ବସୁଦେବ
ବିପତ୍ତି କଲୁ ହୋ ଦଇବ
କୃଷ୍ଣଙ୍କୁ ସୁମରି ବିକଳ
ନୟନୁ ବହେ ଅଶ୍ରୁ ଜଳ
ତା ଶୁଣି ବସୁଦେବ କହି
ପୁତ୍ରକୁ ନେଉଅଛି ମୁହିଁ
ବୋଲଇ ଉଗ୍ରସେନ ବୀର
କାଲି ମାରିବ କଂସାସୁର
ଯେତେ ବାଳକ ତୋର ଯାତ
ସବୁଙ୍କୁ କରଇ ସେ ହତ
ପିତାର ବିକଳ ଦେଖିଣ
ବୋଲନ୍ତି ପ୍ରଭୁ ଭଗବାନ

ଏ କଥା ଚହଲ ନ କର
ଆମ୍ଭେ ସେ ଯିବୁଁ ଗୋପପୁର
ତୁ କା ନଜାଣୁ ଉଗ୍ରସେନ
ଆମ୍ଭେ ସେ ଦେବ ନାରାୟଣ
ଭାର ଯେ ନ ସହିଲ ମହୀ
ଏ ଭାର ସଂହାରିବ ମହିଁ
ଶୁଣି ବୋଲଇ ଉଗ୍ରସେନ
ଦେଖାଅ ଶଙ୍ଖ ଚକ୍ର ଚିହ୍ନ
ଭୃତ୍ୟକୁ ଦୟା ଭାବଗ୍ରାହୀ
ଶଙ୍ଖ ଚକ୍ର ଚିହ୍ନ ଦେଖାଇ
ସ୍ତୁତି କରଇ ଉଗ୍ରସେନ
ଚରଣେ କଲାକ ପ୍ରଣାମ
ଶ୍ରୀମୁଖେ ଆଜ୍ଞା ତାକୁ ଦେଲେ
ନୃପତି ହୋଇବୁ ବୋଇଲେ
ହରଷେ ବସୁଦେବ ଗଲା
କୃଷ୍ଣଙ୍କୁ ଘେନିଣ ଚଳିଲା
ନଦୀର ତୀରେ ଯାଇଁ ମିଳି
ଦେଖିଲା ଯମୁନା ଉଛୁଳି
ଯମର ବହେଣୀ ଯୁବତୀ
ଗମ୍ଭୀର କେ କରିବ ଅନ୍ତ
ବହଇ ନଦୀ ଖରତର
ଫେନ ସ୍ରୋତରେ ଭୟଙ୍କର
ନଦୀରେ ପଶିଲା ବହନ
କାତରେ ଅତିଭୟ ମନ
ନାସାରେ ପଶନ୍ତେଣ ପାଣି
ମୂର୍ଦ୍ଧ୍ନେ ବସାଇ ଚକ୍ରପାଣି

ବୁଡ଼ିଣୁ ଯାଚନ୍ତି ବସୁଦେବ
ହୃଦେ ଚିନ୍ତଇ ବାସୁଦେବ
ହରିଙ୍କି ଦେଖି ଭୟ କଲା
ବାଲି କୁଦରେ ବାଟ ଦେଲା । ୫୦
ଚଳିଲା ନଦୀ ପାର ହୋଇ
କୃଷ୍ଣଙ୍କୁ ହୃଦରେ ଲଗାଇ
ମିଳିଲା ଯାଇଁ ଗୋପପୁରେ
ତକ୍ଷଣେ ନନ୍ଦର ମନ୍ଦିରେ
ନିଦ୍ରାମୋହିତ ସର୍ବଜନ
ଭୟେ ଗୃହଁଇ ଚଳ ଚଳ
ଅମ୍ବିକା ହୋଇଅଛି ଜାତ
ଯଶୋଦା ନିଦ୍ରାରେ ମୋହିତ
ଯଶୋଦାକୋଳେ କୃଷ୍ଣ ଥୋଇ
କନ୍ୟା ଆଣିଲା ପାଲଟାଇ
ମିଳିଲା ଦେବକୀ ନିକଟ
ତକ୍ଷଣେ ପଡ଼ିଲା କବାଟ
ଲାଗିଲା ଚରଣେ ଶାଙ୍କୁଳି
ଦୁହିତା ରୁଡ଼ିଲା ବୋବାଳି । ୫୧-୫୩
ହରି ଚରିତ ସୁଧାବାଣୀ
ଶୁଣି ନିର୍ମଳ ହୁଅ ପ୍ରାଣୀ
ଶ୍ରୀକୃଷ୍ଣ ଜନ୍ମ ରସଭର
ଶୁଣି ସଂସାରୁ ହୁଅ ପାର
ପରୀକ୍ଷେ କହେ ଶୁକମୁନି
ପୁରାଣ ରସ ଗୀତ ବାଣୀ
ହରି ଚରିତ ଭାଗବତ
କହଇ ଦାସ ଜଗନ୍ନାଥ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅମ୍ବିକା ବନ୍ଧଗୃହ
ପ୍ରବେଶନୋ ନାମ ଚତୁର୍ଥୋଽଧ୍ୟାୟଃ ୪ ।

୫୦ ବଙ୍ଗମୁଦ୍ରିତ ବହିରୁ ମୂଳାନୁରୂପ ନୁହେଁ ।

# ପଞ୍ଚମ ଅଧ୍ୟାୟ

( ମୂଳାନୁସାରେ ୪ର୍ଥ ଅଧ୍ୟାୟ )

ଚତୁର୍ଥେ ଚଣ୍ଡିକାବାକ୍ୟମାକର୍ଣ୍ଣ୍ୟାତ୍ତଭୟାକୁଳଃ ।
ଦୁର୍ମନ୍ତ୍ରିଭିଃ ହ୍ୱତଂ ମେନେ କଂସୋ ବାଳାଦହିଂସନଂ । ୦ ।

ପଞ୍ଚମେ ଚଣ୍ଡିକା ବଚନ । ଶୁଣିଣ କଂସ ମନ କ୍ଷୁନ୍ନ ।
ଦୁଷ୍ଟ ମନ୍ତ୍ରୀଙ୍କ ବୋଲ ଶୁଣି । ବାଳକ ବଧ ହିତ ମଣି । ୦ ।

ଶୁଣି ସାନନ୍ଦ ମର୍ତନ ଘଟଏ
ପଡ଼ଇ ଶୁକ ମୁନି ପାୟେ
ଆନନ୍ଦେ ଲୋଟଇ ଧରଣୀ
କୃତାର୍ଥ କୃଷ୍ଣଜନ୍ମ ଶୁଣି
ଭକତି ଦେଖିଣ ତାହାର
କହନ୍ତି ବ୍ୟାସଙ୍କ କୁମର । ୧

ଶ୍ରୀ ଶୁକ ଉବାଚ

ଶୁଣି ପରୀକ୍ଷ ଦଣ୍ଡଧାରି !
କୁମାରୀ ବାଳରାବ କରି
ଶୁଣି ପ୍ରହରୀ ଗୋଳ କଲେ
କଂସ ସମ୍ମୁଖରେ ଜଣାଇଲେ । ୨ ।
ଶୁଣି ଅସୁର ମହାବଳ
ବୋଲଇ ପଶିଲା ମୋ କାଳ
ଶୟନ ସ୍ଥାନୁ ବେଗେ ଉଠି
ଖଡ଼ଗ କଲା ଦୃଢମୁଷ୍ଟି
ଧାଇଁଲା ପବନହୁଁ ଖରେ
ବେଗେ ମିଳିଲା ବନ୍ଦୀ ଘରେ
ପିନ୍ଧିଲା ବସ୍ତ୍ର ଅସମ୍ଭାଳ
ଫିଟିଲା ଦୃଢ ବନ୍ଧବାଳ
କବାଟ ଫେଡ଼ିଣ ପଶିଲା
ଦେଖି ଦେବକୀ ଭୟ କଲା । ୩

କଂସ କମ୍ପଇ କୋପଭରେ
ରତ୍ନ ମୁକୁଟ କମ୍ପେ ଶିରେ
ଦେଖିଣ କମ୍ପଇ ଦେବକୀ
କାନ୍ଦଇ ଅତି ଦୁଃଖେ ଦୁଃଖୀ
ବୋଲଇ ଶୁଣ ନରନାଥ !
ହୋଇଲା ଦୁହିତା ଏ ଜାତ
ତୋର ପୁତ୍ରକୁ ଏହା ଦେବ
ଆନନ୍ଦେ ବଧ୍ୟ କରାଇବ ।୪।
ବହୁତ ଦେଲୁ ପୁତ୍ର କଷ୍ଟ
ପୋଡ଼ୁ ନିର୍ଲଜ୍ଜ ମୋର ପେଟ
ଜୀବନ ଧିକ ହେଉ ମୋର
ମରିବି ହତ୍ୟା ତୋ ଉପର
ଆଉ ବୟସ ମୋର କାହିଁ ?
ପାରିବି ପୁତ୍ର ଉପୁଜାଇ
ଜୀବନ ହେଉ ମୋର ଧିକ
ଦୁହିତା ଦାନ ଦେଇ ରଖ
ସଙ୍ଗାଳି ହେଉ ବୃଦ୍ଧକାଳେ
ପଡ଼ୁଛି ତୋର ପାଦତଳେ ।୫,୬।
ଶୁଣି ଦାନବ ମହାବଳୀ
କୋପେ କମ୍ପଇ ପରଜ୍ୱଳି
ଦେଖିଣ ଚକିତ ଦେବକୀ
ଭୟେ ବୁଜିଲା ବେନି ଆଖି

କୋଳରେ ଲୁଚ୍ଛଇ ଦୁହିତା
ଶରଣ ଗଲି ରଖ ଭ୍ରାତା
କଂସ ବୋଲଇ ତାହା ଶୁଣି
ତୁ ଗ୍ଭର ମୋହର ବଇରିଣୀ
ବସୁଦେବର ଦୋଷ ନାହିଁ
ତୁ ମୋତେ ଅଛୁ ବାଟ ଚାହିଁ
ମୋର ମରଣେ ତୋର ସୁଖ
ଦଇବ ଦେଇଅଛି ଦୁଃଖ
ତୁ କାହୁଁ ଜାଣୁ ହରମାୟା ?
ଅସୁରେ ବଡ ସେ ନିର୍ଦ୍ଦୟା
ନାନା ରୂପରେ ହୋଇ ଜାତ
ଅସୁର କରଇ ନିପାତ
ନାରଦ କହିଛନ୍ତି ମୋତେ
ଏ ମୋତେ ମାରିବ ଯୁକତେ
ଅଷ୍ଟମ ଗର୍ଭ ମୋ ବଇରୀ
ଏହାର ହସ୍ତେ ମୁହିଁ ମରି
ଚାହିଁଲି ଅଧର କାମୋଡ଼ି
କୋଳରୁ ଆଣିଲା ଉଝୁଡ଼ି
ବେନି ଚରଣ ଧରି କରେ
ବୁଲାଇ ପିଟିଲା ଶିଳାରେ ।୭-୮
ଯେ ଦେବୀ ଜଗତ ସଂହାରେ
କାହାର ବଳ ତାକୁ ମାରେ
କଂସ ହସ୍ତରୁ ଗଲେ ଚଳି
ଗଗନେ ଯେସନେ ବିଜୁଳି
ତେଜେ ଦଶଦିଗ ବିରାଜେ
ବେନି ଚରଣ, ଅଷ୍ଟ ଭୁଜେ
କେ କହୁ ଦେବୀ ଆଭରଣ
ଅଙ୍ଗଦ ନୂପୁର କଙ୍କଣ
ଗନ୍ଧ ଚନ୍ଦନ ପୁଷ୍ପମାଳ
ତେତିଶ କୋଟି ଦେବେ ମିଳି

ସ୍ତୁତି କରନ୍ତି ସୁର ମୁନି
କଂସକୁ କହନ୍ତି ଭବାନୀ ।୯-୧୧
ରେ କଂସ ! ଶୁଣ-ମୋ ଉତ୍ତର
ତୋର ବଇରୀ ଚକ୍ରଧର
ସେ ତୋତେ କରିବେ ସଂହାର
ଆବର ଯେତେକ ଅସୁର
ତୋହର ପାଇଁ ଦେହ ବହି
ଜାତ ହୋଇଲେ ଯହିଁ ତହିଁ
ତୁ ମୋତେ ନ ଜାଣି କରୁଛୁ
ନିସ୍ତୁତ ପଥ କପାଁ ହୁଡ଼ୁ ?
ଦେବେ ସେ ତୋହର ବଇରୀ
ତାହାଙ୍କ ବୋଲକୁ ତୁ ଡରି
ଛ ପୁତ୍ର ମାଇଲୁ ଏହାର
ଧର୍ମକୁ ଛାଡ଼ିଲୁ ଅସୁର
ଏହାକୁ ବନ୍ଦିଘରୁ ଛାଡ଼ି
ବେନି ଚରଣ ତଳେ ପଡ଼ି
ତୋଷିଣ ନିଅ ନିଜ ପୁର
ତୋର ବଇରୀ ପୀତାମ୍ବର ।୧୨
ଦେବୀ ଚଳିଲେ ନିଜ ସ୍ଥାନ
ଉଚ୍ଚାଟ କରି କଂସ-ମନ
ଯାହା କହିଲେ ଜଗନ୍ମାତ
ଜଗତେ ହୋଇଲେ ବିଖ୍ୟାତ ।୧୩
ଦେବୀ ବଚନ କଂସ ଶୁଣି
ବିଚାର କଲା ମନେ ଗୁଣି
ନ ଜାଣି ବିଧାତାର ଗତି
ସୋଦରେ କଲଇଁ ଅନୀତି
ଅନେକ କଲଇଁ ମୁଁ ଦୋଷ
କେମନ୍ତେ ହୋଇବ ବିଶ୍ୱାସ
କସ କରିବ ବୋଲି ଭଳି
ଚରଣୁଁ ଫେଡ଼ାଇ ଶାଙ୍କୁଳି

ଗୃହିଁଲ ଦେବକୀ ବଦନ
ବୋଲଇ ମଧୁର ବଚନ ।୧୪
ଦେବକୀ ବସୁଦେବ ! ଶୁଣ
ତୁମ୍ଭରେ କଲି ଦ୍ରୋହପଣ
ମୁହିଁ ଯେ ସ୍ୱଭାବେ ଅସୁର
ଭଣଜା ମାଇଲି ମୋହର
ତୁମ୍ଭଙ୍କୁ ଦେଲି ପୁତ୍ର କଷ୍ଟ
ମୋହର ଧର୍ମ କଲି ନଷ୍ଟ
ସଂସାରେ କଲି ଅପଯଶ
ନରକେ ହୋଇବ ପ୍ରବେଶ
ଦେହ ବହିଲେ ନିଶ୍ଚେ ମରି
ସଂସାର ନୁହଇ କାହାରି
ବୃକ୍ଷର ତଳେ ଯେହ୍ନେ ଆସି
ପଥିକ ବିଶ୍ରାମନ୍ତ ବସି
ପୁଣି ଚଳନ୍ତ ଶ୍ରମ ସାରି
ସେ ବୃକ୍ଷ ନୁହଇ କାହାରି
ତେମନ୍ତ ମାୟା ଏ ସଂସାର
କେ ପିତା, କେ ପୁତ୍ର କାହାର ?
ଅର୍ଜିଲା କର୍ମେ ଆତଯାତ
ମାୟା ଭଆଣ ତା ନ ମାତ
ବୁଦ୍ଧି ବିଶ୍ୱରେ ଯାହା କରି
ଭୁଞ୍ଜଇ ସେ ଫଳ ଆବୋରି
ଦୋଷ କରିବ ମୋର କ୍ଷମା
ସ୍ୱଭାବେ ମୁହିଁ ଦୁରାତ୍ମା
ଏମନ୍ତ କହି ଶୋକ କରି
ପାଦେ ପଡ଼ିଲା କର ଯୋଡ଼ି
ସୁହୃଦ ପଣ ଦେଖାଇଲା
ଅନେକ ଧନ ରତ୍ନ ଦେଲା
ନିଜ ମନ୍ଦିରେ ଦେଲା ବାସ
ଅନେକ କରାଇ ବିଶ୍ୱାସ

କଂସ ଭକତି ଭାବ ଦେଖି
ସନ୍ତାପ ଛାଡ଼ିଲା ଦେବକୀ
ସନ୍ତୋଷ ହୋଇ ବସୁଦେବ
ଧନକୁ ଧନ ବଡ଼ ଭାବ ।୧୫-୨୮
ଏମନ୍ତେ ରଜନୀ ପାହିଲା
କଂସ ସଭାରେ ବିଜେ କଲା
ଅସୁରଗଣଙ୍କୁ ବସାଇ
କହଇ ବିଶ୍ୱାସ କରାଇ
ଶୂନ୍ୟେ ଚଣ୍ଡିକା ଯାହା ଭଣି
ସବୁ କହିଲା ପରମାଣି ।୨୯
କଂସର ଦେଖିଣ କାତର
ଅସୁରେ ବୋଲନ୍ତି ଉତ୍ତର
ଏମନ୍ତ ଅଛୁ ଯେବେ ଜାଣି
ଯାହା କହିଲେ ନାରାୟଣୀ
ତୋହର ଆଜ୍ଞା ଘେନ ଶିରେ
ବୁଲିବୁ ଦେଶ ବିଦେଶରେ
ଧନକଠାରୁ ଯେତେ କାଳ
ସବୁରି ଖୁରାଇବୁଁ କାଳ
ଯେତେକ ବାଳକ ବୟସର
ସକଳ ପକାଇବୁଁ ମାରି ।୩୦,୩୧
ତୁ କପାଁ ! ଡରୁ ଦେବଗଣେ
ସେବନ୍ତି ତୋହର ଚରଣେ
ତୋ ତୁଲେ କେ କରୁ ସଂଗ୍ରାମ
ଦେବେ ନୁହନ୍ତି ସରି ସମ
ତୋହର ଶୁଣି ଧନୁ-ଘୋଷେ
ପଳାନ୍ତି ସଂଗ୍ରାମୁଁ ତରାସେ
ଜୀବନ ପାଇଁ ଏଡ଼ି ରଣ
ଦେବେ ପଶନ୍ତି ବଣେ ରଣ
କେ ପିନ୍ଧି ନ ପାରନ୍ତି ବାସ
ଭୟେ ଫିଟଇ କାହା କେଶ

ନସହେ ନ ପଳାନ୍ତି ଯେହୁ
ଭୁତ ନ ମାର ଦୟା ବହୁ
ଜୀବନ ପାଇଁ ଯାର ଆଶ
ସେ ତୋତେ କରବେଟି କସ ।୩୨-୩୪
ତହୁଁ ଅଧିକ ତିନ ଦେବ
ବ୍ରହ୍ମା ଶଙ୍କର ପଦ୍ମନାଭ
ଆତ୍ମାର ସୁଖେ ସେ ରମନ୍ତି
ସେ କେଉଁ ତୋତେ ବାଦ ଚିନ୍ତି
ଅଗାଧ କ୍ଷୀରସିନ୍ଧୁ ଜଳେ
ଶୟନ ଅନନ୍ତର କୋଳେ
ପାଦେ ଖଟନ୍ତି ବେନି ନାରୀ
ସୁଖେ ଶୟନ କରହରି
ସେ କମ୍ପା ତୋର ଭୁଲେ ରଣ
ମିଛ କହିଲେ ଦେବଗଣ ॥
ବ୍ରହ୍ମା ଯେ ଥାଇ ତାର ସୁଖେ
ଚିନ୍ତା କରଇ ତିନ ଲୋକେ
ତପହୁଁ ନ ଜାଣଇ ଆନ
ଚିନ୍ତଇ ପ୍ରଭୁ ଭଗବାନ
କୃଷ୍ଣହୁଁ ନ ଜାଣଇ କିଛି
ସେ କପା ତୋତେ ବାଦ ଇଚ୍ଛି ॥
ଶଙ୍କର ଥାଇ ଭୂତ ମେଳେ
ଅମ୍ବିକା ଥାଇ ତାର କୋଳେ
ସେ କପା ସମର କରିବ ?
ନିତ୍ୟେ ଉଦାସୀ ସଦାଶିବ
ଇନ୍ଦ୍ର ତ ବଳେ ନୋହେ ସରି
ତୋତେ ତ ହରପାଳେ ଡରି ।୩୬,୩୭
ତୋର ବଇରି ଯେବେ ହରି
ସେ ଥାଇ ସବ ଘଟେ ପୂରି
କେ ତାକୁ ପାଇବ କି ଲୋକେ
ପୁଣି କହିବା କଉତୁକେ
ଦେବତାମାନେ ତାର ମୂଳ
ଯେ ଧର୍ମ ଧରନ୍ତି ଶମୂଳ
ଦେବେ ତାହାର ତହୁଁ ଜନ୍ମ
ବେଦରୁ ଯେତେକ ନିତ୍ୟକର୍ମ
ଗୋରୁ ବ୍ରାହ୍ମଣ ଯଜ୍ଞ ଦାନ
ତୀର୍ଥ ଦକ୍ଷିଣା ତପ ଶ୍ରମ ।
ତପ କରନ୍ତି ଯେତେ ଲୋକେ
ବିଷ୍ଣୁଙ୍କୁ ଭଜନ୍ତି ଯେ ଥୋକେ
ଶ୍ରଦ୍ଧା କରନ୍ତି ଯେହୁ ଧର୍ମେ
ଦୟା ବହନ୍ତି ଦୁଃଖୀଜନେ
କରନ୍ତି ପରେ ଉପକାର
ଯମଲୋକକୁ ଯାର ଡର
ଏହାଙ୍କ ଦେହେ ଥାନ୍ତି ହରି
ଏ ମଲେ ମରଇ ମୁରାରି ॥
ଏ ଆମ୍ଭ ଉଚିତ ବଇରି
ଏମନ୍ତେ ଶବ୍ଦ ଦିବ ମାରି
ଅଇର ବାଳକାକୁ ମାରି
ନ ମଲେ ଧନେ ଧନେ ଡରି
ଦେହରେ ବ୍ୟାଧି ଜନ୍ମ କାଳେ
ହେଳା ଯେ କରେ ସୁଖ ଭୋଳେ
ସେ ଯେହ୍ନେ ନିରନ୍ତେ ବଢ଼ଇ
ଶତ୍ରୁର ସ୍ୱଭାବଟି ଏହି
ଆଜ୍ଞା ତୁ ଦିଅ ବେଗ କରି
ହରିଙ୍କି ପକାଇବୁ ମାରି ।୩୮-୪୨
ଅସୁରଙ୍କର ବୋଲ ଶୁଣି
କଂସ ଆନନ୍ଦ ମନେ ଗୁଣି
ଅନେକ କଲା ପରଶଂସା
ହିତ ମଣିଲା ବ୍ରହ୍ମହିଂସା
ଜଣ ଜଣକେ ଶାଢ଼ୀ ଦେଲା
ବଇରି ସଂହାର ବୋଇଲା

ଅସୁର କଲକ ବିଶ୍ୱାସ
ଅମୃତ ମଣେ କାଳବିଷ । ୪୩
କଂସ ଆଦେଶ ଘେନ ବେଗେ
ଅସୁରେ ଗଲେ ଦଶଦିଗେ
ତକ୍ଷଣେ ହୋଇ କାମରୂପୀ
ପଶିଲେ ବନ ଗିରି ବ୍ୟାପି
ଗ୍ରାମ ପାଟଣା ପୁର ଦେଶ
ଅନେକ ଶିଶୁ କଲେ ନାଶ
ଦାନବବୁଦ୍ଧି ମୂଢ଼ପଣ
ସାଧୁଙ୍କୁ କରନ୍ତି କଷଣ
କଂସ ବଇରୀ ଅଛି କାହିଁ
ନିତ୍ୟେ ଖୋଜନ୍ତି ଭାବଗ୍ରାହୀ
ତାମସ ବୁଦ୍ଧି ଆଚରିଲେ
ନିକଟେ ମରଣ ଚିନ୍ତିଲେ
ଆୟୁଷ ଯଶ ବଳ ଧର୍ମ
ଲୋକ ଆଶିଷ ଶୁଭ କର୍ମ
ଏ ଅଷ୍ଟ ସର୍ବନାଶ କରେ
ହିଂସା କରନ୍ତି ଯେହୁ ପରେ ।୪୪-୪୬
ସୁଜନେ ଶୁଣ ହରିକଥା
ଫିଟିବ ଭବ-ବନ୍ଧ ବ୍ୟଥା
ବ୍ରହ୍ମ ଲୋକରୁ କୀଟ ଯାଏ
ହିଂସକ ହରିଙ୍କି ନ ପାଏ
ସେ ହରି ଦୁଃଖୀଙ୍କ ସୋଦର
ହିଂସା ନାଶିବେ ପ୍ରଭୁ ମୋର
କୃଷ୍ଣର ପାଦେ ଦେଇ ଚିତ୍ତ
କହଇ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ କଂସୋଦ୍ୟମ
ନିରୂପଣଂ ନାମ ପଞ୍ଚମୋଽଧ୍ୟାୟଃ

******

## ଷଷ୍ଠ ଅଧ୍ୟାୟ

( ମୂଳାନୁସାରେ ୫ମ ଅଧ୍ୟାୟ )

ପଞ୍ଚମେ ଜାତକଂ ନନ୍ଦଃ ସୂନୋଃ କୃତ୍ୱା ମହୋତ୍ସବଂ ।
ଗତ୍ୱାଥ ମଥୁରାଂ ପ୍ରାପ ବସୁଦେବାଗମୋତ୍ସବଂ । ୦ ।

ଷଷ୍ଠରେ କୃଷ୍ଣଜନ୍ମୋତ୍ସବ । ଆନନ୍ଦେ ନନ୍ଦ ସାରି ସର୍ବ ।
ମଥୁରାପୁରେ ପ୍ରବେଶିଲ । ବସୁଦେବର ଭେଟ ହେଲ ।

ରାଜୋବାଚ

ବ୍ୟାସକୁମର ମୁଖୁଁ ଶୁଣି
ଅମୃତ ଭାଗବତ ବାଣୀ
ଆନନ୍ଦେ ପୁଲକିତ ହୋଇ
ମୁନିଚରଣେ ଶିର ଦେଇ
ଉଠି ଯୋଡ଼ିଣ ବେନି କର
ରାଜନ ବୋଲଇ ଉତ୍ତର

ହେ ମୁନି ! ହୋଇଲି ପବିତ୍ର
ଶୁଣି ଚରିତ ଭାଗବତ
କୃଷ୍ଣଙ୍କୁ ବସୁଦେବ ନେଇ
ଥିଲି ନନ୍ଦ ଘରେ ଥୋଇ
ତହିଁ କି କଲେ ବନମାଳୀ ?
ଶୁଣିବି କୃଷ୍ଣ ବାଳକେଳି
କହି ପବିତ୍ର ମୋତେ କର
ସେବଇଁ ଚରଣେ ତୁମ୍ଭର
ଶୁଣି ସାନନ୍ଦ ମୁନିବର
ବୋଲନ୍ତି ଶୁଣ ଦଣ୍ଡଧର !

ଶ୍ରୀ ଶୁକ ଉବାଚ

ନିଦ୍ରା ଜଗତ ମୋହିଥିଲା
ବସୁଦେବ ସେ ଥୋଇଗଲା
ଚେତ ଗୃହିଁଲା ନନ୍ଦରାଣୀ
ଶୟାଇଁ ଉଠେ ସୁଲକ୍ଷଣୀ
ଦେଖିଲା ହୋଇଛି ତନୟେ
ନନ୍ଦକୁ କହିଲେ ଥୋକାଏ ,
ଶୁଣି ମିଳିଲା ବେଗେ ନନ୍ଦ
ପୁତ୍ରକୁ ଦେଖିଣ ଆନନ୍ଦ
ଯେତେ ଯଶୋଦା ପରିବାରୀ
ସଇ ଆଣନ୍ତି ନର ନାରୀ
ବ୍ରାହ୍ମଣେ ମିଳିଲେ ଗହଳ
ଶୁଭିଲା ପୁତ୍ର ଜନ୍ମ ଗୋଳ
ନନ୍ଦ ଦେଖିଣ ଦ୍ୱିଜଗଣ
ପୂଜିଲା ବିପ୍ରଙ୍କ ଚରଣ
ବେଗେ ହୋଇଲା ଶୁଚିବନ୍ତ
କାଞ୍ଚନ ଆଣିଲା ବହୁତ
ବ୍ରାହ୍ମଣେ କଲେ ବେଦଧ୍ୱନି
ମଙ୍ଗଳ ଶୁଭ ବେଳ ଘେନି

କରାଇ ଜାତ-କର୍ମ ବିଧି
ଦେବତା ପିତୃଙ୍କୁ ଆରାଧି
ବିପ୍ରଙ୍କୁ ଅନେକ ପୂଜିଲା
ବେନି ନିୟୁତ ଧେନୁ ଦେଲା
ମଣ୍ଡିଣ ବସ୍ତ୍ର ଅଳଙ୍କାର
ଚନ୍ଦନ କୁସୁମ ଚାମର •
ତିଳ ପର୍ବତମାନ କରି
ଦେଲା କାଞ୍ଚନ ବସ୍ତ୍ର ଭରି ।୧-୩
ମଙ୍ଗଳ କଲେ ବେଦ ସ୍ୱର
ରଙ୍ଗେ ନାଚନ୍ତି ନର୍ତ୍ତକୀରି
ସୂତ ମାଗଧ ବନ୍ଦୀ ମିଳି
ଗାବନ୍ତି ମଙ୍ଗଳ ଉଚ୍ଚାରି
ବାଜଇ ବାରତୂର ଭେରୀ
ଆନନ୍ଦେ ମଙ୍ଗଳ ମଧୁରୀ ।୪,୫।
ନନ୍ଦର ଘରେ ପୁତ୍ର ଜାତ
ଚହଳ ଶୁଭେ ଅପ୍ରମିତ
ଗୋପ ନଗରର ଯେତେ ଲୋକେ
ଶୟାରୁ ଧାଇଁଛନ୍ତି ଥୋକେ
ସୁଖରେ ପାହିଲା ରଜନୀ
ବାହାର ହୋଇଲେ କାମିନୀ
ଅଗଣା ଖରିକ ପହଁରା
ଚନ୍ଦନ ଗୋଳି ଦ୍ୟନ୍ତି ଛେରା
ପିଣ୍ଡାରେ ସୁବର୍ଣ୍ଣ କଳସେ
ତୋରଣା ଲମ୍ବାନ୍ତି ହରଷେ
ଗୋରୁଙ୍କୁ ମଣ୍ଡିଲେ ଗୋପାଳେ
ବସ୍ତ୍ର ଭୂଷଣ-ଫୁଲମାଳେ
ବୃଷଭ, ସୁରଭି, ବାଛୁରୀ,
ହଳଦି ତେଲ ତାଙ୍କୁ ବୋଳି
ଗଉଡ଼େ ଶୁଚିବନ୍ତ ହୋଇ
ଆନନ୍ଦେ ଅଳଙ୍କାର ଲଇ

ହାର, କଙ୍କଣ, କର୍ଣ୍ଣେ ଫୁଲ ଃ ଯଶୋଦାକୋଳେ କୃଷ୍ଣ ଦେଖି
ନୂପୁର ବାଜେଣି ଅମୂଲ୍ୟ ଃ ନିର୍ମଳ କଲେ ଚର୍ମ ଆଖି
ଏମନ୍ତ ହୋଇ ଅଳଙ୍କାର ଃ ଅକ୍ଷତ କୃଷ୍ଣ ଶିରେ ଦ୍ୟନ୍ତି
ହସ୍ତେ ଘେନିଲେ ଉପହାର ଃ ଆନନ୍ଦେ କଲ୍ୟାଣ କରନ୍ତି
ଏକ ଆରକେ ଆଗ ହୋଇ ଃ ବୋଲନ୍ତି ଯଶୋଦାକୁ ଚାହିଁ
ମିଳିଲେ ନନ୍ଦ ଘରେ ଯାଇ । ୭-୮ ଃ ଧନ୍ୟ ଜୀବନ ତୋର ଆଈ
ଗୋପୀଏ ନିତ୍ୟକର୍ମ ସାରି ଃ ଆମ୍ଭ ଆୟୁଷ ଘେନିକରି
ଦେହରେ ଅଳଙ୍କାର ଭରି ଃ ତୋ ପୁତ୍ର ରଖୁ ନରହରି
ପିନ୍ଧିଲେ ନାନା ବସ୍ତ୍ରମାନ ଃ ଆମ୍ଭ ଗୋକୁଳ ଏ ରଖିବ
ଆନନ୍ଦେ ମନ ଛନ ଛନ ଃ ଏହାକୁ ରଖ ସଦାଶିବ
ହସ୍ତରେ ଘେନି ଅର୍ଘ୍ୟସ୍ଥାଳୀ ଃ ହଳଦୀ ତେଲ ଘେନି ଥୋକେ
ରଙ୍ଗେ ଚଳିଲେ ଗୋପବାଳୀ ଃ ଲେପନ୍ତି ଏକକୁ ଆରକେ
ଏକ ଆରକେ ଯାନ୍ତି ଜିଣି ଃ କ୍ଷେମଟା ବାଦ୍ୟ କରତାଳ
ଚରଣେ ନୂପୁର ବାଜେଣି ଃ ନାଚନ୍ତି ଆନନ୍ଦେ ଗୁଆଳ
କେହୁ କେଉଁଠି ନ ଚାହାନ୍ତି ଃ ବ୍ରଜପୁରେ ପରମ ମଙ୍ଗଳ
ଗଗନେ ଯେସନ୍ତ ଗ୍ରହପନ୍ତି ଃ ଆନନ୍ଦମାନଙ୍କର ମୂଳ । ୧୨,୧୩
ଚଳନ୍ତି ଶ୍ରବଣେ କୁଣ୍ଡଳ ଃ ଗୋପାଳେ ଏକକୁ ଆରକେ
ନିତମ୍ବ କୁଚ ହେମମାଳ ଃ ସିଞ୍ଚନ୍ତି ଦୁଧ ଦଧି ଥୋକେ
ଆକାଶେ ଦେବେ ଛନ୍ତି ଚାହିଁ ଃ ଲବଣୀ ଘେନି ମରାମରି
ଗୋପୀ ଚଳନ୍ତି ଗୀତ ଗାଇ ଃ ନାଚନ୍ତି ଏକୁ ଆରେ ଧରି । ୧୪
ଯାଚନ୍ତେ ବ୍ରଜେ ମହୀସ୍ଥଳୀ ଃ ଆନନ୍ଦ ହୋଇ ନନ୍ଦରାୟେ
କ୍ଷଣ କ୍ଷଣକେ ହୁଳାହୁଳି ଃ ଭଣ୍ଡାର ଫେଇଲେ ଥୋକାଏ
କବରୀ ଫିଟି ଫୁଲମାଳ ଃ ଅନେକ ଗୋରୁ ବସ୍ତ୍ର ଦାନ
ଯାନ୍ତେ ପଡ଼ଇ ମହୀତଳ ଃ ତୋଷିଲେ ଜଣେ ଜଣେ ମନ ।୧୫,୧୬
ଆନନ୍ଦ କେ ପାରିବ ଲେଖି ଃ ରୋହିଣୀ ନିକଟେ ମିଳିଲେ
ହରିଙ୍କି ଯାଉଛନ୍ତି ଦେଖି । ୯-୧୧ ଃ ଅନେକ ଧନରତ୍ନ ଦେଲେ
ନନ୍ଦର ମନ୍ଦିରେ ମିଳିଲେ ଃ ଗୋପୀଙ୍କୁ କରଣ ହରଷ
ମଙ୍ଗଳ ଘୋଷ ନାଦ କଲେ ଃ ଭୋଜନ ଦେଲେ ଷଡ଼ରସ । ୧୭
ଅନ୍ତଃପୁରଶାଳେ ଯାଇ ମିଳି ଃ ଶ୍ରୀକୃଷ୍ଣ ଜନ୍ମ ମନେ ଗୁଣି
ହାସ୍ୟ କେ କରନ୍ତି ତମାଳି ଃ ଗୋପେ ବ୍ରଜସ୍ଥ କମଳିନୀ

କେ କହୁ ଗୋପର ସମ୍ପଦ
ଯହିଁ ବଳଜୟ ଆନନ୍ଦକନ୍ଦ । ୧୮
ଶୁଣ ହୋ କୁରୁ ନୃପମଣି
ଜନ୍ମ ଉତ୍ସବ ଅନ୍ତେ ପୁଣି
କଂସର ଆଜ୍ଞତଆ ଥିଲା
ନନ୍ଦକୁ କ୍ଷଣେ ନ ଛାଡ଼ିଲା
ଦଇବେ ଆକଟ ଅପାର
ନେବେ ସେ ବରଷକ କର
ଗୋପାଳମାନଙ୍କୁ ବସାଇ
ନନ୍ଦ ବୋଲଇ ଶୋକ ବହି
କଂସ ଆକଟ ମୋତେ କର
ମୁଁ ଆଜ ଯିବ ମଧୁପୁରୀ
ସୁନ୍ଦର ଚନ୍ଦା ତୁମ୍ଭେ କର
କହି ଚଳିଲା ଗୋପବୀର
କଂସର ଛାମୁରେ ମିଳିଲା
ସୁନାଆଁ ଧନ ଗଣି ଦେଲା
ଆନନ୍ଦ ହୋଇ ଦଣ୍ଡଧାରୀ
ଧନ ବସନ ଦେଲା ଶାଢ଼ୀ
ମେଲାଣି ମାଗିଲା ତକ୍ଷଣ
କଣିଲା ନାନା ଦ୍ରବ୍ୟମାନ
ଗୋପ ନଗରେ ଯେତେ ଲୋଡ଼ା
ତାଳ ଜମ୍ବିଲ ଆମ୍ବସଡ଼ା
ମନର ସାନନ୍ଦେ କଣିଲା
ଏମନ୍ତ ରଜନୀ ହୋଇଲା
ଶକଟେ ଭରି ମନ ତୋଷେ
ଏମନ୍ତ ଦିନ ଅବଶେଷେ
ସାରିଲା ରନ୍ଧନ ଭୋଜନ
ନଇତେ ପୁତ୍ର ଚହିଁ ମନ । ୧୯
ନନ୍ଦର ଆଗମନ ଶୁଣି
ବସୁଦେବ ଯେ ମନେ ଗୁଣି

ମିତ୍ର ସ୍ୱଭାବେ ନନ୍ଦ ମୋର
ତା ଘରେ ଅଛି ମୋ କୁମର
ତାର କୁଶଳେ ମୋର ଇଷ୍ଟ
ନ ପୁଣ ଜାଣେ କଂସ ଦୁଷ୍ଟ
ଏମନ୍ତ ମନେ ବିଚାରିଲା
ନନ୍ଦର ନିକଟେ ମିଳିଲା । ୨୦
ମିତ୍ରର ଆଗମନ ଦେଖି
ଉଠିଲା ଆସନ ଉପେକ୍ଷି
ଆନନ୍ଦ ହୋଇ କଲା କୋଳ
ବସିଲେ ଯାଇଁ ଏକମେଳ
ପୂର୍ବର କଥାମାନ କହି
ଏକ ଆରକେ ଭାବ ବହି
ବୋଲଇ ବସୁଦେବ ହସି
ନନ୍ଦ କୁଶଳ ପରଶଂସି
ବୃଦ୍ଧ ବୟସେ ତୋର ସୁତ
ଶୁଣି ହୋଇଲି କୃତ କୃତ
ମନୁଷ୍ୟ ଜନ୍ମର ଏ ସାର
ବୋଲନ୍ତି ସଂସାର ବେଭାର
ଦାର ତନୟ ବନ୍ଧୁଗଣ
ଧନ ସମ୍ପଦ ଏ କାରଣ
ଏତେ ନ ଥିଲେ ଦୁଃଖ ପାଇ
ଉଭୟ ଲୋକେ ସୁଖ ନାହିଁ
ଏ ପୁଣି ନୁହଇନା ସତ୍ୟ
ଦର୍ପଣେ ପ୍ରତିମା ଯେମନ୍ତ
ଶବ୍ଦ ପ୍ରତିମା ପ୍ରାୟେ ତୂଳ
ତେସନେ ସମୁଦ୍ର କଲ୍ଲୋଳ
ଭଲେ ଅଛନ୍ତିନା ଗୋକୁଳ
ତୃଣ ବିରୁଧ କନ୍ଦମୂଳ ?
ଗୋପାଳେ ଅଛନ୍ତ ନା ଭଲେ
ରୋହିଣୀ ନନ୍ଦନର ତୁଲେ ?

ମୋହର ରୋହିଣୀର ସୁତ
ତୁମ୍ଭେ ତାଙ୍କର ପିତା ମାତା
ପିତା ବନ୍ଧୁନେ ଅରକ୍ଷିତ
ତୁମ୍ଭର ପାଳିବା ଉଚିତ
କସ କରିବ ଉପକାର ?
ଏତେ ଅନ୍ତରେ ଗୃହ ମୋର
ଜୀବନ୍ତେ ଏକୁ ଆରେ ସଖା
ମରଣେ ପରଲୋକେ ଦେଖା ।୨୭,୨୮
ଏମନ୍ତେ ମିତ୍ରର ସ୍ୱଭାବ
ଆନନ୍ଦେ କହେ ବସୁଦେବ
ନନ୍ଦ ଯେ ବସୁଦେବ ଗୃହେଁ
ବୋଲଇ ଶୋକଭର ହୋଇ
ହେ ମିତ୍ର ! ବଢ଼ାଇ ବିକଳ
ନୟନୁଁ ବହେ ଅଶ୍ରୁ ଜଳ
ଦେବକୀ କଲ କେତେ ପାପ
ଅଳପ ଦିନେ ଏତେ ତାପ
ପ୍ରସବେ ବରଷେ ବରଷ
ଛ ପୁତ୍ର କଲ କଂସ ନାଶ
ଏବେ ଦୁହିତାଏ ହୋଇଲା
କଂସର ହସ୍ତୁ ଶୂନ୍ୟେ ଗଲା
ଏ କଥା କର୍ମର ଆୟତ୍ତ
ଜଗତ କର୍ମେ ଆତ ଯାତ
ଏହା ଜାଣନ୍ତି ଜ୍ଞାନୀ ଲୋକ
ତେଣୁ ନ ଲାଗେ ଦୁଃଖ ସୁଖ ।୨୯,୩୦
ବୋଲଇ ବସୁଦେବ ଶୋକେ
ଯାହା ଅର୍ଜିଲ ପୂର୍ବଲୋକେ

ଯେ କଥା କର୍ମଟି ମୋହର
ହେ ମିତ୍ର ! ବେଗେ ଯାଅ ଘର
କଂସ ଆଦେଶ ଘେନି ଶିରେ
ଜଗତେ ବୁଲନ୍ତି ଅସୁରେ
ମାରିବେ ଯେତେ ବାଳ ପୁଅ
ହେ ମିତ୍ର ! ଦଣ୍ଡେହେଁ ନ ରହ ।୩୧
କହି ଚଳିଲ ବସୁଦେବ
ନନ୍ଦର ମନ ଉଦବେଗ
ଶୁଣିଣ ମିତ୍ରର ବଚନ
ନନ୍ଦର ମନ ଛନ ଛନ
ଶକଟେ ନାନା ଦ୍ରବ୍ୟ ଭରି
ଚିନ୍ତଇ ପ୍ରଭୁ ନରହରି
ବାଜଇ ଶଙ୍ଖ ଭେରୀତୂରୀ
ନଗରୁଁ ହୋଇଲା ବାହାରି
କୃଷ୍ଣ ଆଦେଶ ଶିରେ ଘେନି
କହିଲେ ଶୁକ ମହାମୁନି
ପଣ୍ଡିତେ ଶୁଣ ହରି-ଲୀଳା
ଏ ଭବ ସାଗରକୁ ଭେଳା
ଏ ନାବେ ବସ ଭ୍ରାନ୍ତି ଛାଡ଼ି
ନ ମର ମୋହାର୍ଣ୍ଣବେ ବୁଡ଼ି
ସମ୍ପଦ ସ୍ୱପ୍ନ ପ୍ରାୟେ ଦୃଶ୍ୟ
ଏଣେ ନ କର ଯେ ବିଶ୍ୱାସ
ନିରତେ ଚିନ୍ତ ନରହରି
ନ ମର ଶୂନ୍ୟ କଳି କରି ।୩୨
ଗୋବିନ୍ଦ ନାମ ଜ୍ଞାନରସ
କହିଲେ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ନନ୍ଦୋତ୍ସବେ
ନାମ ଷଷ୍ଠୋଽଧ୍ୟାୟଃ ।୬।

—୦—

## ସପ୍ତମ ଅଧ୍ୟାୟ

( ମୂଳାନୁସାରେ ୬ଷ୍ଠଅଧ୍ୟାୟ )

ଷଷ୍ଠେ ସଖ୍ୟୁର୍ଗିର ନନ୍ଦୋ ବ୍ରଜଂ ଗଚ୍ଛନ୍ ମୃତାଂ ସ୍ଥି ।
ଦୃଷ୍ଟ୍ବା ତୁ ରାକ୍ଷସୀଂ ତସ୍ୟାଂ ମୃତ୍ୟୁଂଶ୍ଚ ଭ୍ରାଥବସ୍ଥିତ

ସପ୍ତମେ ମିତ୍ର ହୋଇ ମାନ । ବ୍ରଜେ ଗମନ୍ତେ ନନ୍ଦ ପୁଣି ।।
ପୂତନା ମରଣ୍ଟ ଦେଖିଲ । ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଲ ।।

ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ
ନନ୍ଦ ଚଳିଲ୍ ବେଗେ ବେଗେ
ବସୁଦେବର ବୋଲ ଶୁଣି
ମନେ ଚିନ୍ତଇ ଚକ୍ରପାଣି । ୧
କଂସର ଆଦେଶେ ଅସୁରୀ
ପୂତନା ଚଉଦିଗେ ଫେରି
ଗ୍ରାମ ପାଟଣା ଏକ ଏକ
ଅନେକ ମାଇଲା ବାଳକ
ସ୍ତନ ଯୁଗଳେ ବିଷ ଭରି
ପିଆଇ ବାଳକ ସଂହାରି । ୨
ଯହିଁ ବିଜୟ ଆଦିମୂଳ
ଯା ନାମ ପରମ ମଙ୍ଗଳ
କି କରି ପାରିବେ ଅସୁରେ
ଯାହାର ନାମେ ଯମ ଡରେ । ୩
ପୂତନା ବୁଲି ଚଉଦିଗେ
ମିଳିଲା ବୃନ୍ଦାବନ ଲଗେ
ରଜନୀ ହୋଇଲା ପ୍ରଭାତ
ଜାଣିଲେ ପ୍ରଭୁ ଜଗନ୍ନାଥ
ଅନେକ ଶିଶୁ ଏ ମାଇଲା
ମୋହର ମୁହଁଇ ସହିଲା

ଦୁଷ୍ଟ ମାରଣେ ମୋର ଜନ୍ମ
ଅସୁରୀ କଲା ଏଡ଼େ କର୍ମ
ଏମନ୍ତ ହରି ବିଚାରିଲେ
ପୂତନା ମନ ଆକର୍ଷିଲେ
ରାକ୍ଷସୀ ବିଚାରଇ ବସି
ଏହି ନଗରେ ଯିବି ପଶି
ଆକାଶେ ଉଦେ ଦିନକର
ଅସୁରୀ ମାୟାର ଭଣ୍ଡାର
ମାୟା ମୋହିନୀ ରୂପ ଧରି
ତିନି ଭୁବନେ ନାହିଁ ସରି
ରୂପେ କି ପଟାନ୍ତର ଦେବା
ଦେଖି ଛଳିବେ ସୁରଦେବା
କବରୀ ଭରେ ଫୁଲମାଳ
ସୁନ୍ଦର ଅଳକା କପୋଳ
ପୃଥୁ ନିତମ୍ବ କୁଚ ଭାର
ମଧ୍ୟ ସିଂହକୁ ପଟାନ୍ତର
ଝିନ ପଟନୀ ରଙ୍ଗ ବାସ
କଟୀମେଖଳା ରବିଭାସ
କଣ୍ଠେ ଶୋଭିତ ରତ୍ନହାର
ଶିରେ ସୀମନ୍ତ ଦିବ୍ୟ ରୂପ
ଅଳପ କହଇ ବଚନ
ଅଣ୍ଡିର କୋକିଳ ଯେସନ

ହରଲା ଗୋପୀଙ୍କର ମନ ॥
ବାଳ ତରୁଣ ବୃଦ୍ଧ ଜନ ॥
ପଦ୍ମ ଗୋଟିଏ ଘେନ କରେ ॥
ଅସୁରୀ ଚଳଇ ସଧୀରେ ॥
ପୂତନା ରୂପ ଜନେ ଦେଖି ॥
ପିଛୁଡ଼ି ନ ପାରନ୍ତି ଆଖି ॥
ଗୋଡ଼ାଇ ବୋଲନ୍ତି ଯୁବତୀ ॥
କପାଁ ତେଜିଲା ଏହା ପତି ॥
ଏମନ୍ତ ଦେଖିଲୁ ତ ନାହିଁ ॥
କେ ବୋଲେ ଅମ୍ବିକା ଅଟଇ ॥
କେ ବୋଲେ ଶୁଣ ମୋ ଉତ୍ତର ॥
କୃଷ୍ଣ ଜନ୍ମିଲେ ଗୋପପୁର ॥
କମଳା ଆସିଛନ୍ତି ଦେଖି ॥
ଜଳଧି ଶୟନ ଉପେକ୍ଷି ॥
କେ ବୋଲେ ଅଟଇ ଏମନ୍ତ ॥
ପୁରାଣେ ଶୁଣିଛୁଁ ତଦନ୍ତ । ୪-୭ ॥
ଏମନ୍ତେ ଜାଣି ନ ପାରିଲେ ॥
ସମସ୍ତେ ପଛେ ଗୋଡ଼ାଇଲେ ॥
ପୂତନା ବୋଲଇ ମଧୁର ॥
ବାଳକ ଅଛି କାହା ଘର ॥
ମୋର ବାଳକ ଏବେ ମଲା ॥
ସ୍ତନ ମୋ ନୁହଇ ସହିଲା ॥
କାହାର ପୁତ୍ର ଅଛି ମାଏ ॥
ସ୍ତନ ପିଆଇବି ଥୋକାଏ ॥
ଅସୁରୀ ଚଳଇ ସଧୀରେ ॥
ମିଳିଲା ଯାଇଁ ନନ୍ଦ ଘରେ ॥
ଗୋପୀଏ ଗଲେ ଅପସରି ॥
ଭିତରେ ପଶିଲା ଅସୁରୀ ॥
ଯଶୋଦା ହୋଇଲେ ଉଷତ ॥
ପୁତ୍ର ମୋ ହେବ ବଳବନ୍ତ ॥

ଏ ମୋର ଘରେ ଯେବେ ଥାଇ
ନିରତେ ପୁତ୍ରେ କ୍ଷୀର ଦେଇ
ନନ୍ଦର ଗ୍ରାମୁରେ କହିବ
ଅନେକ ଧନ ରତ୍ନ ଦେବ
ଯଶୋଦା ଏମନ୍ତ ବଚନ
ପୂତନା ଗୃହିଲା ମୂରତି
ବାଳକ ସ୍ୱଭାବେ ଅନନ୍ତ
ନିଦ୍ରାରେ ଦିଶନ୍ତି ଅଚେତ । ୭
ଯଶୋଦା ଘେନ ବନମାଳୀ
ପୂତନା କୋଳେ ଦେଲେ ତୋଳି
କୃଷ୍ଣର ନ ଜାଣଇ ବଳ
ଆକର୍ଷିକଲା ନେଇ କୋଳ
କୃଷ୍ଣର ମୁଖେ ଦେଲା ସ୍ତନ
ଗାଢ଼େ ଶୋଷିଲେ ଭଗବାନ
ପଞ୍ଚ ପବନ କ୍ଷୀର ସଙ୍ଗେ
ପଶିଲା ଗୋବିନ୍ଦର ଅଙ୍ଗେ
ଜୀବ ଗୁଡ଼ିଲା ଗଣ୍ଡି ଛନ୍ଦ
ଅସୁରୀ କଲା ଘୋର ନାଦ
ନିଜ ଶରୀର ପ୍ରକାଶିଲା
ଛାଡ଼ ଛାଡ଼ ବୋଲି ଡାକିଲା
ଶବଦେ କମ୍ପଇ ବ୍ରହ୍ମାଣ୍ଡ
ମାଡ଼ି ପଡ଼ିଲା ଭୂମିଖଣ୍ଡ
କର ଚରଣ ପ୍ରସାରିଲା
ବେନିଯୋଜନ ଆବୋରିଲା
ବୃକ୍ଷ ମନ୍ଦିର ଗୋରୁ ଘର
ଭଗ୍ନ ହୋଇଲା ସବୁ ଚୂର । ୮-୧୪
ମୁନି କହନ୍ତି ଶୁଣ ରାଜେ
କେ କହୁ ଅସୁରୀର କାୟେ
ଲଙ୍ଗଳ ଈଷ ପ୍ରାୟେ ଦନ୍ତେ
ନାସିକା ଗୁହା କି ପର୍ବତେ

ଖଣ୍ଡ ପର୍ବତ ସ୍ତନ ବେନି
ଖାଙ୍କର କେଶ ତା ମୂର୍ଦ୍ଧନି
ପିଙ୍ଗଳ ଚକ୍ଷୁର ସ୍ୱରୂପ
ଯେହ୍ନେ ଖୋଳିଲା ଅନ୍ଧକୂପ
ନସାର ଛିଦ୍ର ଯେହ୍ନେ କନ୍ଦ
ଭୁଜ ଦିଶଇ ସେତୁବନ୍ଧ
ଶୁଖିଲା ହ୍ରଦ କି ଉଦର
ଦେଖି କମ୍ପିଲେ ସୁର ନର
ଗୋପରେ ପଡ଼ିଲାକ ହୁରି
ଭୟେ ପଳାନ୍ତି ନର ନାରୀ
ପଡ଼ି ଭାଜିଲା କାହା ମୁଣ୍ଡ
କାହାର ଦେହ ଖଣ୍ଡ ଖଣ୍ଡ । ୧୫-୧୭
ଦେଖି ଚକିତ ନନ୍ଦରାଣୀ
ଭୟେ ଛନ୍ଦଇ ଚକ୍ରପାଣି
ଘଡ଼ିକେ ହୋଇଲା ସଚେତ
ଉଠେ ଲୋଡ଼ଇ ନିଜସୁତ
ଗୋପୀଙ୍କି ବୋଲଇ ଉତ୍ତର
କେ ଘେନି ଅଛ ମୋ କୁମର ?
ବହନ ଆଣ ପୁତ୍ର ପାଇଁ
ମରିବ ତା ମୁଖ ନ ଚାହିଁ
ଦେଖିଣ ଯଶୋଦା ବିକଳ
ଗୋପୀ ଧାଆନ୍ତି ଅନ୍ତରାଳ
ଭୟେ ଖୋଜନ୍ତି ଘର ଦ୍ୱାର
ଦେଖିଲେ ପୂତନା ଉପର
ବେନି ପର୍ବତ ମଧ୍ୟେ ରହି
ଯେମନ୍ତ ଶଶାଙ୍କ ଦିଶଇ
ପୂତନା ସ୍ତନ ମଧ୍ୟେ ହରି
ଗୋପୀଏ ଯାଇଁ କୋଳ କରି
ପୁତ୍ରକୁ ଦେଖିଣ ନୟନେ
ଆନନ୍ଦ ଯଶୋଦାର ମନେ

କୋଳ କରିଣ ଚୁମ୍ବ ଦେଇ
ଘରେ ପଶିଲେ ଘେନି ଯାଇଁ
ରୋହିଣୀ ଦେଖିଣ ହରଷ
ଲୋକେ ହୋଇଲେ କୃତ କୃତ
ଗୋପୀ ମିଳିଲେ ବେଗ ପାଇଁ
ବୋଲନ୍ତି ଯଶୋଦାକୁ ଚାହିଁ
ଆପଦୁଁ ତରିଲା କୁମର
ତୁ ଏବେ ରିଷ୍ଟ ଶାନ୍ତି କର
ଶୁଣି ସାନନ୍ଦ ନନ୍ଦରାଣୀ
ପୁତ୍ରକୁ ଘେନିଲା ରୋହିଣୀ
ବେଢ଼ି ବସିଲେ ଗୋପନାରୀ
ଯେତେ ଯଶୋଦା ପରିବାରୀ
ବତ୍ସା ଗୋଟିଏ ଆଣି କରି
ତା ଲାଞ୍ଜେ ପୁତ୍ର ଦେହଝାଡ଼ି ।୧୮,୧୯
ଗୋମୂତ୍ରେ କରାଇ ସ୍ନାହାନ
ଗୋରଜ କରନ୍ତି ଲେପନ
ଗୋମୟେ ଦେଲେ ଠିଆ ଚିତା
ଯେ ପ୍ରଭୁ ଗୋ ବ୍ରାହ୍ମଣହିତା
ହସ୍ତରେ ଦୁର୍ବାଙ୍କୁର ଘେନି
କଲ୍ୟାଣ କରନ୍ତି କାମିନୀ
ଦ୍ୱାଦଶ ଅଙ୍ଗନ୍ୟାସ କରି
ଗୋପୀ ବୋଲନ୍ତି ନାମ ଧରି ।୨୦।
ଯାହାର ନାହିଁ ଆଦ୍ୟ ଅନ୍ତ
ଚରଣ ରଖୁ ସେ ଅନନ୍ତ
ଯଜ୍ଞଠାକୁର ଶିଖରଙ୍ଗ
ରକ୍ଷା କରନ୍ତୁ ବେନି ଜଙ୍ଘ
ଅଚ୍ୟୁତ ରଖୁ କଟୀଭାଗ
ଗର୍ଭ ରଖନ୍ତୁ ପଦ୍ମନାଭ
ଉଦର ରଖୁ ହୟଗ୍ରୀବ
ହୃଦୟ ରଖନ୍ତୁ କେଶବ

ବସ୍ତ୍ର ତୋ ରଖ ବେନି ଭୁଜ
ବକ୍ଷ ତୋ ରଖୁ ଗ୍ରହରାଜ
ଲଲାଟ ରଖ ସଦାଶିବ
ମୁଖ ତୋ ରଖନ୍ତୁ ମାଧବ ।୨୧-୨୨
ତୋର ଅଗ୍ରତେ ଚକ୍ରଧର
ପୃଷ୍ଠ ଆସିବାରୁ ଗଦାଧର
ଶାରଙ୍ଗଧର ଏକ ପାଖ
ଖଡ୍ଗଧର ଆର ପାଖ
ଶଙ୍ଖ ତୋ ରଖୁ ଗୃହ କୋଣ
ଉପରେ ରଖୁ ନାରାୟଣ
ଗରୁଡ଼ପତ୍ତ ରଖୁ ତଳେ
ହଳୀ ରଖନ୍ତୁ ଅନ୍ତରାଳେ
ହୃଷୀକେଶ ସେ ଇନ୍ଦ୍ରିଗଣ
ରଖୁ ଗୋବିନ୍ଦ ପଞ୍ଚପ୍ରାଣ
ଚିତ୍ତ ତୋ ଶ୍ୱେତଦ୍ୱୀପପତି
ମାଧବ ରଖୁ ତୋର ମତି
ଖେଳନ୍ତେ ରଖୁ ବନମାଳୀ
ଶୟନେ କୃଷ୍ଣ ପ୍ରତିପାଳି
ଚଳନ୍ତେ ଭୋଜନେ ଶୟନେ
ରଖନ୍ତୁ ଶ୍ରୀମଧୁସୂଦନେ ।   ୨୩-୨୫
ଭୂତ ବେତାଳ ପ୍ରେତ ଜ୍ୱର
ଗ୍ରହ ଡାକିନୀ ନିଶାଚର
ଦୁଷ୍ଟ ସ୍ୱପନ ଗ୍ରହପୀଡ଼ା
ବସ୍ତୁ ନାଶିବେ ସର୍ବ*ଅଡ଼ା
ନିର୍ଭୟ କରୁ ନରସିଂହ †
ବଜ୍ର ତୋ ହେଉ ସର୍ବଅଙ୍ଗ
ଆମ୍ଭ ଆୟୁଷ ତୋତେ ହେଉ
ତୋ ଯଶ ତିନପୁରେ ଥାଉ

ନ ଥାଉ ତୋତେ କେ ଜିଣନ୍ତା
ତିନି ଭୁବନେ ସମରଥା ।  ୨୬-୨୯
ଏମନ୍ତେ ସ୍ନେହଭର ହୋଇ
ଯଶୋଦା କୋଳେ ଦେଲେ ନେଇ
ସ୍ତନ ପିଆଇ ନନ୍ଦରାଣୀ
ଭଟପୂ ଚନ୍ତଇ ଚକ୍ରପାଣି
ନନ୍ଦ ଯେ ଥିଲେ ମଧୁବନେ
ଆସି ମିଳିଲେ ବ୍ରଜମାନେ
ଦେଖିଣ ପୂତନା ଶରୀର
ନନ୍ଦ କମ୍ପଇ ଥରହର
ମିତ୍ର ବଚନ ମନେ ଗୁଣି
ସୁମର ବୋଲେ ପରମାଣି
ଗୋପାଳମାନଙ୍କୁ ରାଇଲ
ଦହନ କରଅ ବୋଇଲା
ତକ୍ଷଣେ କରି ଖଣ୍ଡ ଖଣ୍ଡ
ଦହିଲେ ପୂତନାର ପିଣ୍ଡ
ଅନଳେ ଦହନ୍ତେ ଅସ୍ଥିରୀ
ଗନ୍ଧ ପ୍ରସରଇ କସ୍ତୁରୀ
ଆନନ୍ଦ ହୋଇଣ ବ୍ରଜଳେ
ଗନ୍ଧ ଆମୋଦେ ବ୍ରଜ-ପୁରେ
ହରି ଭକ୍ଷିଲେ ଯାହା କ୍ଷୀର
ସୁଗନ୍ଧ କେତେକ ମାତର । ୩୦-୩୪
ଅଷ୍ଟାଙ୍ଗ ଯୋଗେ ମୁନି ଗଣେ
ଚିନ୍ତନ୍ତି ଯେ ହରି ଚରଣେ;
କ୍ଷୀର ସଙ୍ଗତେ ପଞ୍ଚପ୍ରାଣ
ସେ ହରି ଦେହେ ହେଲା ଲୀନ
ପାମରୀ ସ୍ୱଭାବେ ଅସୁରୀ
ଅନେକ ଥିଲା ପାପ କରି

* ଅଡ଼ା = ଅନିଷ୍ଟ ।   † ଉଚ୍ଚାରଣ " ନରସିଙ୍ଘ "

ହତ୍ୟା କହିବା ତାର କେତେ
ଦେହରେ ଲୋମ ଅଛି ଯେତେ
ହରିଙ୍କି କୋଳେ ବସାଇଲ
ଶ୍ରୀମୁଖ ଗୃହିଁ କ୍ଷୀର ଦେଲ
ନନ୍ଦ ଦେବକୀ ଯଶୋବନ୍ତୀ
ବସୁଦେବର ଯେଉଁ ଗତି
ତହିଁକି ପେଷିଲେ ମୁରାରି
ପୂତନା ଗଲା ଅପସରି । ୩୫-୩୬
ଗୋପରେ କେତେ ଗୋପୀ ଗୋଈ
ଯାହାଙ୍କ କ୍ଷୀର କୃଷ୍ଣ ଖାଇ
ବସିଲେ ଯେତେ ଜନ କୋଳେ
ସବୁତରିବେ ଏକାବେଳେ ।୩୭-୪୦
ଅସୁର ଦହନ କରାଇ
ଘରେ ମିଳିଲେ ନନ୍ଦ ଯାଇଁ
ପୂତନା ଆଗମନ ଲୋକେ
କହିଲେ ନନ୍ଦ ଆଗେ ଥୋକେ
ଶୁଣି ବିସ୍ମୟ ଗୋପେ ହେଲେ
ସକଳେ କୃଷ୍ଣ ସ୍ମରିଲେ
ବୋଲନ୍ତି ନନ୍ଦ ଭାଗ୍ୟବନ୍ତ
ଆପଦୁଁ ତରିଲା ବାଳୁତ
ଆମ୍ଭର ଅଛି ପୁଣ୍ୟ ବଳ
ଗୋବିନ୍ଦରଖିବେଗୋକୁଳ।୪୧-୪୨
ନିଜ ମନ୍ଦିରେ ନନ୍ଦ ମିଳି
କୋଳେ ବସାଇ ବନମାଳୀ
କୃଷ୍ଣର ଶିରେ ଦେଇ କର
ଚୁମ୍ବନ ଦେଲେକ ଅପାର
ବିପ୍ର ଅଣାଇ ଗ୍ରହଶାନ୍ତି
କରାଇ ଚିନ୍ତଇ ଶ୍ରୀପତି
ନନ୍ଦର ଆଜ୍ଞାଏ ବ୍ରାହ୍ମଣେ
କରନ୍ତି ଶାନ୍ତି ଗ୍ରହଗଣେ
ଯଜ୍ଞ ଉଚିତ ପ୍ରାୟଶ୍ଚିତ୍ତ
କରାଇ ଚିନ୍ତଇ ଅଚ୍ୟୁତ
ସହସ୍ରେ ଧେନୁ ବିପ୍ରେ ଦେଲେ
ସୁବର୍ଣ୍ଣ ଅଳଙ୍କାର ଭୁଲେ
ପ୍ରସନ୍ନ ହୋଇ ବିପ୍ରଗଣ
କୃଷ୍ଣଙ୍କୁ କରନ୍ତି କଲ୍ୟାଣ
ସକଳ କଷ୍ଟରୁ ଅଚ୍ୟୁତ
ତୋତେ ସେ କରନ୍ତୁ ମୁକୁତ
ଶ୍ଲାଘି ଭୋଜନ ଦେଲେ ନନ୍ଦ
କଷ୍ଟ ଖଣ୍ଡିବେ ଆନନ୍ଦକନ୍ଦ । ୪୩
ଆନନ୍ଦେ ହୋଇ କୃତ କୃତ
କହନ୍ତି ବ୍ୟାସଙ୍କର ସୁତ
ଯେ ଶୁଣେ କୃଷ୍ଣ ବାଳକେଳି
ଆନନ୍ଦ ହୋଇ ମନେ ଭଳି
ପୂତନା ମରଣର ବାଣୀ
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ
ଅସୁର ତରିଲା ଯେମନ୍ତେ
ସୁଜନେ ଯିବେ ସେହି ପଥେ
ଭକତି କର ଦୃଢ଼ଚିତ୍ତେ
ହରି ଭକତଙ୍କର ପଥେ
ଗୀତ ବିନୋଦ ଭାଗବତ
କହିଲା ଦାସ ଜଗନ୍ନାଥ ।।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ପୂତନା ମୋକ୍ଷୋ
ନାମ ସପ୍ତମୋଽଧ୍ୟାୟଃ ।୭।

—୦—

# ଅଷ୍ଟମ ଅଧ୍ୟାୟ

( ମୂଳାନୁସାରେ ସପ୍ତମ ଅଧ୍ୟାୟ )

ଉତ୍କ୍ଷିପନ୍ ଶକଟଂ ବ୍ୟୋମ୍ନି ତୃଣାବର୍ତ୍ତମଧଃ କ୍ଷିପନ୍ ।
ଦର୍ଶୟନ୍ ବିଶ୍ୱମାସ୍ୟେ ଚ କୃଷ୍ଣଃ କ୍ରୀଡ଼ତି ସପ୍ତମେ । ୦ ।

ମାରି ଶକଟା ତୃଣାବର୍ତ୍ତ । ମୁଖେ ଦେଖାଇଣ ଜଗତ
ଗୋକୁଳେ କ୍ରୀଡ଼ନ୍ତି ଶ୍ରୀଧର । ଅଷ୍ଟମେ ବାଳଲୀଳା କରି । |

ରାଜୋବାଚ

ନମସ୍ତେ କୃଷ୍ଣ ପଦ୍ମପାଦ
ମୋର ଜୀବନ ଯେ ସମ୍ପଦ
ପରୀକ୍ଷିତ-ଶୁକମୁଖ ଚାହିଁ
ବୋଲଇ କୃତକୃତ୍ୟ ହୋଇ
ଗୋପ ନଗରେ ନରହରି
ମାରିଲେ ପୂତନା ଅସୁରୀ
ଦେବଙ୍କ ଭୟ ନିବାରିଲେ
ନିଜ ଶରୀରେ ଠାବ ଦେଲେ
ଯାହାର ନାହିଁ ମିତ୍ର ଅରି
ଗୁଣାତ୍ମ ବ୍ରହ୍ମ ମାଏ ଜରି
ସାଧୁଙ୍କ ପାଳି ଦୁଷ୍ଟ ନାଶି
ଦୟାସାଗର ବ୍ରହ୍ମରାଶି
ତାହାଙ୍କ ଯେତେ କର୍ମମାନ
ବାଳକ ଚରିତ ବିଧାନ
ଶୁଣି ଭଜନ୍ତି ଯେତେ ପ୍ରାଣୀ
ତରନ୍ତି ଭବତରଙ୍ଗିଣୀ
ମାୟା ମନୁଷ୍ୟ ଅବତାର
ଖଣ୍ଡିବେ ଅବନୀର ଭାର
ଆବର କହେ ଗୋପେ ଯାହା
କହିବା ଯେବେ ମୋତେ ଦୟା । ୧ - ୩

ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର
ରାଜନ ଶୁଣ ରସଭର
ଶୁଣ କହିବା ହରିକଥା
ଯେଣେ ଗୁଞ୍ଜିବ ଭବ-ବ୍ୟଥା
ଅନୁଡ଼ି ଉଠିଆରି ଦିନେ
ଆସି ମିଳିଲେ ଗୋପୀଜନେ
ମଙ୍ଗଳ ବାଦ୍ୟନାଦ କରି
ସ୍ନାହାନ୍ତ କରାଇ ମୁରାରି
ବ୍ରାହ୍ମଣୀ ମିଳିଲେ ଥୋକାଏ
ଆଶିଷ ଦେଲେ-ମାଏ ପୋଏ
ଆନନ୍ଦ ମନେ ନନ୍ଦରାୟେ
ଧନ ବସନ ଦାନ ଦିଏ
ଗୋପୀ ଆନନ୍ଦ ଗୀତସ୍ୱର
ନିଦ୍ରାମୋହିତ ଚକ୍ରଧର
ଶକଟତଳେ ବସ୍ତ୍ର ପାଡ଼ି
ଯଶୋଦା ଶୁଆଇ ମୁରାରି
ନିଦ୍ରା କରାଇ ଗୀତଗାଇ
ଗୋପୀଙ୍କି ଦେଲେକ ବଧାଇ
ଅକ୍ଷତ ଦେଲେ ଜଣେ ଜଣ
ପୁତ୍ରକୁ କରନ୍ତି କଲ୍ୟାଣ

ନିଦ୍ରା ଭଜନ୍ତେ ନାରାୟଣ
କାନ୍ଦି ଲୋଡନ୍ତି ମାତା ସ୍ତନ
ଗୋଳେ ନ ଶୁଣଇ ଗୁଆଳୀ
କୃଷ୍ଣ କାନ୍ଦନ୍ତି ପାଦ ଟେକି
ଶକଟେ ବାଜିଲା ପୟର
ଶବଦ କଲା ମହାଘୋର
ଶକଟ ପଡ଼ିଲାକ ଟଙ୍କି
ଦେଖିଚକିତ ଗୋପବାଳୀ
ଦଧି ତଇଳ ଘୃତ ଭାଣ୍ଡ
ଭାଜି ହୋଇଲା ଖଣ୍ଡ ଖଣ୍ଡ । ୪,୭
ଶବଦ ଶୁଣି ଗୋପୀ ଧାଇଁ
ମିଳିଲେ ନନ୍ଦ ଆଦି ଯାଇଁ
ଦେଖିଲେ ଯଶୋଦାକୁମର
ପଡ଼ିଛି ଶକଟ ଭିତର
ଆଣି ପୁତ୍ରକୁ କୋଳ କଲେ
ଏକକୁ ଆରେକ କହିଲେ
ଏ କି ଆପଦ କାହୁଁ ହୋଇ ?
ଏମନ୍ତ ଦେଖିଲୁ ତ ନାହିଁ!
ଶକଟ ଭାଜିଲା କେମନ୍ତ
ବୁଝ ହୋ ଏହାର ଚଦନ୍ତ
ଯଶୋଦା ଦେବୀ ଭାଗ୍ୟବନ୍ତି
ଭଲା ନ ମଲା ତାର ସୁତ
ଶକଟ ଭାଜିଲା କେମନ୍ତେ
ଜାଣିଲେ ଯିବା ନା ପରତେ
ବାଳ କୁମରେ ତାହା ଶୁଣି
ବୋଲନ୍ତି ଆମ୍ଭେ ଅଛୁ ଜାଣି
ଯଶୋଦାସୁତ-ପାଦ ଘାତେ
ଶକଟ ଭାଜିଲା ସୁକତେ
ଶୁଣି ହସିଲେ ବାଳ ବୋଲ
କୃଷ୍ଣର ନ ଜାଣନ୍ତି ବଳ ୮-୧୦

ରୋଦନ କରନ୍ତେ ମୁରାରି
ଯଶୋଦାକୋଳେ ଦେଲେ ନାରୀ
ଗ୍ରହ ଶଙ୍କିତେ କଲେ ଭ୍ରାନ୍ତ
ବିପ୍ରଙ୍କୁ ଆଣି ଗ୍ରହଶାନ୍ତ
କରାଇ ପିଆଇଲେ ସ୍ତନ
ଆନନ୍ଦ ଯଶୋଦାର ମନ
ଆନ ଶକଟ ଭି ଆଇଲେ
ଦ୍ରବ୍ୟମାନଙ୍କୁ ସଜାଡ଼ିଲେ
ବ୍ରାହ୍ମଣ କଲେ ପଞ୍ଚାମୃତ
ଦେଖିଣ ନନ୍ଦ କୃଷ୍ଣକୃତ
ହରଷ ହୋଇ ଦେଲା ଦାନ
ଧେନୁ କାଞ୍ଚନ ବସ୍ତ୍ର ଅନ୍ନ
ସନ୍ତୋଷ ହୋଇ ବିପ୍ରଗଣେ
କଲ୍ୟାଣ କଲେ ତୋଷମନେ
ଯାହା ବୋଲନ୍ତି ସିଦ୍ଧ ଜନେ
ଅନ୍ୟଥା ନୁହଇ ବଚନେ । ୧୧-୧୭
କହନ୍ତି ବ୍ୟାସଙ୍କ ନନ୍ଦନ
ଏମନ୍ତେ ଗଲା କେତେ ଦିନ
କଂସର ଆଜ୍ଞାରେ ଦଇତ
ଗୋପେ ମିଳିଲା ତୃଣାବର୍ତ୍ତ
ତାହା ଜାଣିଲେ ଦଇତ୍ୟାରି
ଯଶୋଦା କୋଳେ ଛନ୍ତି ଧରି
ବସ୍ତୁର କଲେ ଚକ୍ରଧର
ଆଜ ଧଂସ ହେବ ଅସୁର
ଜନନୀ କୋଳେ ହେଲେ ଗରୁ
ଯେସନ୍ତେ ଅଚଳ ମହାମେରୁ
ତକ୍ଷଣେ ଥୋଇଲା ଅବନୀ
ବସ୍ତୁର କଲା ଭୟ ଘେନି
ବାଳୁତ ପୁଅ ଗରୁପଣ
ନ ପୁଣି ପଡ଼ଇ କଷଣ

ଚଳେ ଶୁଆଇ ଗଲା ଘର
କରଇ ବ୍ୟାପାର ଲୋକଘର ।୧୮,୧୯
କଂସର ଆଜ୍ଞା ପରମାଣେ
ଅସୁର ମିଳିଲା ତୃଷଣେ
ଗଗନେ ଘୋର ନାଦ କରି
ଚକ୍ରପବନ ରୂପ ଧରି
ଦିବସ କଲା ଅନ୍ଧକାର
ଭୂମି କମ୍ପଇ ଥରହର
ବୃକ୍ଷେ ପଡ଼ିଲେ ମହୀତଳେ
ରେଣୁ ଉଡ଼ିଲେ ଅନ୍ତରାଳେ
ଚାହିଁ ନ ପାରି ବେନି ଘଡ଼ି
ଚକ୍ଷୁ ବୁଜିଲେ ନରନାରୀ
ଚକ୍ରପବନ ଗଲା ଉଡ଼ି
ଦୈତ୍ୟ କୃଷ୍ଣଙ୍କୁ ନେଲା ହରି
ପ୍ରକାଶେ ରବିର କିରଣ
ନିର୍ମଳ ଦିଶନ୍ତେ ଗଗନ
ଘର ବାହାରେ ନନ୍ଦରାଣୀ
ପୁତ୍ରଙ୍କୁ ଲୋଡ଼ଇ ଧରଣୀ
କୃଷ୍ଣେ ନ ଦେଖି ହୁଆ କୋଡ଼ି
ଧାମଇଁ ପୁଣ ପୁଣ ଲୋଡ଼ି
ଘର ବାହାର ପୁର ଲଗେ
ସକଳେ ଲୋଡ଼େ ଚଉଦିଗେ
ଖୋଜ ନ ପାଇ ବନମାଳୀ
ତା ଶୁଣି ମିଳିଲେ ଗୁଆଳୀ
ଖୋଜନ୍ତି ଘରେ ଘରେ ପଶି
କାହିଁ ପାଇବେ ବ୍ରହ୍ମରାଶି ?
ନ ଦେଖି ପ୍ରଭୁ ଚକ୍ରପାଣି
ମୋହେ ପଡ଼ିଲା ନନ୍ଦରାଣୀ
ଗୋପୀ ଧାଇଲେ ବେଗେ ଯାଇଁ
ସିଞ୍ଚନ୍ତି ମୁଖେ ଝର ଦେଇ

ଘଡ଼ିକେ ହୋଇଲେ ସଚେତ
ଉଠି ଲୋଡ଼ଇ ନିଜ ସୁତ
କେଶ ବସନ ଅସମ୍ଭାଳ
ପଡ଼େ ଗୋପୀଙ୍କ ପାଦତଳ
କେ କହୁ ଯଶୋଦାର ଶୋକ
ଗୋପୀଙ୍କି ଚାହିଁଣ ନିରେଖି
ସକଳେ ପଡ଼ଇ ଧରଣୀ
ଗୋପୀ କାନ୍ଦନ୍ତି ତାହା ଶୁଣି
ସକଳ କେ କରିବ ଅନ୍ତ
ଗୋପୀହୋଇଲେମୋହଗତ ।୨୦,୨୫
ତାହା ଜାଣିଲେ ଗୋପୀନାଥ
ଆକାଶେ ନେଉଛି ଦଇତ
କୃଷ୍ଣ ଚିନ୍ତନ୍ତି ହୃଦଗତେ
ଅସୁର ମାରିବ କେମନ୍ତେ
ସଗୁରୁ କଲେ ଦିବ୍ୟଚିତ୍ତେ
ଏତ ନେଉଛି ଶୂନ୍ୟ ପଥେ
ଦାସବତ୍ସଳ ନନ୍ଦବାଳା
ରୁନ୍ଧିଲେ ଦାନବର ଗଳା
କଣ୍ଠେ ଲମ୍ବିଲେ ବନମାଳୀ
ଅସୁର ନ ପାରିଲା ଟଳି
ବ୍ରହ୍ମାଣ୍ଡ କୋଟି କୋଟି ମାଳେ
ବସନ୍ତି ଯାର ରୋମ ମୂଳେ
ଅସୁର ତୁଳିବ ତା କାହିଁ
ଭାଳଇ ଚଉଦିଗ ଚାହିଁ
ବାଳୁତ ପୁଅ ଏଡ଼େ ଗରୁ
ପକାଇ ଦେବ ପଡ଼ି ମରୁ
ଧରଣି କୃଷ୍ଣ ବାମ ହସ୍ତ
ତା କଣ୍ଠ ଚିପିଲେ ତୁରିତେ
ବେନି ଲୋଚନ ଗଲା ଫୁଟି
ପ୍ରାଣ ଛୁଡ଼ିଲା ତାକୁ ଫିଟି

ଶବଦ କଲା ମହା ଘୋର
ଶୁଣି କମ୍ପିଲେ ବ୍ରଜ ପୁର
ଅସୁର ଘେନି କୃଷ୍ଣ କରେ
ପଡ଼ିଲେ ଶିଳାର ଉପରେ
ଅସୁର ଦେହ ହେଲା ଚୂର
ଗୋପୀ ଦେଖିଲେ ମାୟାଧର
ଯମର ଘରୁ ଯେହ୍ନେ ଆସି
କୋଳ କରନ୍ତି ଗୋପୀ ହସି
ଶିଳାରୁ ଘେନି ବନମାଳୀ
ଯଶୋଦା କୋଳେ ଦେଲେ ତୋଳି
ଗୋପୀ ଗୋପାଳ ଆଦି ନନ୍ଦ
ପୁତ୍ରକୁ ପାଇଣ ଆନନ୍ଦ । ୨୬-୩୨
ଗୋପାଳେ ନନ୍ଦଙ୍କୁ ଅନାଇଁ
ବୋଲନ୍ତି ଭାଗ୍ୟବନ୍ତ ତୁହି
କାଳର ମୁଖୁଁ ଉବୁରିଲା
ପୁତ୍ରକୁ ଗୋବିନ୍ଦ ରଖିଲା
ଶୀତଳ ଯଶୋଦା ଉଦର
ଆପଦୁଁ ତରିଲା କୁମର । ୩୩
ଅବସ୍ଥା ଦେଖି ନନ୍ଦ ମନେ
ମାନଇଁ ମିତ୍ର ବଚନେ । ୩୪

ଅନେକ ପୁତ୍ର କୋଳେ ଘେନି
କ୍ଷୀର ପିଆନ୍ତେ ନନ୍ଦରାଣୀ
କୃଷ୍ଣ ବଦନେ ଉଠେ ହାଇ
ଯଶୋଦା ତୁଣ୍ଡେ ଦେଲା ଚାହିଁ ।୩୫,୩୬
ଦେଖଇ ଦର୍ପଣର ପ୍ରାୟେ
ବ୍ରହ୍ମାଣ୍ଡ ଅଶେଷ କୃଷ୍ଣ ଦେହେ
ଆକାଶ ଆଦି ଦିଗପାଳେ
ଗ୍ରହ ନକ୍ଷତ୍ର ମେଘମାଳେ
ସପତ ସିନ୍ଧୁ ଆଦି କରି
ନଦୀ କାନନ ଅଗ ଗିରି
ସ୍ଥାବର ଆଦି ସର୍ବ ଜନ୍ତୁ
ବିଶ୍ୱ ସଂସାର ଯେତେ ହେତୁ । ୩୭
ଦେଖି ଚକିତ ମନେ ରହି
ହୃଦେ ଚିନ୍ତଇ ଭାବଗ୍ରାହୀ
ସନ୍ତୋଷେ କୋଳେ ପୁତ୍ର ଘେନି
ଘରେ ପଶିଲା ନନ୍ଦରାଣୀ
ଆନନ୍ଦ କେ ପାରିବ କହି
ଯାହାର ପୁତ୍ର ଭାବଗ୍ରାହୀ । ୩୮
ନିଦ୍ରା କରାଇ ହୃଷୀକେଶ
କହିଲା ଜଗନ୍ନାଥ ଦାସ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ତୃଣାବର୍ତ୍ତ
ମୋକ୍ଷୋ ନାମ ଅଷ୍ଟମୋଽଧ୍ୟାୟଃ । ୮ ।

—ଃ*ଃ—

## ନବମ ଅଧ୍ୟାୟ

( ମୂଳାନୁସାରେ ଅଷ୍ଟମ ଅଧ୍ୟାୟ )

ଅଷ୍ଟମେ ନାମ କର୍ମାସ୍ୟ ବାଲକ୍ରୀଡ଼ା କୁତୂହଳେ ।
ମୃଦ୍ ଭକ୍ଷଣାଭିଯୋଗେ ଚ ବିଶ୍ୱରୂପଂ ନିରୂପ୍ୟତେ ॥

ମାଟି ଭକ୍ଷଣେ କୃଷ୍ଣମୁଖେ । ବିଶ୍ୱବ୍ରହ୍ମାଣ୍ଡ ମାତା ଦେଖେ ॥
ନାମକରଣ କଲେ ମୁନି । ନବମ ଅଧ୍ୟାୟେ ବଖାଣି । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର
ଶୁଣ ଅଭିମନ୍ୟୁ-କୁମର
ଗର୍ଗ ନାମରେ ମୁନି ଖ୍ୟାତ
ଯଦୁବଂଶରେ ପୁରୋହିତ
ଧାର୍ମିକ ପଣେ ସମ ନାହିଁ
ଆଣିଲ୍ଲ ବସୁଦେବ ଯାଇ
ବସାଇ ପୂଜିଲ୍ଲ ପ୍ରଚୁର
ଏକାନ୍ତେ ବୋଲଇ ଉତ୍ତର
ହେ ମୁନି ! ନନ୍ଦଘରେ ମୋର
ଅଛନ୍ତି ବେନି ଯେ କୁମର
କଂସର ଡରେ ମୁହିଁ ନେଇ
ଗୋପରେ ଅଛଇ ଲୁଚାଇ
ଏବେ ଗୋପକୁ ତୁମ୍ଭେ ଯାଅ
ମୋର ପୁତ୍ରଙ୍କୁ ନାମ ଦିଅ
ଏହା ଜାଣିବ ଏକା ନନ୍ଦ
ଆନ ଜାଣିଲେ ହେବ ମନ୍ଦ । ୧
ବସୁଦେବର ବୋଲ ଶୁଣି
ଗୋପେ ଚଳିଲେ ଗର୍ଗ ମୁନି
ସାମ ଗାୟନ କରି ଧୀରେ
ମିଳିଲେ ନନ୍ଦର ମନ୍ଦିରେ
ଦେଖି ଆସନ୍ତୁଁ ନନ୍ଦ ଉଠି
ଯୋଡ଼ାଏ ଅଇଲ୍ ପାଦେ ଲୋଟି
ଆନନ୍ଦେ ଚରଣ ପଖାଳି
ପୂଜିଲ୍ ଘେନି ଅର୍ଘ୍ୟସ୍ଥାଳୀ
ଆନନ୍ଦେ କରାଇଣ ମନ
ବୋଲଇ ମଧୁର ବଚନ । ୨,୩
ହେ ମୁନି ! ଧୋଇଲି ନିର୍ମଳ
ଘେନି ତୁମ୍ଭର ପାଦ-ଜଳ
ଭୂତ ଭବିଷ୍ୟ ବର୍ତ୍ତମାନ
ଏଣେ ତୁମ୍ଭର ଦିବ୍ୟଜ୍ଞାନ
ଅନେକ ପୁଣ୍ୟ କରିଥିଲି
ତେଣୁ ତୋ ପ୍ରଚୁର ଦେଖିଲି
ଭିତର ପୁରେ ମୁନି ନେଇ
କହଇ ଏକାନ୍ତେ ବସାଇ
ଶୁଣ ପଣ୍ଡିତ ଚୂଡ଼ାମଣି
ମୋ ଘରେ ଅଛଇ ରୋହିଣୀ
ବସୁଦେବର ଏ ତନୟ
ପୁଣି ହୋଇଛି ମୋର ପୁଅ
ନାମ କରଣ ଆଜ କର
ପ୍ରସନ୍ନ ହୁଅ ମୁନିବର
କ୍ଷତ୍ରିୟ ସ୍ୱଭାବ ଯୁକତେ
ସଂସ୍କାର କର ବେନିସୁତେ
ମୋ ତହୁଁ ନ ଜାଣିବେ କେହି
ଏମନ୍ତ ମନ୍ଦିରେ ବସାଇ । ୪-୬
ମୁନି ବୋଲନ୍ତି ନନ୍ଦ ଶୁଣି
ଏକଥା ମୋତେ ନ ଯୋଗାଇ
ମୁଁ ଯଦୁବଂଶେ ପୁରୋହିତ
ଏକଥା ଜାଣନ୍ତି ଜଗତ
ତୋହର ଘରେ କାର୍ଯ୍ୟ କଲେ
କଂସ ଜାଣିବ ତାହା ଭଲେ
ବସୁଦେବର ମିତ୍ର ତୁହି
ଏବେ ଅମ୍ବିକା ଗଲେ କହି
ଦେବକୀ ଅଷ୍ଟମ ଉଦର
ନଷ୍ଟପ୍ରେ ହୋଇଲ୍ କୁମର
କେ ଅବା ଆସିଅଛି ଥୋଇ
କଥାଁ ଗର୍ଗ ଯେ ନାମ ଦେଇ
ଏମନ୍ତ ବିଚାରି ଅସୁର
ଘେନାଇ ଯିବ ମଧୁପୁର

ନେଇ ମାଣବ ବେନି ବାଳ
ଏକଥା ଅନର୍ଥର ମୂଳ । ୭-୯
ଶୁଣି ବୋଲଇ ନନ୍ଦରାୟ
ହେ ମୁନି ! ନାହିଁ ତୋର ଭୟ
ତୋ ତତ୍ତ୍ୱ ନ ଜାଣିବେ ଆନ
ଏମନ୍ତ ଅଛି ମୋର ସ୍ଥାନ
କହ୍ନି କରିଅ ସାବଧାନ
ଆଣିଲ ହୋମର ବିଧାନ । ୧୦
ଦ୍ୱିଜ ବେଷ୍ଟରେ ଶୂଦ୍ରମନ୍ତ୍ର
ସଂସ୍କାର କଲେ ବେନି ସୁତ । ୧୧
ନନ୍ଦକୁ ବୋଲନ୍ତି ବଚନ
ଶୁଣ ହେ ପୁତ୍ରଙ୍କର ନାମ
ରୋହିଣୀ ସୁତ ଏ ସୁନ୍ଦର
ଗୁଣେ ରଞ୍ଜିବ ପୁରନର
ଏହାର ନାମ ରାମ ହେଉ
ଦେଖ ଆଜାନୁ ବେନି ବାହୁ
ବଳ ଅଧିକୁ ବଳ ନାମ
ବେନି ସଂଯୋଗେ ବଳରାମ
ଗୋବିନ୍ଦ ଆଜ୍ଞା ଘେନି ପୂର୍ବେ
ଦୁର୍ଗା ଆକର୍ଷି ଥିଲେ ଗର୍ଭେ
ତେଣୁ ଯେ ନାମ ସଂକର୍ଷଣ
ଦେଖ ସ୍ୱରୂପ ବିଚକ୍ଷଣ । ୧୨
ଏ ଯେ ତୋହର ନିଜ ସୁତ
ଏହାର ଗୁଣ ଅପ୍ରମିତ
ଏ ଯେତେ ଜନ୍ମ ମହୀତଳେ
ମୁହିଁ ଜାଣଇ ଯୋଗବଳେ
ଯୁଗକେ ଆନୁ ଆନ ବର୍ଣ୍ଣ
ଆବର ଯେତେ ଗୁଣ କର୍ମ
ନାମ ଏହାର ଅଛି ଯେତେ
କହିବ ଶୁଣ ଏକ ଚିତ୍ତେ

ଶ୍ୱେତ ଶୋଣିତ ପୀତ ଶ୍ୟାମ
ଯୁଗକୁ ଯୁଗ ଆନୁ ଆନ
ଏବେ ଏହାର ନାମ କୃଷ୍ଣ
ଅନେକ ମାଣବ ଏ ଦୁଷ୍ଟ । ୧୩
ପୂର୍ବେ ଏ ବସୁଦେବ ଘରେ
ଜନ୍ମିଲ ଦେବକୀ ଉଦରେ
ପିତା ଏହାର ବସୁଦେବ
ତେଣୁ ଯେ ନାମ ବାସୁଦେବ । ୧୪
ଯେତେକ ନାମ ଯେ ଏହାର
ଅଳପ ଜାଣେ ବେଦବର
ଏହା ଚରଣ ଆଶ୍ରେ କରି
ମୂଢ଼େ ତରିବେ ଭବବାରି
ପ୍ରଥମ ଯୁଗେ ଏହା ଗୁଣ
ହେ ନନ୍ଦ ! ସାବଧାନେ ଶୁଣ
ବେଣୁ ରାଜାର ଅନ୍ତକାଳେ
ଭୂମି ହୋଇଲା ଟଳମଳେ
ଏହାର ବଳ ଆଶ୍ରେ କରି
ସୁଖେ ବଞ୍ଚିଲେ ନରନାରୀ
ଏହାର ନାମେ ଯାର ଭାବ
ସେ ପ୍ରାଣୀ ସଂସାରୁ ତରିବ
ଦେଖ ଏହାର ବର୍ଣ୍ଣଚିହ୍ନ
ପ୍ରତ୍ୟକ୍ଷେ ବିଷ୍ଣୁର ସମାନ
ଏଣେ ବିଶ୍ୱାସ ନନ୍ଦ କର
ତରିବୁ ଭବ ମହାଘୋର । ୧୫-୧୯
ଏମନ୍ତ କହି ନନ୍ଦ ଆଗେ
ମଥୁରା ଗଲେ ମୁନି ବେଗେ
ନନ୍ଦ ସନ୍ତୋଷ ମନେ ଗୁଣି
କୃଷ୍ଣଙ୍କୁ ଘେନିଲା ରୋହିଣୀ
ଯଶୋଦା ରାମ ଘେନି କୋଳେ
ସ୍ତନ ପିଆନ୍ତି ସୁଖ ହେଳେ । ୨୦

କେତେହେଁ ଦିନ ଚଳିଁ ଗଲା
ଶୁଣ ହେ ଶ୍ରୀକୃଷ୍ଣର ଲୀଳା
ଅନେକ ରାମ ଶିଶୁଧର
ମନ୍ଦିରୁ ହୋଇଲେ ବାହାର
ଚଳନ୍ତି ଆଗେ ଗୁଳଗୁଞ୍ଜା
କ୍ଷଣ କ୍ଷଣକେ ପଛଧୁଞ୍ଜା
ଚରଣେ ନୂପୁର ବାଜେଣି
କଟୀ କିଙ୍କିଣୀ ନାଦ ଶୁଣି
ଚଳନ୍ତି ଗୋପୀଙ୍କ ଅଗଣା
କର୍ଦ୍ଦମେ ପଡ଼ି ହୋନ୍ତି ବଣା
ଚରଣେ ରୁଣୁଝୁଣୁ ନାଦେ
ଗୋବିନ୍ଦ ଖେଳନ୍ତି ଆନନ୍ଦେ
ଦେଖି ଧ'ମନ୍ତି ବେନି ମାଏ
ରାମକୃଷ୍ଣର ପଙ୍କ କାଟୁ
କାଖେ ବସାଇ ଘରେ ଆଣି
ଧୁଅନ୍ତି ଘେନି ବାସପାଣି
ଝୀନ ବସନେ ପୋଛି ଦେହ
କ୍ଷଣ କ୍ଷଣକେ ମାୟାମୋହ
ବେନି ବାଳକ କୋଳେ ଧରି
ସ୍ତନ ପିଆନ୍ତି ପେଟ ଭରି
ପାଟିରେ ଦୁଇ ଦୁଇ ଦନ୍ତ
ଦେଖିଣ ଯଶୋଦା ଉଷତ
ରୋହିଣୀ ଦେଖିଣ ସାନନ୍ଦ
ପୁତ୍ରଙ୍କୁ କୋଳେ କଲା ନନ୍ଦ
ଦିନକୁଦିନ ବଳୀୟାର
ଗୋକୁଳେରାମଦାମୋଦର। ୨୧-୨୩
ଗୋପାଳ ବାଳକଙ୍କ ମେଳେ
ଗୋପୀଏ କରୁଥାନ୍ତି କୋଳେ
ଖେଳନ୍ତି ଗୃହ ଦାଣ୍ଡ କାଛେ
ବାଛୁରିମାନଙ୍କର ପଛେ

ଉଠନ୍ତି ବତ୍ସାଙ୍କ ଉପରେ
ଧୂଳି ଧୂସର କଳେବରେ
ବତ୍ସାଏ ଉଠି ଯେ ପଳାନ୍ତି
ଲାଙ୍ଗୁଡ଼ ଧରି ଓଟାରନ୍ତି
ପୁଣି ପଳାନ୍ତେ କର ଛାଡ଼ି
ତଳେ ପଡ଼ନ୍ତି ମୁଖମାଡ଼ି
ତୁଣ୍ଡରୁ ଗଳଇ ରୁଧିର
କାନ୍ଦନ୍ତି ବ୍ରହ୍ମାଣ୍ଡଠାକୁର
ଘରୁ ବାହାର ହୋଇ ଗୋପୀ
କୃଷ୍ଣଙ୍କୁ ଗୃହାଁନ୍ତି ନରେପି
ଧୂଳି ଝାଡ଼ନ୍ତି ବସ୍ତ୍ର ଘେନି
କୋଳ କରନ୍ତି ପୁତ୍ର ବେନି
ଘରେ ଶୁଅନ୍ତି ବସ୍ତ୍ର ପାଡ଼ି
ଲେଟନ୍ତି ପୁଣି ତଳେ ପଡ଼ି
କ୍ଷଣକେ ହୁଅନ୍ତି ବାହାର
କ୍ଷଣ କ୍ଷଣକେ ଆଗୁଁ ସାର
ଗୋପୀ ଧରନ୍ତି ଯାଇଁ କୋଳେ
ଚୁମ୍ବନ୍ତି ଦ୍ୟନ୍ତି କୁତୂହଳେ
ନନ୍ଦର ଘରେ ଦ୍ୟନ୍ତି ନେଇ
କହନ୍ତି ଯଶୋଦାଙ୍କୁ ଗୃହିଁ
ଏ ତୋ'ର କେବଣ ବିଗୁର
ପୁତ୍ର ନ ଥୋଉ କପାଁ ଘର
ଏକ ବାଳକ ନ ସମ୍ଭାଳୁ
ବିପଦ ପଡ଼ିଲେ ଯେ ଭାଳୁ
ଶୁଣି ଯଶୋଦା କୃଷ୍ଣ ଘେନି
ରାମକୁ ସମ୍ଭାଳେ ରୋହିଣୀ
ଦିନକୁ ଦିନ ଅପ୍ରମିତ
ଘରେ ନ ରହନ୍ତି ଅଚ୍ୟୁତ
ଗୋରୁଙ୍କ ଶିଙ୍ଗ ଧରି ନାଚେ
ବୁଲନ୍ତି ଅଗ୍ନି କାଛେ କାଛେ

ଚଉରଲ ଖଣ୍ଡାକୁ ଚାଲନ୍ତ ॥ ଜୀବକା ବୁଢ଼ାଙ୍କ ଆମ୍ଭର ॥
ଶ୍ୱାନର ଭୁଣ୍ଡେ ହସ୍ତ ଦ୍ୟନ୍ତ ॥ ବାଛୁରୀ ମେଳେ ଝିଚା କୁମର ॥
ପଡ଼ ଲୋଟନ୍ତ ଜଳ ଧୁଣ୍ଡେ ମ୍ଭ ॥ ଘରେ ନ ଥାଉଁ ଯେତେବେଳେ ॥
ହସ୍ତ ଭରନ୍ତ ସର୍ବ କୁଣ୍ଡେ ମ୍ଭ ॥ ଚୋରି କରଇ ଅବହେଳେ ॥
କର୍ଣ୍ଣା ଉପରେ ପଡ଼ ଯାନ୍ତ ॥ ଶିକା ଦଉଡ଼ି କାଟି ଦେଇ ॥
ମଞ୍ଜାରୀ ପୁଅଙ୍କ ଧରନ୍ତ ॥ ଲବଣୀ କାନ୍ଥେ ଲେପୁଥାଇ ॥
ଖେଳନ୍ତି ଅତି ବଳୀୟାର ॥ ବସ୍ତ୍ର ଚିରଇ ଘରେ ପଶି ॥
ଗୋକୁଳେ ରାମ ଦାମୋଦର ॥ ବୋଇଲେ ବେଗେ ଯାଏ ରୁଷି ॥
ନନ୍ଦଙ୍କ ପୁତ୍ରଙ୍କ ଧରି ଆଣି ॥ ଘଣ୍ଟ ଭାଙ୍ଗଇ ଲୁଚି ଲୁଚି ॥
ପିଟନ୍ତ ଯଶୋଦା ରୋହିଣୀ ॥ କଥାକେ ପାଉଥାଏ ଘୁଞ୍ଚି ॥
ବେମାର ନ ମାରନ୍ତି କରି ॥ ଖୋଜଣ ଦୁଧସର ଖାଇ ॥
ପୁଣ ଆଣନ୍ତ ବେଗେ ଧରି ॥ କାହାର ହାଣ୍ଡିରେ ମୂତଇ ॥
ଦଣ୍ଡେହେଁ ନ ରହନ୍ତ ଘରେ ॥ କହୁ ନ ପାଏ ଯାର ଘର ॥
ବୁଲନ୍ତ ଗୋପୀଙ୍କର ଦ୍ୱାରେ ।୨୪,୨୫ ॥ ଉଠଇ ଦୋଳର ଉପର ॥
ଭୁଲ୍ଲୀବୟସ ଗୋପବାଳେ ॥ ପୁଅ କନ୍ଦାଇ ଯାଏ ଚାଲି ॥
ଖେଳନ୍ତ ରାମକୃଷ୍ଣ ମେଳେ ॥ ଗୋଡ଼ାଇ ଗଲେ ଦିଏ ଗାଳି ॥
ଭାଙ୍ଗନ୍ତ କାହା ଘୃତ ଘଣ୍ଟ ॥ ଏକଇ ଗୋପୀ ରୋଷଭରେ ॥
ବସ୍ତ୍ର ଚିରନ୍ତ ଖଣ୍ଡ ଖଣ୍ଡ ॥ କହଇ ଯଶୋଦା ଆଗରେ ॥
କାହାର ପିଆନ୍ତ ବାଛୁରୀ ॥ ଯମୁନା ଯିବାବେଳେ ମୋର ॥
ଲବଣୀ ଖାନ୍ତି ଚୋରି କରି ॥ ଘରେ ପଶିଲା ତୋ କୁମର ॥
କାନ୍ଦନ୍ତି ଦୋଳର କୁମର ॥ କବାଟ ଫେଡ଼ଣ ମୋହର ॥
ପାଣି ଢାଳନ୍ତି କା ଉପର ॥ ଘରେ ପଶଇ ଯେହ୍ନେ ଚୋର ॥
ସହି ନ ପାରି ଗୋପବାଳୀ ॥ ତା ଦେଖି ବାହୁଡ଼ିଲି ମୁହିଁ ॥
ନନ୍ଦର ଘରେ ଥୋକେ ମିଳି ॥ ଜଳାକବାଟି ବାଟେ ଚାହିଁ ॥
ଗୋପୀ କହନ୍ତି ଆଗ ବଢ଼ି ॥ ଶିକାରେ ଅଛି ମୋର ସର ॥
ଯଶୋଦା ପାଦତଳେ ପଡ଼ି ॥ ଗମ୍ଭୀରୀ ବଢ଼ଇ ଅନ୍ଧାର ॥
ସମ୍ଭାଳ ତୋର ଘରଦ୍ୱାର ॥ କି ମନ୍ତ୍ର ଜାଣେ ତୋର ପୁଅ ॥
ଆମ୍ଭେ ନ ଥିବୁଁ ଗୋପପୁର ॥ କୋଟିଏ ସୂର୍ଯ୍ୟ ଯେହ୍ନେ ଦେହ ॥
କହିବୁଁ ଆଉ ଗୁଣ କେତେ ॥ ଅନ୍ଧାର ଗଲାକ ସେ କେଉଣେ ॥
ଶୁଣ ଗୋକର୍ମ କଲ ଯେତେ ।୨୬-୨୮ ॥ ପୁଣି ଚାହିଁଇ ଏଣେ ତେଣେ ॥

ଦେଖିଲି ଶିକା ଅଛୁ ଉଚ୍ଚେ
ହସ୍ତ ନ ପାଇଲି ସୁପଞ୍ଚେ
ଖେଳ ଆଣିଲି ଧାଡିକାରେ
ଉଠିଲି ତଥିର ଉପରେ
ସବୁ ଖାଇଲି ସର ମୋର
ଭୁଣ୍ଡ ମୋ ଜଳିଲ ଉତ୍ତର
ପୁଣି ଗୋପୀକା ହୋଇ ଆଗେ
କୋପେ ବୋଲଇ ବେଗେ ବେଗେ
ଶୁଣ ମାତ ! ଗଲି ମାତ ଆଣି
ତୋ ସୁତ ଖାଇଲା ଲବଣୀ
ଆସି ହୋଇଲି ବେଗେ ଘର
ବସିଛୁ ପିଣ୍ଡାର ଉପର
ବୋଇଲ ଗଲୁ ଏତେବେଳ
ତୋ ଘରେ ପଶୁଥିଲ ଚୋର
ମୁଁ ଏବେ ବସିଅଛୁ ଜଗି
ଖାଇବ ଆନଘରେ ମାଗି
ଘରେ ପଶିଲି ବେଗେ ଯାଇଁ
ଚାହିଁଲି ଗଲାଣି ପଳାଇ
ଶୁଣି ଗୋପୀଏ ଆଗସର
ବୋଲଇ ଶୁଣ ନନ୍ଦ-ନାରୀ
ଧନେ ଏ ମୋର ଘରେ ଗଲା
କର ଅଞ୍ଜଳି ପ୍ରସାରିଲା
ବୋଇଲା ଫୁଟିଲି ମୁଁ ପଥ
ଲବଣୀ ଦିଅ ମୋର ହସ୍ତେ
ହସ୍ତ ପୂରେଇ ଦିଅ ସର
ତୋ ଘରେ ନ ପଶିବ ଚୋର
ଶୁଣି ଉଷତ ହେଲି ମୁହିଁ
ସର ଲୁଚିଏ ଦେଲି ନେଇ
ହସ୍ତ ନ ପୁରଇ ତାହାର
ବୋଲଇ ଆଣ ଧାଡିକାର

ପୁଣି ଥୋକାଏ ଦେଲି ନେଇ
ଦେଖିଲି ହସ୍ତ ନ ପୂରଇ
ଯେତେକ ଥିଲା ମୋର ଘର
ଦୁଧ ଲବଣୀ ଘୃତ ସର
ସବୁ ଢାଳିଲି ହସ୍ତେ ନେଇ
ଦେଖିଲି ହସ୍ତ ନ ପୂରଇ
ସାହି ପଡ଼ିଶା ଯେତେ ଘର
ସବୁ ଆଣିଲି ଦୁଧ ସର
କେତେହେଁ ହସ୍ତ ନ ପୂରିଲା
ପୁଣିହିଁ ଆଣ ହୋ ବୋଇଲା
ଦେଖି ମୁଁ ହୋଇଲି ତରସ୍ତ
ଏକା ଗ୍ରାସକେ କଲା ଗ୍ରସ୍ତ
ହସ୍ତ ପୋଛିଲା ମୋର ମୁଣ୍ଡେ
ପଳାଇଗଲା ଦାଣ୍ଡେ ଦାଣ୍ଡେ
ଗୋପୀମାନଙ୍କ ବାକ୍ୟ ଶୁଣି
କୋପେ ବୋଲଇ ନନ୍ଦ-ରାଣୀ
କୃଷ୍ଣର ଧରିଛନ୍ତ କର
ଭୟେ କମ୍ପନ୍ତ ଚକ୍ରଧର
ଯଶୋଦା ବୋଲଇ ଲୋ ଶୁଣ
ଜାଣିଲି ପୂର୍ବ ଦୁଷ୍ଟପଣ
ତୁମ୍ଭର ଜାଣିଲି ସଦୟେ
ଦେଲଟି ଲବଣୀ ଥୋକାଏ
ଏତେକେ ବୁଡ଼ିଲା ଲୋ ଘର
ଭଣ୍ଡ ଲୋ ମୋହର ଆଗର
ବାଳୁତ ପୁଅ ହସ୍ତ କାହିଁ
ଶତେ ନଉତି ନ ପୂରଇ
ଏ ଗୁଣ ତୁମ୍ଭର ପ୍ରମାଣ
ଏଥକୁ ସାକ୍ଷୀ ନାରାୟଣ
ଦାସ ବତ୍ସଳ ଭଗବାନ
ଚାହିଁଲେ ଗୋପୀଙ୍କ ବଦନ

ମୋହନ କରି ହସ ହସ
ଗୋପୀ କରିବେ ତାଙ୍କୁ ବଶ
ଏମନ୍ତେ ପ୍ରଭୁ ହୃଷୀକେଶ
ଗୋପୀ ହୋଇଲେ ତାଙ୍କ ବଶ
ତକ୍ଷଣେ ସେ ସୁନ୍ଦର ହୋଇ
ଗୋପୀଏ ଏକୁ ଆରେ ଚାହିଁ
କୃଷ୍ଣର ମୁଖକୁ ସେ ଚାହିଁ
ଯେ ଯାହା ଘରକୁ ସେ ଯାଇ ।୨୯,୩୧
ଶୁଣ ପରୀକ୍ଷ ମହୀପାଳ !
ବାଳକ ଲୀଳା ନନ୍ଦବାଳ
ଅନେକ ରାମ ବନମାଳୀ
ବାଳକମେଳେ ଗଲେ ଖେଳି
ଆନନ୍ଦେ କ୍ରୀଡ଼ାରଙ୍ଗେ ଫୁଟି
ତୁଣ୍ଡେ ଭରିଲେ କୃଷ୍ଣ ମାଟି
ରାମ ଧାଇଁଲେ ଦେଖି ଖରେ
କହିଲେ ଯଶୋଦା ଛାମୁରେ
ଶୁଣ ଜନନୀ ! ମୋ ଉତ୍ତର
ମାଟି ଭକ୍ଷିଲା ତୋ କୁମର
ଯାଇଁ ମୁଁ ଧଇଲି ତା ହସ୍ତ
ମାରଇ ବୋଲି ଭୟ ଚିତ୍ତ
ବେଗେ ସେ ଛଡ଼ାଇଲା ହସ୍ତ
ମୋ ଅଙ୍ଗେ ମାଇଲା ବହୁତ
ଶୁଣି ଯଶୋଦା ବେଗେ ଯାଇଁ
ଧଇଲେ କୃଷ୍ଣ କର ଦୁଇ
କୋପ ନୟନେ ଦେଖି ଚାହେଁ
ଭୟେ କମ୍ପନ୍ତି ଦେବରାୟେ
ଯଶୋଦା କୋପେ ପରଜ୍ୱଳି
ଛାଟ ଉଞ୍ଚାଇ ଦେଇ ଗାଳି
ସର ଲବଣୀ ତୁ ପକାଉ
କାହାର ବୋଲେ ମାଟି ଖାଉ

ଆଜ ମାରିବ ତୋତେ ଘରେ
କହିବ ପି ତାଙ୍କ ଛାମୁରେ
ପୋଏ କହିଲେ ଶୁଣ ମାଏ !
ଭକ୍ଷିଲେ ମୃତ୍ତିକା ମୁଠାଏ
ଶୁଣି ଯଶୋଦା ପରଜ୍ୱଳି
ଛାଟ ଉଞ୍ଚାଇ ଦ୍ୟନ୍ତି ଗାଳି
ପଣନ୍ତେ ବାନ୍ଧିଛନ୍ତି ହସ୍ତ
ଭୟେ କମ୍ପନ୍ତି ଗୋପୀନାଥ ।୩୨।୩୪
ଛାଟ ଉଞ୍ଚାନ୍ତେ ବେଗ କରି
କାନ୍ଦି କହନ୍ତି ନରହରି
ଏହାଙ୍କ ଘରେ ମୁହିଁ ଯାଇଁ
ଲବଣୀ ଭକ୍ଷଇ ଚୋରାଇ
ସେ ଦ୍ୱେଷ କହୁଛନ୍ତି ମିଛ
ତୁଣ୍ଡେ ମୋ ଦେଖ ଗୋ ପ୍ରତ୍ୟକ୍ଷ
ବଳଦେବହିଁ ମୋତେ ରୁଷି
ତୋ ଆଗେ କହିଲେ ସେ ଆସି
ମୋ ତୁଣ୍ଡେ ଥିଲେ ସିନା ମାଟି
ତେବେ ତ ମୋତେ ଛାଟ ପିଟି
ହସ୍ତରୁ ଛାଟ ବେଗେ ପକା
ମାଏ ବୋଇଲେ ତୁଣ୍ଡ ଦେଖା
ଶୁଣି ସାନନ୍ଦ ଚକ୍ରଧର
ବିସ୍ତାରି ଦେଖାନ୍ତି ଅଧର । ୩୫—୩୭
ତକ୍ଷଣେ ବେନି ଘାଟି ଧରି
ତୁଣ୍ଡେ ଚାହିଁଲା ନନ୍ଦନାରୀ
ଦେଖଇ ଅଶେଷ ବ୍ରହ୍ମାଣ୍ଡ
ଆକାଶ ମହୀ ନବଖଣ୍ଡ
ସ୍ଥଳ ସାଗର ମହୀଧର
ଶଶୀ ନକ୍ଷତ୍ର ଦିବାକର
ଦଶ ଆକାଶ ଅନ୍ତରାଳ
ଗ୍ରହ ପବନ ଦିଗପାଳ

ସ୍ଥାବର ଆଦି ଯେତେ ଜନ୍ତୁ ୫
ବିଶ୍ୱ ସଂସାରେ ଯେତେ ହେତୁ ୫
ନଗ ପାଟଣା ଘର ଗ୍ରାମ ୫
ନଦୀ ପର୍ବତ ଘୋରବନ ୫
ମଥୁରା ପୁର ଆଦି କରି ୫
ଗୋପରେ ଯେତେ ନର ନାରୀ ୫
ବାଳକ ମେଳେ ନନ୍ଦଦ୍ୱାରେ ୫
କୃଷ୍ଣଙ୍କୁ ଯେମନ୍ତ କରେ ୫
ରୋହିଣୀ ଯେନ ହଳପାଣି ୫
ସ୍ତୁତି କରନ୍ତି ସୁର ମୁନି ୫
ଦେଖି ଚକିତ ନନ୍ଦରାଣୀ ୫
ମୂର୍ଚ୍ଛିତେ ପଡ଼ିଲା ଧରଣୀ ୫
ପୁଣି କ୍ଷଣକେ ପାଇ ଜ୍ଞାନ ୫
ବୋଲଇ ଦେଖିଲି ସ୍ୱପନ ୫
କେଉଁ ଦେବତା ମାୟା କଲା ୫
ମୋହର ମନକୁ ମୋହିଲା ୫
କି ଅବା ହୋଇଲିଁ ବାଇ ୫
ଜ୍ଞାନ ହାରିଲି ଗର୍ଭ ଗୃହୀଁ ୫
ପୂର୍ବର କାହିଁ ଏଡ଼େ ଗର୍ଭ ୫
ଏକ ଅନାଦି ପଦ୍ମନାଭ ।୩୭-୪୦ ୫
ସିଦ୍ଧ ପୁରୁଷ କିବା ଜାତ ? ୫
ଏହାକୁ ବୋଲଇ ମୁଁ ସୁତ ୫
କିବା ଡାକିଣୀ ମାୟା କଲା ୫
ଗର୍ଭେ ତ ଏମନ୍ତ ଦିଶିଲା ୫
ନପୂର୍ଣ୍ଣ ପଡ଼ଇ ପ୍ରମାଦ ୫
ଶୋକେ ଯଶୋଦା ଗଦଗଦ ୫
ଏତ ନୁହଇ ଭଲ ଚିହ୍ନ ୫
ମୋହର ମନ ଛନ ଛନ ୫
ଏମନ୍ତ ଭଣି ନନ୍ଦରାଣୀ ୫
ମନ ବଚନ ଚିତ୍ତେ ଗୁଣି ୫
ନ ଜାଣି ବାଇ ପ୍ରାୟ ହୋଇ ୫
ଭାଳଇ ଚଉଦିଗ ଗୃହୀଁ ୫
ପୁଣି କ୍ଷଣକେ ଅନୁମାନ ୫
ଚିତ୍ତେ ଚିନ୍ତଇ ଭୟ ଘେନ ୫
ଯାହାର ମାୟା ଘୋର ଭ୍ରମେ ୫
ଜୀବ ଭ୍ରମଇ ପଥଶ୍ରମେ ୫
ମୁହିଁ ମୋହର ଏ ସଂସାର ୫
ପତି ତନୟ ବନ୍ଧୁ ମୋର ୫
ସ୍ୱାମୀର ପତ୍ନୀ ମୁହିଁ ସତ ୫
ସର୍ବ ସମ୍ପଦ ମୁଁ ଆବୋରି ୫
ଏ ଗୋପୀ ଗୋପ ଗୋରୁ ଧନ ୫
ସର୍ବ ଆବୋରି ମୋର ମନ ୫
ଯାର ମାୟାରେ ଏହି ମତ ୫
ସେହରି ମୋତେ କରୁ ଗତ ।୪୧।୪୨ ୫
ଏତେ ବିଚାରି କଲା ଭୟ ୫
ମାୟା ମୋହିଲେ ଦେବରାୟ ୫
ତକ୍ଷଣେ ପୁତ୍ର କରି କୋଳ ୫
ନମଇ ଦଶଦିଗ ପାଳ ୫
ଜୟ ଚଣ୍ଡିକା ଗୋ ମଙ୍ଗଳା ୫
ରଖ ମୋ ଏକଇନ୍ଦ୍ର ବଳା ୫
ଗଜବଦନୀ କ୍ଷେତ୍ରପାଳ ୫
ପୁତ୍ରକୁ ରଖ ସର୍ବକାଳ ୫
ନମଇଁ ଗୋବିନ୍ଦର ପାଏ ୫
ଇଷ୍ଟ ଖଣ୍ଡିବେ ମୋ ତନୟେ ୫
ଏମନ୍ତ ବୋଲି କୃଷ୍ଣ ଘେନ ୫
ଘରେ ମିଳିଲା ନନ୍ଦରାଣୀ ୫
ଗୋରଜ କୃଷ୍ଣ ଅଙ୍ଗେ ବୋଳି ୫
ଅନେକ କଲା ନିଉଛାଳି ୫
ଗୋପୀଙ୍କି କଲା ସନମାନ ୫
ବ୍ରାହ୍ମଣେ ଦେଲା ମିଷ୍ଟ ଅନ୍ନ

ସ୍ତନ ପିଆଇ କୋଳ କରି
ନିଦ୍ରା କରାଇଲେ ମୁରାରି ।୪୩-୪୫
ବୋଲେ ପରୀକ୍ଷିତ ଶୁକ ଚାହିଁ
ତୁମ୍ଭରେ ନିସ୍ତରିଲି ମହିଁ
ନନ୍ଦ-ଯଶୋଦାଙ୍କର ତପ
ହେ ମୁନି ! କହିବା ସ୍ୱରୂପ
ଯାହାର ନାମ ହୃଦେ ଘେନି
ତରିଲେ ବ୍ରହ୍ମା ଆଦି ମୁନି
ତପେ ବିଧାତା ନ ଦେଖଇ
ଯା ନାମ ଶଙ୍କର ଜପଇ
ଦେବେ ନ ଜାଣନ୍ତି ଯାହାକୁ
କେମନ୍ତେ ପ୍ରସନ୍ନ ନନ୍ଦକୁ ?
ଯଶୋଦା କଲା କେଉଁ ଭାଗ୍ୟ ?
ତାହାର କୋଳେ ପଦ୍ମନାଭ
ଗର୍ଭେ ଧରିଲା ଦଶମାସ
ଦେବକୀ ହୋଇଲା ନିରାଶ
କହିବା ମୋତେ ମୁନିବର ?
ନିର୍ମଳ ହେଉ ମୋ ଶରୀର ।୪୬-୪୭
ମୁନି କହନ୍ତି ତାହା ଶୁଣି
ହରି ଚରିତ ମନେ ଗୁଣି
ଶୁଣ ରାଜନ କୃଷ୍ଣ କଥା
ସୃଷ୍ଟିର ଆଦ୍ୟ କାଳେ ଧାତା
ଅଷ୍ଟବସୁଙ୍କୁ ଜାତ କଲା
ଜଣ ଜଣକେ ନାମ ଦେଲା
ପୁତ୍ରଙ୍କ ମଧ୍ୟେ ସାଧୁଧୀର
ଦ୍ରୋଣ ବସୁ ନାମ ଯାହାର
ପତ୍ନୀର ନାମ ଯାର ଧରା
ଭୁଲ୍ଖି ନୁହଇ ଅପସରା
ପୁତ୍ର ବଧୂଙ୍କୁ ଚାଇ ଧୀରେ
ଆଦେଶ ଦେଲା ବେଦବରେ
ବେଦ ପ୍ରମାଣେ ସୃଷ୍ଟି କର
ହୋଇବ ସଂସାର ତୁମ୍ଭର
ଶୁଣି ଯୋଡ଼ିଲେ ବେନି କର
କହନ୍ତି ମଧୁର ଉତ୍ତର
ବୋଲନ୍ତି ଶିରେ କର ଦେଇ
ହେ ତାତ ! ଏଣେ କାର୍ଯ୍ୟ ନାହିଁ
ଆମ୍ଭର ଚିତ୍ତ ଅପ୍ରମାଦେ
ଭକତି ଥିବ କୃଷ୍ଣପାଦେ
ତେବେ କରିବୁଁ ତୋ ବଚନ
ହେ ତାତ ! ହୋଇବ ପ୍ରସନ୍ନ
ସନ୍ତୋଷ ଚିତ୍ତେ ପ୍ରଜାପତି
ଗୋବିନ୍ଦେ ହେଉ ତୁମ୍ଭ ମତି
ବ୍ରହ୍ମା ଆଦେଶ ଶିରେ ଘେନି
ଗୋପେ ଜନ୍ମିଲେ ପତି ପତ୍ନୀ
କୃଷ୍ଣଙ୍କୁ ତପବଳେ ପାଇ
ପାଳନ୍ତି ମାତାପିତା ହୋଇ ।୪୮-୫୨
ଶୁଣ ସୁଜନେ ହରି ବାଣୀ
ନିର୍ମଳ ହୁଅ ଏହା ଶୁଣି
ପୁରାଣ ଗୀତବନ୍ଧେ କଲି
ରାମ କୃଷ୍ଣର ବାଳକେଳି
ଏଥିକୁ ହୁଅ ଦୃଢ଼ ଚିତ୍ତ
ନମଇଁ ଦାସ ଜଗନ୍ନାଥ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣବାଳକ୍ରୀଡ଼ାୟାଂ
ମୃତ୍ତିକାଭକ୍ଷଣୋ ନାମ ସପ୍ତମୋଽଧ୍ୟାୟଃ । ୭ ।



# ଦଶମ ଅଧ୍ୟାୟ

( ମୂଳାନୁସାରେ ନବମ ଅଧ୍ୟାୟ )

ନବମେ ପୟଉତ୍ସିକ୍ତେ, ଗତ୍ୱା ଗୋପ୍ୟଥ ତତ୍କୃତଂ ।
ବୀକ୍ଷ୍ୟ ଭାଣ୍ଡଭଙ୍ଗାଦି କୃଷ୍ଣଂ ଦାମ୍ନା ବବନ୍ଧ ତଂ ।୦।

ଦଧି ମନ୍ଥନ୍ତେ ସେ ଯଶୋଦା । ଶ୍ରୀକୃଷ୍ଣ ସ୍ତନପାନେ ବାଧା
ଯାଇ ଭାଙ୍ଗିଲେ ଭାଣ୍ଡମାନ । ଦଶମ ଅଧ୍ୟାୟେ ବର୍ଣ୍ଣନ ।୦।

ଶ୍ରୀ ଶୁକ ଉବାଚ

ନମଇଁ ପ୍ରଭୁ ବନମାଳୀ
ସୁଖ ସାଗର ବାଳକେଳି
ଅନେକ ଦେଖି ଯଶୋବନ୍ତୀ
ସେବକମାନଙ୍କୁ ବୋଲନ୍ତି
ଆସି ମିଳିଲେ ପରବାସି
ନମନ୍ତି ଦେବୀପାଦ ଧରି
ଯଶୋଦା ବୋଲନ୍ତି ଉତ୍ତର
ଘର ବେପାର ତୁମ୍ଭେ କର
ଦଧି ମନ୍ଥିବି ଆଜ ମୁହିଁ
ଲବଣୀ କେତେ ଜାଣିବଇଁ
ମନ ଆନନ୍ଦେ ନନ୍ଦନାରୀ
ଦଧି ଭାଣ୍ଡରେ ଖୁଆ ଭରି
ଯଶୋଦା ହୋଇଲେକ ସଜ
ଯାହାର ପୁତ୍ର ଦେବରାଜ
ପିନ୍ଧି ସୁରଙ୍ଗ ପାଟଶାଢ଼ୀ
ରତ୍ନ ମେଖଳା ଅଣ୍ଟେ ଜଡ଼ି
ପୃଥୁଳ ନିତମ୍ବଯୁଗଳ
ସୁବର୍ଣ୍ଣ ଚୂଡ଼ୀ ବେନିକର
ବେନି ସ୍ତନରୁ କ୍ଷୀର ଝରେ
ନୂପୁର ବାଜଇ ପୟରେ
ହୃଦରେ ହାର କର୍ଣ୍ଣେ କାପ
ଶିରେ ସୀମନ୍ତ ଦିବ୍ୟରୂପ
ଖୁଆ ଦଉଡ଼ି ଧରି କରେ
ବାମ ଦକ୍ଷିଣେ ଗୁଳେ ଧୀରେ
ଦଉଡ଼ି ଟାଣିବାର ଭରେ
ବସ୍ତ୍ର ନ ରହେ ଦେବୀଶିରେ
କବରୀ ଫିଟି ଲୋଟେ ତଳେ
ପୁଷ୍ପ ପଡ଼ନ୍ତି ମାଳେ ମାଳେ
ହୃଦେ କମ୍ପନ୍ତି ପୟୋଧର
କଙ୍କଣ ନାଦ ବେନିକର
ମୁଖେ ଶୋଭିତ ଶ୍ରମଜାଳ
ରଙ୍ଗ ଅଧରେ ସୁକପୋଳ
ଦଧି ମନ୍ଥଇ ମନତୋଷେ
କୃଷ୍ଣ ମିଳିଲେ ତାର ପାଶେ
ମିଳିଲେ ଜନନୀର ପାଶେ
କ୍ଷୀର ସେ ପିଇବାର ଆଶେ
ବସ୍ତ୍ର ଧଇଲେ ବନମାଳୀ
ଚଳ ଯଶୋଦା ଦେଇ ଗାଳି
ଯା ତୁ ନ ଧର ଏତେବେଳେ
ପଛେ ଧରିବ ତୋତେ କୋଳେ
ଶୁଣି କାନ୍ଦନ୍ତି ବନମାଳୀ
ଦେଖି ଯଶୋଦା ଦେଇ ଗାଳି

କୃଷ୍ଣଙ୍କୁ କରାଅନ୍ତି ଭୁଞ୍ଜା
ସୁସ୍ୱରେ କଲା ଗୀତ ଧ୍ୱନି
କୋକିଳସ୍ୱର ଜିଣି ଗୀତ
ଶୁଣି କାନ୍ଦନ୍ତି ଗୋପୀନାଥ
ବାଳୁତ କାନ୍ଦୁଁ ଯେତେ ଜାଣି
ସୁମରି ଗାଏ ନନ୍ଦରାଣୀ
ହସ୍ତ ବଢ଼ାଇ ଗୋପୀନାଥ
ଖୁଆ ଧଇଲେ ବାମହସ୍ତ
ଯଶୋଦା ନ ପାରିଲା ସହି
କୋଳେ ଧଇଲା ବନମାଳୀ ।୧-୪
ସ୍ତନ ପିଆଇ ତୋଷମନ
ଶ୍ରୀମୁଖେ ଦେଲକ ଚୁମ୍ବନ
ଶୁଣ ପରୀକ୍ଷ ଏକ ଚରି
ଏମନ୍ତ ହୋଇ ଉପରାନ୍ତ
ଚୁଲ୍ଲିରେ ବସିଥିଲା କ୍ଷୀର
ଚାହିଁଲେ ପ୍ରଭୁ ଚକ୍ରଧର
ତକ୍ଷଣେ ପଡ଼ିଲା ଉତୁରି
ଦେଖି ଧାଇଁଲା ନନ୍ଦନାରୀ
କୃଷ୍ଣଙ୍କୁ ପକାଇଲା ତଳେ
ଅଜ୍ଞାନ ମୋହ ମାୟା ଭୋଳେ
ଧାମଇଁ କରେ ଜଳ ଯେନ୍ତ
ପଡ଼ି କାନ୍ଦନ୍ତି ଅନ୍ତର୍ଯ୍ୟାମୀ
କୋପ ବସିଲା ଚକ୍ରଧରେ
ଦନ୍ତ କାମୋଡ଼ିଲେ ଅଧରେ
ଉଠିଲେ ଭବସୁଖଦାତା
ଘରୁ ଆଣିଲେ ଶିଳପୁତା
ପିଟିଲେ ଦଧିଭାଣ୍ଡେ ନେଇ
ଭାଜି ଗୋରସ ଗଲା ବହି
ପଳାଇ ଗଲେ ଅତି ଖରେ
ଲୁଚିଲେ ଗମ୍ଭୀରା ଭିତରେ

ଘରେ ଲବଣୀ ଥିଲା ଯେତେ
ସବୁ ଖାଇଲେ ବେନିହସ୍ତେ ।୫,୬
କ୍ଷୀର ଉତୁରି ଗୋପବାଳୀ
ପୁଣି ମନ୍ଥନ ସ୍ଥାନେ ମିଳି
ଦେଖି ଚକିତ ଗାଲେ ହସ୍ତ
ଏତେକ କର୍ମ କଲା ସୁତ
ବାଳକ ପୁଅ ଏତେଡ଼ କୋଁପୀ
ସତ୍ୟ କହିଲେ ମୋତେ ଗୋପୀ
ତାହାଙ୍କୁ କଲି ମୁହିଁ କୋପ
ଏବେ ମୁଁ ଦେଖିଲି ସ୍ୱରୂପ
ଆଜ କରିବି ପ୍ରତିଫଳ
ଗୋପୀଏ ପାଉନ୍ତି ଚହଳ
ବଢ଼ିଲା କହୁଁ କହୁଁ କୋପ
ଯଷ୍ଟି ପ୍ରହାରେ ଯେହ୍ନେ ସର୍ପ ।୭
ଗ୍ରନ୍ଥି ଲୁଚିଲ ପଛଭାଗେ
ମିଳିଲା ଗମ୍ଭୀରା ଲାଗେ
ଦ୍ୱାରେ ଚାହିଁଲା ଦେଖା ଧୀରେ
ଦେଖିଲା ପ୍ରଭୁ ଚକ୍ରଧରେ
ଢେଙ୍କି ଉପରେ ଗୋପୀନାଥ
ଶିକାଧରିଣ ବାମହସ୍ତ
ମଣ୍ଡାରି ସାତ ପାଞ୍ଚ ଭୁଲେ
ଲବଣୀ ଖାନ୍ତି କୁତୁହଳେ
ଦ୍ୱାରକୁ ଚାହିଁ ଚକ୍ରଧର
ଭୟେ କମ୍ପନ୍ତି ଯେହ୍ନେ ଚୋର
ଦେଖି ଯଶୋଦା ପରଜ୍ୱଳି
ଯଷ୍ଟି ଉଞ୍ଚାଇ ଦେଇ ଗାଳି
ଆଜ କରିବି ଖଣ୍ଡ ଖଣ୍ଡ
ଗ୍ରନ୍ଥେ ପିଞ୍ଜିବି ତୋର ପିଣ୍ଡ
ଦେଖି ଚକିତ ଭାବଗ୍ରାହୀ
ଢେଙ୍କୁଁ ପଡ଼ିଲେ ବେଗେ ଡେଇଁ

କୃଷ୍ଣ ପଳାନ୍ତି ଭୟ ଘେନି
ପଛେ ଗୋଡ଼ାନ୍ତି ନନ୍ଦରାଣୀ
ଯାହାର ନାହିଁ ଆଦ୍ୟ ଅନ୍ତ
ଧ୍ୟାନେ ଚିନ୍ତନ୍ତି ମୁନି ସନ୍ଥ
ତାହାଙ୍କୁ ପୁତ୍ର ପ୍ରାପ୍ତେ ମଣି
ପଛେ ଧାମଇଁ ଗୋପାଳୁଣୀ
ପୃଥୁ ନିତମ୍ବ ଗୁରୁଭରେ
ଗୋଡ଼ାଇ ନପାରଇ ଖରେ
ପୁଣି ଗୋଡ଼ାଇ ପଛେ ଝୁଣ୍ଟି
ଘଡ଼ିକେ ଉଠି ଘର୍ମେ ଫୁଟି
କେଶ ଫିଟିଲା ଶ୍ରମଝାଳେ
ଫୁଲ ପଡ଼ଇ ଫିଟି ତଳେ
ଯାହାର ଆଦ୍ୟ ଅନ୍ତ ନାହିଁ
ଯଶୋଦା ପାଇବ ତା କାହିଁ
ଦେଖିଣ ଯଶୋଦା ବିକଳ
ଲେଉଟି ଚାହେଁ ଆଦ୍ୟମୂଳ
ମନେ ବିଚାର ଭବଗ୍ରାହି
ଯଶୋଦାଠାରେ ଦୟା ବହି
ଯେବେ ମୁଁ ଯିବିଟି ପଳାଇ
କେ ମୋତେ ପାରିବ ଗୋଡ଼ାଇ
ମନେ ବିଚାର ଦୟାନିଧି
ରଜ୍ଜୁରେ ହୋଇବଇଁ ବନ୍ଦୀ
ଦେଖିଣ ଯଶୋଦା ବିକଳ
ରହିଲେ ପ୍ରଭୁ ଆଦ୍ୟମୂଳ
ଧାଇଁ ଧଇଲା ଦେବୀ କରେ
ଛଟ ଉଞ୍ଚାଇ କୋପଭରେ । ୮-୧୨
କୃଷ୍ଣଙ୍କୁ ଉଞ୍ଚାଇଲା ଧୀରେ
ଚକ୍ଷୁ ଘଷନ୍ତି ବେନି କରେ
କୃଷ୍ଣ ବିକଳ ଦେଖି ମାତା
ଛଟ ପକାଇ କରେ ଚିନ୍ତା

ବୋଲଇ ବାନ୍ଧିବି ଏହାରେ
ବେପାର କରୁଥିବି ଘରେ
ଗୋଳେ ଖଟାଇ ଥିବି ନିତ
ଏଣେ ନ ଥିବ ମୋର ଚିନ୍ତ
ଏମନ୍ତ ବିଚାରି ଅବଳା
ବେଗେଣ ଗୋଳକୁ ଆଣିଲା
ଦଉଡ଼ି ଆଣିଅଛି ହସ୍ତେ
ଦେଖି କାନ୍ଦନ୍ତି ଗୋପୀନାଥେ
ଅଣ୍ଟାରେ ଯୋଖିଲାକ ନେଇ
ବେନି ଅଙ୍ଗୁଳ ନ ଅଣ୍ଟଇ
ପୁଣି ଯୋଖିଲା ଖଣ୍ଡ ଦୁଇ
ବେନି ଅଙ୍ଗୁଳ ନ ଅଣ୍ଟଇ
ଏମନ୍ତେ ଘରେ ଯେତେ ଥିଲା
ଯୋଖନ୍ତେ ପୁଣି ନ ଅଣ୍ଟିଲା
ସାହି ପଡ଼ିଶା ଯେତେ ଘର
ଦଉଡ଼ି ଆଣେ କୋପଭର
ତାହା ଯୋଖିଲା ବେଗେ ନେଇ
ଦେଖିଲା ପୁଣି ନ ଅଣ୍ଟଇ
କର ଅଙ୍ଗୁଳ ପୁଣି ଯୋଖି
ଦେଖି ଚକିତ ଗୋପଗୋପୀ
ହସିଣ ଦ୍ୟନ୍ତି କରତାଳି
ଯଶୋଦା ଲାଜ ପାଇ ଭଳି
ଗୋପୀ ବୋଲନ୍ତି ହାସବାଣୀ
ଦଉଡ଼ି ନ ପାରିଲୁ ଆଣି
ରାଣୀ ବୋଲାଉ ଗୋପପୁରେ
ବାନ୍ଧି ନ ପାରିଲୁ କୁମରେ
ଶୁଣି ଯଶୋଦା ଲଜ୍ଜା ପାଇ
ଭୂମିକି ନିରେଖି ରହଇ
ଯଶୋଦା ଝାଳେ ଜର ଜର
କାତରେ କମ୍ପଇ ଶରୀର

କେଶ ବସନ ଅସମ୍ଭାଳ
ଖୋସାରୁ ଖସେ ଫୁଲମାଳ
ଯଶୋଦାଶ୍ରମ ଦେଖି ହରି
ନିଜବନ୍ଧନେ ଦୟା କରି
ତକ୍ଷଣେ ଦଉଡ଼ି ଅଣ୍ଟିଲା
କୃଷ୍ଣଙ୍କୁ ରୋଳରେ ବାନ୍ଧିଲା ।୧୧-୧୮
ଯେ ହରି ତିନି ଗୁଣେ ଛନ୍ଦି
ସଂସାର କରି ଅଛି ବନ୍ଦୀ
ତାହା ବାନ୍ଧିଲା ନନ୍ଦନାରୀ
ଭକ୍ତବତ୍ସଳ ହେଣୁ ହରି
ମାତାଙ୍କୁ ଯେତେ ଦୟା କଲେ
ବ୍ରହ୍ମା ଶଙ୍କରେ ନ ପାଇଲେ
କମଳା ସେବି ପଦ୍ମପାଦ
ସେହି ନ ପାଇଲା ପ୍ରସାଦ
ଭକ୍ତ ଜନରେ ଯେତେ ଦୟା
ଜ୍ଞାନୀ ପାଇବେ କାହିଁ ତାହା ।୧୯-୨୧
ଜନନୀ ବାନ୍ଧି ଗଲା ରୋଳେ
ଯାମଳା ଅର୍ଜ୍ଜୁନର ତଳେ
କୃଷ୍ଣ ଚାହିଁଲେ ବୃକ୍ଷ ଦୁଇ
ବିଚାର କଲେ ଭବଗ୍ରାହୀ
ପୂର୍ବେ କୁବେର ବେନି ସୁତେ
ବୃକ୍ଷ ହୋଇଲେ ଭୋଳ ଚିତ୍ତେ
ନାରଦ ଠାରୁଁ ଶାପ ପାଇ
ଅନେକ କାନ୍ଦୁଛନ୍ତି ରହି
ସେ ମୁନି ବୋଲିଛନ୍ତି ଯାହା
ଅବଶ୍ୟ କରିବି ମୁଁ ତାହା
ଏତେ ବିଚାରି ବନମାଳୀ
ରୋଳ ଟାଣିଲେ ପାଦ ଚାଳି
ମିଳିଲେ ବେନି ବୃକ୍ଷମୂଳେ
ଟେକି ଚାହିଁଲେ ବେନିଡ଼ାଳେ ୨୨।୨୩
ସେ ହରି ଚରଣ ପଙ୍କଜ
ସୁଜନ ଜନେ ନିତ୍ୟ ଭଜ
କହଇ ଦାସ ଜଗନ୍ନାଥ
ଶ୍ରୀକୃଷ୍ଣ ବାଳକ ଚରିତ
ଏହା ଶୁଣନ୍ତେ ନରନାରୀ
ହେବେ ତରିବେ ଭବବାରି

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବାଳକ୍ରୀଡ଼ାୟାଂ
ଉଦୁଖଳ ବନ୍ଧନଂ ନାମ ଦଶମୋଽଧ୍ୟାୟଃ ॥୧୦॥

*******

## ଏକାଦଶ ଅଧ୍ୟାୟ

( ମୂଳାନୁସାରେ ଦଶମ ଅଧ୍ୟାୟ )

ଦଶମେଽପାତୟଦ୍ ରିଙ୍ଗନ୍ ଅନ୍ତରା ଯାମଳାର୍ଜ୍ଜୁନୌ ।
ତତସ୍ତାଭ୍ୟାଂ ଚ ଦେବାଭ୍ୟାଂ କୃଷ୍ଣଃ ସ୍ତୁତ ଇତୀର୍ଯ୍ୟତେ ।।

ଯାମଳା ଅର୍ଜ୍ଜୁନ ମୋକ୍ଷଣ । ଏଗାର ଅଧ୍ୟାୟେ ବର୍ଣ୍ଣନ ।।

ପରୀକ୍ଷିତ ଉବାଚ

ଶୁକ ବଚନ ଶୁଣି ରାୟେ
ପଚାରଇ ଶୁକ ମୁନି ପାୟେ
ମନ ଆନନ୍ଦେ ନୃପବର
ମୁନିଙ୍କି ବୋଲଇ ଉତ୍ତର
ହେ ମୁନି ! କୁବେର କୁମରେ
ବୃକ୍ଷ ହୋଇଲେ ଗୋପପୁରେ
କି ଦୋଷ କଲେ ନାରଦରେ
ଶାପ ପାଇଲେ କି ପାପରେ
ତାହାଙ୍କ ଦେହେ ନାହିଁ ରେଷ
ବିଶେଷେ ଗୋବିନ୍ଦର ଦାସ
ଏତେ ଅନୀତ ଆଚରିଲେ
ନିର୍ଗୁଣ ମୁନିଙ୍କି ଛଳିଲେ
ତେଣୁ ହୋଇଲେ ବୃକ୍ଷ ଦୁଇ
ଗୋପନଗରେ ବେନି ଭାଇ
ସେ କଥା କହ ମୁନିବର ?
ନିର୍ମଳ ହେଉ ମୋ ଶରୀର
ମୁନି ବୋଲନ୍ତି ତାହା ଶୁଣି
ହରି ଚରିତ ମନେ ଗୁଣି ।୧।

ଶ୍ରୀ ଶୁକ ଉବାଚ

ନଳ କୁବର ମଣିଗ୍ରୀବ
ତପେ ତୋଷିଲେ ସଦାଶିବ
ପ୍ରସନ୍ନ ହୋଇ ଉମାକାନ୍ତ
ବର ଯାଚିଲେ ବିଶ୍ୱନାଥ
ଶୁଣି ସାନନ୍ଦ ବେନିଭାଇ
କହନ୍ତି ଶିରେ କର ଦେଇ
ଆନ ସମ୍ପଦେ କାର୍ଯ୍ୟ ନାହିଁ
ଶୁଣିମା ତ୍ରୈଲୋକ୍ୟ ଗୋସାଇଁ
ଶତେକ ଯକ୍ଷ ଅପସରୀ
ଆମ୍ଭେ ରମିବୁଁ ହେଗକର
ଅସ୍ତୁ ବୋଇଲେ ଶୂଳପାଣି
ଦଇବ ମିଳାଇଲ ଆଣି
କନ୍ୟା ଶତେକ ଘେନି ସଙ୍ଗେ
ମିଳିଲେ ଗଙ୍ଗାନଦୀ ତଟରେ
ଦଇବେ ନିଦାଘର କାଳ
ତେଣିଁ ପଡ଼ିଲେ ନଦୀ ଜଳ
ବାରୁଣୀ ମଦ୍ୟ କଲେ ପାନ
ହେଲେ ହୋଇଲେ ହତଜ୍ଞାନ
ବସ୍ତ୍ର ପାଲଟି ବୃକ୍ଷ ତଳେ
କନ୍ୟାଏ ପଶିଗଲେ ଜଳେ
କରନ୍ତି ନାନାରଙ୍ଗେ କେଳି
ହାସ ପରିହାସ ତମାଳି ।୨-୪।
ଏମନ୍ତ ସମୟେ ନାରଦ
ଯା'ନ୍ତେ କରନ୍ତି ବୀଣାବାଦ୍ୟ
ଆଶ୍ରମ ନାମେ ବଦରିକା
ତହିଁକି ଯାଉଛନ୍ତି ଏକା
ହରି ଭକତି ହୃଦେ ଧ୍ୟାୟି
ନାଚନ୍ତି ବୀଣା ନାଦ ବାଇ
କନ୍ୟାଏ ଦେଖି ମୁନିବର
ବସ୍ତ୍ର ପିନ୍ଧି ଉଠିଲେ ତୀର
ଭୟେ କମ୍ପନ୍ତି ଥର ହର
ନପୁଣ କୋପେ ମୁନିବର
ଲୁଚନ୍ତି ବୁଦାମାନ ପଛେ
ନାରଦ ଦେଖନ୍ତିପ୍ରତ୍ୟକ୍ଷେ
ଜଳେ କ୍ରୀଡ଼ନ୍ତି ବେନିଭାଇ
ଦେଖିଲେ କନ୍ୟାମାନ ନାହିଁ
ହେଲେ ଚାହିଁଲେ ଦଶ ଦିଗେ
ବସ୍ତ୍ରହିଁ ନାହିଁ କଟୀଭାଗେ
ମଦେ ଅରୁଣ ବେନି ଆଖି
ମୁନିଙ୍କି ଚାହାନ୍ତି ନିରେଖି

ଦେଖି ନାରଦ ମୁନିବର
ବାଣୀ ଶବଦ କଲେ ସ୍ଥିର
କୂଳେ ରହିଲେ ଆଣ୍ଠି ହୋଇ
ଦୟାରେ ବଚନ କହି । ୫-୭

ଶ୍ରୀ ନାରଦ ଉବାଚ

ଏ ବେନି କୁବେର ନନ୍ଦନ
ମନଦ ହୋଇଲେ ହତଜ୍ଞାନ
ଦଇବ କଲା ଯାଙ୍କୁ ନାଶ
ତେଣେ ହୋଇଲା ବୁଦ୍ଧି ଧ୍ୱଂସ
ସ୍ୱଭାବେ ରଜଗୁଣ ଛନ୍ଦେ
ଅଜ୍ଞାନ ହେଲେ ମୋହ ବନ୍ଧେ
କେ ଏହା ପାରୁ ଅନ୍ୟ କରି
ଯାବତ ଥାଇ ଦେହ ଧରି
ବହୁତ ଥିବ ଯାର ଧନ
ବନ୍ଧୁରେ ଶ୍ରେଷ୍ଠ ଯେହୁ ଜନ
ପର ରମଣୀ ଯେହୁ ହରେ
ଯେ ପ୍ରାଣୀ ମଦ୍ୟ ପାନ କରେ
ଜୂଆ ଖେଳନ୍ତି ଭୋଳ ହୋଇ
ବୈର କରନ୍ତି ଲୋଭ ବହି
ଏକ ଆରକେ ହିଂସା ବହି
ନରକେ ପଡ଼ିଥାନ୍ତି ଯାଇଁ
ମାଂସ ଭକ୍ଷଣେ ପଶୁ ମାରେ
ଯେ ଦୟା ଧର୍ମ ନ ବିଚାରେ
ଦେହକୁ ବୋଲନ୍ତି ମୋହର
ପାପକୁ ନାହିଁ ଯାର ଡର
ଅଜ୍ଞାନ ମୋହେ ହୋନ୍ତି ମତ୍ତ
ନରକେ ପଡ଼ନ୍ତି ଭୁରିତ । ୮,୯
ଦେହରୁ ପ୍ରାଣ ଗଲେ ଛାଡ଼ି
ରହଇ ମୃତ ପିଣ୍ଡ ପଡ଼ି
ଭୂଦେବ ନରଦେବ ହେଲେ
ଅନ୍ତେ ଏକଇ ଗତି ଭଲେ
ଚିତା ଅନଳେ ଭସ୍ମହୋଇ
କିଅବା କୃମି ବିଷ୍ଠା ହୋଇ
ଯେ ଦେହ ପାଇଁ ମାରେ ଜନ୍ତୁ
ଅଜ୍ଞାନ ନରକର ହେତୁ
ଜ୍ଞାନ ହୁଅଇ ଏଣେ ଭ୍ରମ
ଜନ୍ମ ମରଣେ ପଥ ଶ୍ରମ । ୧୦
ଏ ଦେହ କହିବା କାହାର
ମାତା ପିତା ବା ବନ୍ଧୁଙ୍କର
କି ଅନ୍ନଦାତା କି ରାଜାର
କି ଅଗ୍ନି ଶ୍ୱାନ ଶୃଗାଳର
କି ଅବା ନିଜର ଏ ଦେହ
କେ ଏହା କହିବ ନିଶ୍ଚୟ । ୧୧
ଅବ୍ୟକ୍ତ ତହୁଁ ଜାତ ହୋଇ
ପୁଣି ସେ ତହିଁରେ ମିଶଇ
ଏ ଦେହ ପାଇଁ ଜନ୍ତୁ ମାରେ
ମୂଢ଼ ନ ହେଲେ କେବା କରେ ।୧୨
ସମ୍ପଦ ମଦେ ଯେହୁ ଅନ୍ଧ
ସମ୍ପଦ ନାଶ ତା ଔଷଧ
ଦରିଦ୍ର ପଣେ ଦୁଃଖ ପାଇ
ଆତ୍ମାକୁ ଜଗତେ ଦେଖଇ । ୧୩
କଣ୍ଟା ନ ବିନ୍ଧେ ଯା ଚରଣ
ସେ କି ଜାଣଇ ସେ କଷଣ
ସୁଖୀ ନ ଜାଣେ ପର ବ୍ୟଥା
ଜୀବ ମାରଣେ ସାମରଥା
ଯାହାର ଦେହେ କ୍ଷତ ହୋଇ
ସେ ଜାଣେ ଦୁଃଖ ସୁଖ ଦୁଇ । ୧୪
ଦରିଦ୍ରଜନ କ୍ଳେଶ ପାଇ
ଇନ୍ଦ୍ରିୟଭୋଗେ ନ ରସଇ

କ୍ଷୁଧାରେ ଶୁଷ୍କ ତା ଶରୀର ଃ
ସେ କାହୁଁ ହିଂସିବ ଅପର ଃ
ଏଣୁ ଦୁଃଖିର ଦୁଃଖିପଣ ଃ
ପରମ ତପସ୍ୟା ସମାନ ଃ
ହରିଭକତ ସାଧୁଜନ ଃ
ସଙ୍ଗ ଲଭିଇ ଅକିଞ୍ଚନ ଃ
ସମ ମଣଇ ଦୁଃଖେ ସୁଖେ ଃ
ତାହାକୁ ନାରାୟଣ ରଖେ । ୧୬।୧୮ ଃ
ଏତେ ବଚନ ମୁନିବର ଃ
ଚଞ୍ଚଳ ଚିତ୍ତ କଲେ ସ୍ଥିର ଃ
ବୋଲନ୍ତି ଦୟା ଭାବ ଚିତ୍ତେ ଃ
ନାଶ ଏ ଯିବେ ଏହିମତେ ଃ
ଭୋଳ ହୋଇଲେ ମଦ ଖାଇ ଃ
ଏବେ ତରିବେ ବେନି ଭାଇ ଃ
ଦେହକୁ ନ ଜାଣନ୍ତି ଭଲେ ଃ
ବୃକ୍ଷ ହୋଇବେ ଏକ ଭୁଲେ । ୧୯ ଃ
କୋପେ ବୋଲନ୍ତି ମୁନିବର ଃ
ଶୁଣ ହେ କୁବେର କୁମର ଃ
ଅର୍ଜୁନବୃକ୍ଷ ରୂପ ହୋଇ ଃ
ଗୋପେ ଜନ୍ମିବ ବେନି ଭାଇ ଃ
ଶତେ ବରଷ ଦେବମତେ ଃ
କୃଷ୍ଣଙ୍କୁ ଭେଟି ଶାପଅନ୍ତେ ଃ
ଭକତ ହେବ କୃଷ୍ଣପାଦେ ଃ
ଶାପୁଁ ତରିବ ଅପ୍ରମାଦେ । ୨୦-୨୨ ଃ
ଏମନ୍ତ ବୋଲି ମୁନି ଗଲେ ଃ
ସେ ଦୁନି ବୃକ୍ଷ ସେ ହୋଇଲେ ଃ
ଶୁଣ ରାଜନ ହରିବାଣୀ ଃ
ଖେଳ ଝାଣିଲେ ଚକ୍ରପାଣି ଃ
ବୃକ୍ଷ ଧଇଲେ ବେନି ହସ୍ତ ଃ
ମନେ ଚିନ୍ତନ୍ତି ଗୋପୀନାଥ ଃ

ନାରଦ ବଚନ ମୋହର
କରିବା ଉଚିତ ବେଭାର
ଦାସବତ୍ସଳ ବ୍ରହ୍ମଚାରୀ
ବୃକ୍ଷଙ୍କ ମଧ୍ୟେ ଗଲେ ପଶି
ଖେଳ ଲାଗନ୍ତେ ବେନି ବୃକ୍ଷେ
ଗୋବିନ୍ଦ ଝାଣିଲେ ପ୍ରତ୍ୟକ୍ଷେ
ଉପୁଡ଼ିଗଲା ବେନି ମୂଳ
ପଡ଼ି କମ୍ପିଲେ ସନ୍ନ ଡାଳ
ଶବଦ ମେଘ ଘଡ଼ଘଡ଼ି
ପଡ଼ିଲା ବୃକ୍ଷ ଦେଶ ମାଡ଼ି
ଦେହ ଲାଗନ୍ତେ ଭାବଗ୍ରାହୀ
ବାହାର ହେଲେ ବେନିଭାଇ
ରୂପେ କି ଦେବା ପଟାନ୍ତର
ଜିଣନ୍ତି ଶଶୀ ଦିବାକର
କୃଷ୍ଣଙ୍କୁ ଦେଖି ବେନି ଭାଇ
ଚରଣେ ଶିର ଦେଲେ ନେଇ
ଚିତ୍ତ ନିବେଶି ବେନି ପାଦେ
ବୋଲନ୍ତି କଣ୍ଠୁ ଗଦଗଦେ ।୨୩।୨୪
କୃଷ୍ଣ ! ପରମାନନ୍ଦ ହରି
ପରମ ପୁରୁଷ ମୁରାରି
ଲୀଳାଏ କରି ବିଶ୍ୱମାୟା
ଭକ୍ତ ଜନରେ କରୁ ଦୟା
ତୋହର ରୂପ ଗୁଣ ଯେତେ
ଆମ୍ଭେ ତା ବର୍ଣ୍ଣିବୁ କେମନ୍ତେ
ପୃଥିବୀ ଆଦି ପଞ୍ଚଭୂତ
ଦଶ ଇନ୍ଦ୍ରିୟ ଆଦି ତତ୍ତ୍ୱ
କାଳ ସ୍ୱଭାବ ଜନ୍ମ ମୃତ୍ୟୁ
ଜୀବ ପରମ ଆତ୍ମାହେତୁ
ଭକତ ଜନ ନିସ୍ତାରଣେ
ଶରୀର ବହୁ ତୁ କାରଣେ

ତୋ ନାମପରମ ମଙ୍ଗଳ
ସ୍ତୁତି କରିବା ଆଦ୍ୟମୂଳ
ଅଷ୍ଟାଙ୍ଗ ଯୋଗେ ଧ୍ୟାନ ଯେନ
ଯାହା ଚିନ୍ତନ୍ତି ବ୍ରହ୍ମଜ୍ଞାନୀ
ନାରଦ ଭେଟିବାର ଫଳେ
ତୋତେ ଦେଖିଲୁଁ ଚର୍ମଡୋଳେ
ଚକ୍ଷୁ ଶ୍ରବଣ ବୁଦ୍ଧି ଶିର
ମନ ବଚନ ବେନି କର
ତୋହର ପାଦେ ନିତ୍ୟେ ଥାଉ
ତୋ ନାମ ଧରି ଦିନ ଯାଉ
ଅନେକ ଜନ୍ମେ ତପ କରି
ତୋତେ ଭେଟିଲୁ ନରହରି
ତୋର ସେବକ ମନ୍ତ୍ରପଣେ
ଖଟିବୁ ତୋହର ଚରଣେ
ଏମନ୍ତେ ବେନି କର ଯୋଡ଼ି
ଆଜ୍ଞା ମାଗିଲେ ପାଦ୍ୟେ ପଡ଼ି ।୨୯।୩୮
ହସି ବୋଲନ୍ତି ଭବଗ୍ରାହୀ
ସାଧୁଙ୍କ ସଙ୍ଗେ ଫଳ ଏହି

ନାରଦ ଭେଟିବାର ଫଳୁଁ
ହେଲେ ତରିଲ ଭବଜଳୁଁ
ମୋହର ପଦେ ଯାର ଧ୍ୟାନ
ମୋ ନାମ କରନ୍ତି ଗାୟନ
ପରେ କରନ୍ତି ଦୟା ଚିତ୍ତ
ମାୟାରେ ନୁହନ୍ତି ମୋହିତ
ଏହାଙ୍କ ଦର୍ଶନ ଯେ ପାଇ
ପାପ ତାହାଙ୍କୁ ନ ଲାଗଇ
ଶୁଣ ହେ କୁବେର କୁମର
ଆନନ୍ଦ ହୋଇ ଯାଅ ଘର
ଭକତି କରି ମୋର ପାଦେ
ମୋତେ ପାଇବ ଅପ୍ରମାଦେ ।୩୯।୪୨
କୃଷ୍ଣ ବଚନ ଶିରେ ଧରି
ଉତ୍ତର ଦିଗେ ଗଲେ ଚଳି ।୪୩
ସେ ହରିଚରଣେ ବିଶ୍ୱାସ
କହିଲ ଜଗନ୍ନାଥ ଦାସ
ଭକ୍ତବତ୍ସଳ ପୀତବାସ
କ୍ଷମା କରିବେ ମୋର ଦୋଷ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଯାମଳାର୍ଜ୍ଜୁନ ଭଞ୍ଜନଂ
ନାମ ଏକାଦଶୋଽଧ୍ୟାୟଃ । ୧୧ ।

—ଃ୦ଃ—

## ଦ୍ୱାଦଶ ଅଧ୍ୟାୟ

( ମୂଳାନୁସାରେ ଏକାଦଶ ଅଧ୍ୟାୟ )

ଏକାଦଶେ ସମାଗତ୍ୟ ବୃନ୍ଦାବନମଥାର୍ଭକୈଃ ।
ବତ୍ସାନ୍ ପାଳୟତାନେନ ହତୌ ବତ୍ସବକାସୁରୌ

ବାଳ ଗୋପାଳ ସଙ୍ଗେ ମିଳି । ବାଛୁରି ରଖୁ ରଖୁ ହରି
ମାଇଲେ ବକ ବତ୍ସାସୁର । ଦ୍ୱାଦଶ ଅଧ୍ୟା ସମାଚାର

ଶ୍ରୀ ଶୁକ ଉବାଚ

ହରି ଚରଣେ ଚିତ୍ତ ଦେଇ
ମୁନି ବୋଲନ୍ତି ରଜା ଶୁହିଁ
ଶୁଣ ସୁମନେ ମହୀପାଳ !
ଗୋପପୁରେ ପଡ଼ିଲା ଚହଳ
ଭାଜ ଅର୍ଜୁନ ବୃକ୍ଷ ପଡ଼ି
ଶବଦ ମେଘ ଘଡ଼ଘଡ଼ି
ଭୟେ କମ୍ପନ୍ତି ଥରହର
ଗୋପାଳେ ହୋଇଲେ ବାହାର
ବୋଲନ୍ତି ଏକ ଆରେ ଶୁହିଁ
କି ଏ ଶବଦ କାହୁଁ ହୋଇ ?
ନିର୍ଘାତ ଶୁଭିଲା ତ ଗୋଳ
ଗଗନେ ନାହିଁ ମେଘମାଳ
କାହୁଁ ଏ ଶବଦ ଶୁଭିଲା ?
ଦେଖିଲେ ଅର୍ଜୁନ ଭାଜିଲା । ୧
ଗୋପାଳେ ମିଳିଲେ ସକଳେ
ଯାମଳା ଅର୍ଜୁନର ତଳେ
ବୋଲନ୍ତି ଭାଜିଲା କେମନ୍ତ ?
ପବନ ନାହିଁ ବଳବନ୍ତ
ଶସ୍ତ୍ରେ ଛେଦିଲା ନାହିଁ କେହି
ଭିତରେ ମଞ୍ଜିକଳା ନାହିଁ
କମ୍ପା ପଡ଼ିଲା ମହୀତଳେ
କେନି ଅର୍ଜୁନ ଏକାବେଳେ । ୨
ଡାଳ ଦେଖନ୍ତେ ଏକ ଏକ
ଦେଖିଲେ ପଡ଼ିଛି ବାଳକ
ଚକିତ ହୋଇ କଲେ କୋଳ
ବନ୍ଧନ ହୋଇଅଛି ଗୋଳ
କେ ନାଶ କଲା ଏଡ଼େ କର୍ମ
ଛନ୍ଦିଲେ ଯଶୋଦା ନନ୍ଦନ । ୩

ବାଳକେ ବୃକ୍ଷମୂଳେ ଥିଲେ
ଗୋପାଳମାନଙ୍କୁ କହିଲେ
ଯଶୋଦା ଗୋଳ ବାନ୍ଧିଗଲା
ତଳେ ତା ସୂତ କାନ୍ଦୁଥିଲା
ବେନି ବୃକ୍ଷର ମଧ୍ୟେ ପଶି
ଗୋଳ ଟାଣିଲା ତଳେ ବସି
ବୃକ୍ଷେ ପଡ଼ିଲେ ବେଗେ ଭାଙ୍ଗି
ଏହାର ଦେହ ସହୁଁ ଲାଗି
ବେନି ପୁରୁଷେ ସେହି ବୃକ୍ଷେ
ବାହାର ହୋଇଲେ ପ୍ରତ୍ୟକ୍ଷେ
ତେଜେ ଗଞ୍ଜଇ ନିଶାକର
ଏହାର ପାଦେ ଦେଇ ଶିର
କି କି ବୋଇଲେ, ତା ନ ଜାଣି
ଉତ୍ତରେ ଗଲେ ଏହିକ୍ଷଣି । ୪
ଶୁଣି ହସିଲେ ଗୋପ ଲୋକେ
ବୋଲନ୍ତି ଏକକୁ ଆରକେ
ବାଳବଚନ କାହିଁ ସତ୍ୟ ?
ମାୟାରେ ମୋହିଲେ ଗୋପୀନାଥ । ୫
ବନ୍ଧନ କଟିଭାରୁ ଫେଇ
ନନ୍ଦର କୋଳେ ଦେଲେ ନେଇ । ୬
ଶୁଣି ମିଳିଲେ ଗୋପନାରୀ
କୃଷ୍ଣଙ୍କୁ ଆଣି କୋଳକରି
ଗ୍ରହ ଶଙ୍କିତେ ପୂଜା ବଳି
କୃଷ୍ଣଙ୍କୁ କଲେ ନଉଛାଳି
ଆନନ୍ଦ କଲେ ଗୀତ ବାଇ
କୃଷ୍ଣ ନାଚନ୍ତି ତାଳ ଗାଇ । ୭
ଗୋପୀ ବୋଲନ୍ତି କୃଷ୍ଣ ଶୁଣ
ଘର ଭିତରୁ ମାଣ ଆଣ
ପାଣ୍ଡୋଇ କଠାଉ ମସୁଣି
ଆଣ ତୁ ଦୁଧର ଦୁହୁଁଣୀ

ଶୁଣି ଗୋବନ୍ଧ ଘରେ ଯାଇ ୪
ଆଣନ୍ତି କନ୍ଧେ ମୁଣ୍ଡେ ବହି ୪
ଥୋଇ କରନ୍ତି କଉଡ଼ିକ ୪
ଆତୁର ଆଣିବଇଁ ଦେଖ ୪
ଭକତ ଜନଙ୍କର ଫଳ ୪
ଗୋପେ ଦେଖାନ୍ତି ନନ୍ଦବାଳ ୪
ଭକତ ଜନେ ଦ୍ୟନ୍ତି ଦେଖା ୪
ଗୋପେ ଅଇଲା କୋଳବଳା । ୮,୯ ୪
ଡାକଇ 'କୋଳ କୋଳ' ବାଣୀ ୪
କୃଷ୍ଣ ଧାଇଁଲେ ତାହା ଶୁଣି ୪
ବସନ ନାହିଁ କଟୀଭାଗେ ୪
ମିଳିଲେ ଧାନରାଶି ଲାଗେ ୪
ଧାନ ଅଞ୍ଜୋଳି କପଟେ ଦେଇ ୪
ବେଗେ ଧାଇଁଲେ ଭାବଗ୍ରାହୀ ୪
ମିଳିଲେ କୋଳବଳା ଆଗେ ୪
ମାଗି ପାତିଲେ ଆଣି ବେଗେ ୪
କୃଷ୍ଣର ଦୃଷ୍ଟି ଅଛି ଫଳେ ୪
ଧାନ ପଡ଼ିଲା ସବୁ ତଳେ ୪
ତକ୍ଷଣେ ଝାଡ଼ି ବେନିକର ୪
ଅଞ୍ଜଳି କଲେ ଦାମୋଦର ୪
ଫଳ ପୂରେଇ ଦେଲା କର ୪
ବୋଲନ୍ତି ପ୍ରଭୁ ଚକ୍ରଧର ୪
ଭାଣ୍ଡେ ତୋ ଅଛି କେତେଫଳ ? ୪
ଟେକି ଚାହିଁଲେ ଆଦ୍ୟମୂଳ ୪
ରତ୍ନ ହୋଇଲା ତତ୍‌କ୍ଷଣେ ୪
ଗୋବନ୍ଦ ଆଜ୍ଞା ପରମାଣେ । ୧୦,୧୧ ୪
ଏବେ ହୋ ଶୁଣ ନରନାଥ ୪
କୃଷ୍ଣର ବାଳକ ଚରିତ ୪
ଗୋକୁଳ ମଧ୍ୟେ ଏକ ନଦୀ ୪
ବହଇ ବୃନ୍ଦାବନ ଭେଦି ୪

ସେ ନଦୀ ତଟରେ ଏକ ଦିନେ
ରାମ ଗୋବନ୍ଦ ତୋଷ ମନେ
ଗୋପବାଳକଗଣ ମେଳେ
ଖେଳନ୍ତି ନାନା କୁତୂହଳେ
ଉଚ୍ଛୁର ଦେଖିଣ ରୋହିଣୀ
ଚଞ୍ଚଳେ ଗଲା କୃଷ୍ଣ ଆଣି
ଡାକନ୍ତି ମଧୁର ବଚନେ
ଗୋବନ୍ଦ ନ ଶୁଣନ୍ତି କର୍ଣ୍ଣେ
କୋପେ ରୋହିଣୀ ବାହୁଡ଼ିଲା
ଯଶୋଦା ସମ୍ମୁଖରେ ମିଳିଲା
ଶୁଣି ଯଶୋଦା ଗଲା ଶରେ
କୃଷ୍ଣ ଦେଖିଲା ନଦୀତଟରେ
ପୁତ୍ରର ସ୍ନେହ ମାୟା ମୋହେ
ସ୍ତନ ଯୁଗଳୁ କ୍ଷୀର ବହେ
କୃଷ୍ଣ କମଳମୁଖ ଚାହିଁ
ଡାକଇ ଅଙ୍ଗୁଳି ଦେଖାଇ
ଆସ ମୋ ତାତ, ପିଅ ସ୍ତନ
ଶ୍ରମେ ଆକୁଳ ତୋ ବଦନ
ଭୋଜନ ହୋଇଲା ଉଚ୍ଛୁର
ଆସ ତୁ ବେଗେ ଯିବା ଘର
ହେ ରାମ ? ଆସ କୃଷ୍ଣ ଘେନି
ବହୁତ ଦେବଇଁ ଲବଣୀ । ୧୨-୧୬
ପିତା ଭୋଜନବେଳ ହୋଇ
ସଙ୍ଗେ ଭୁଞ୍ଜିବ ବେନିଭାଇ
ବାଳକେ ଯାନ୍ତୁ ଯେଝା ଘର
ବେଳ ଯେ ହେଉଛି ଉଚ୍ଛୁର
ଦେହ ତୋ ଧୂଳିରେ ଧୂସର
ଜନ୍ମ ନକ୍ଷତ୍ର ଆଜ ତୋର
ଅରିଷ୍ଟ ଖଣ୍ଡିବେ ତୋହର
ବିପ୍ରଙ୍କୁ ଗୋରୁ ଦାନ କର । ୧୭,୧୮

ଦେଖ ବାଳକେ ତୋର ସଙ୍ଗେ
ବିବିଧ ଅଳଙ୍କାର ଅଙ୍ଗେ
ସ୍ନାନ ଭୋଜନ ଆସି କର
ଦେବଇଁ ନାନା ଅଳଙ୍କାର
ଏମନ୍ତ ବୋଲି ନନ୍ଦରାଣୀ
କର ଧଇଲେ ଚକ୍ରପାଣି
ରାମଙ୍କୁ କାଖରେ ବସାଇ
ଘରେ ମିଳିଲେ ଦେଖା ଯାଇଁ
କରାଇ ସ୍ନାହାନ ଭୋଜନ
ରଞ୍ଜିଲେ ଦୁଇ ଭାଇମନ । ୧୯,୨୦
ଅସ୍ତ ହୋଇଲେ ଦିନକର
ଗୋପାଳେ କରନ୍ତି ବିଚାର
ଏକ ଆରେକ ଅବହେଳେ
ନନ୍ଦର ଘରେ ମେଳ ହେଲେ
ବସିଲେ ନନ୍ଦ ଉପନନ୍ଦ
ମଧ୍ୟେ ଅନନ୍ତ ଆନନ୍ଦକନ୍ଦ
ଗୋପାଳେ କରନ୍ତି ବିଚାର
ଶୁଭ ନ ଦେଖୁ ଗୋପପୁର
କହ କି କରିବା ଉପାୟ ?
ପୁତ୍ରଙ୍କୁ ଉପୁଜିଲା ଭୟ । ୨୧
ଶୁଣି ବୋଲନ୍ତି ଉପନନ୍ଦ
ଯାହାର ଜୀବନ ଗୋବିନ୍ଦ
ଜ୍ଞାନ ବୟସେ ବୃଦ୍ଧପଣ
ଗୋପଙ୍କୁ କହଇ କାରଣ
ଶିରେ ଯୋଡ଼ିଲା ବେନିକର
ଯୁକତେ ବୋଲଇ ଉତ୍ତର
ରହିଲ ନ ଥିବା ଗୋପପୁରେ
ଘର କରିବା ଆନ ଠାରେ
ଅନେକ ପଡ଼ିଲା ପ୍ରମାଦ
ପୁତ୍ର ସେ ଆମ୍ଭର ସମ୍ପଦ
ଦେଖ ଯଶୋଦା ହୃଷ୍ଟ ସଙ୍ଗେ
ସର୍ବ ବାଳକ ନାଶ ଯିବେ
ଅଳପ ଦିନେ ମହାଭୟେ
ଆପଦ ପଡ଼ିଲା ଥୋକାଏ । ୨୨,୨୩
ତୋର ପୁଅକୁ ଦେଖ ନନ୍ଦ
କେତେ ପଡ଼ିଲା ପରମାଦ
ପୂତନା ମୁଖୁଁ ଅଛି ତରି
ଶୂନ୍ୟେ ଦଇତ ନେଲା ହରି
ଶକଟ ଭାଙ୍ଗି ଯେ ପଡ଼ିଲା
ସେବେଳେ ଗୋବିନ୍ଦ ରଖିଲା
ଏବେ ତରିଲା ପରମାଦୁ
ଯାମଳାର୍ଜ୍ଜୁନ ଆପଦୁଁ । ୨୪-୨୬
ରହିଲ ନ ଥିବା ଏ ନଗର
ନାଶ ନ ହେଉ ଗୋପ-ପୁର
ଯଶୋଦା ଯେବେ ନ ଛାଡ଼ିବ
ଏକା ପୁତ୍ରକୁ ନ ପାଇବ
ରହିଲ, ଆପଦ ନୋହୁଁ ଯିବା
ତେବେ ସେ ପୁତ୍ରଙ୍କୁ ପାଇବା । ୨୭
ସକଳେ ଦୃଢ଼ କର ମନ
ଘର କରିବା ବୃନ୍ଦାବନ
ବହୁତ ଫଳ କନ୍ଦମୂଳ
ନିର୍ମଳ ଯମୁନାର ଜଳ
ପର୍ବତ ନାମ ଗୋବର୍ଦ୍ଧନ
ଗୋରୁଙ୍କୁ ଅଛି ଜଳ ତୃଣ
ଗୋପୀଗୋପାଳେ ତୋଷ ହେବେ
ବହୁତ କ୍ଷୀର ଗାଈ ଦେବେ
କାଲି ପ୍ରଭାତୁ ହୁଅ ସଜ
ଘର ଶକଟେ ବେଗେ ସାଜ
ଗୋ-ଧନ ଚଳ ଯାନ୍ତୁ ଆଗେ
ଗୋପବାଳକ ଧେନୁ ସଙ୍ଗେ

ସୁଖେ ରହିବା ବୃନ୍ଦାବନେ
କଷ୍ଟ ନ ଭାଳ ତୁମ୍ଭେ ମନେ । ୨୮,୨୯
ଶୁଣି ମଣିଲେ ଗୋଷ୍ଠ ହିତ
ନିଜ ଭୁବନେ ଉପଗତ
ସେଥିର ଧେନଣ ସମ୍ପଦ
ଯାନ୍ତେ କରନ୍ତି ଶିଙ୍ଗା ନାଦ
ନନ୍ଦଯଶୋଦା ଏକମେଳେ
ରୋହିଣୀ ପୁତ୍ର ଘେନି କୋଳେ
ପଛେ ଚଳନ୍ତି ଗୋପୀଯୂଥ
ଗାବନ୍ତି ନାନା ରଙ୍ଗେ ଗୀତ
ଶକଟମାନ ଯାନ୍ତି ଖରେ
ଧୂଳିରେ ଛନ୍ନ ଦିବାକରେ
ମିଳିଲେ ବୃନ୍ଦାବନ ଯାଇଁ
କୃଷ୍ଣଚରିତ ଗୀତ ଗାଇ
ଗୋପାଳେ ଧନୁଶର ଘେନି
ନାନାଶବଦେ ବେଣୁ ଧ୍ୱନି
ଯାଉଁ ଦେଖିଲେ ବୃନ୍ଦାବନ
ଆନନ୍ଦ ଗୋପାଳଙ୍କ ମନ ।୩୦-୩୪
ଯେ ବନେ ବଜେ ଗୋପୀନାଥ
ସର୍ବଦା ବହଇ ବସନ୍ତ
ସୀମା ଆବୋଶ ଗୋପପୁର
ଯେଥିରେ ତୋଳିଲେ ନବର
ଗ୍ରାମ ମଧ୍ୟରେ ନନ୍ଦଘର
ଯହିଁ ବଜୟେ ଦାମୋଦର । ୩୫
କୃଷ୍ଣ ଦେଖିଲେ ଗୋବର୍ଦ୍ଧନ
ଯମୁନା ନଦୀ ବୃନ୍ଦାବନ
ଦେଖି ସାନନ୍ଦ ବେନିଭାଇ
ବୋଲନ୍ତି ନନ୍ଦକୁ ବସାଇ
ଯେତେ ଅଛନ୍ତି ବତ୍ସ ଘରେ
ଆମ୍ଭେ ରଖିବୁ ନଦୀ ତୀରେ

ହେ ତାତ ! ନାହିଁ ତୁ ନ କର
ବତ୍ସ ରଖିବୁ ଆମ୍ଭେ ତୋର
ନନ୍ଦ ଆନନ୍ଦମନେ କହି
କାଲହୁଁ ବତ୍ସ ରଖ ନେଇ । ୩୬,୩୭
ପିତାର ବଚନେ ମୁରାରି
ଆନନ୍ଦେ ଚରାନ୍ତି ବାଛୁରି
ଗ୍ରାମ ନିକଟେ ଥାନ୍ତି ନିତ୍ୟେ
ବନେ ନ ଯାନ୍ତି ଭୟ-ଚିତ୍ତେ
ବ୍ୟାଘ୍ର ଭଲ୍ଲୁକ ଆଦି ତ୍ରାସେ
ବତ୍ସ ରଖନ୍ତି ଗ୍ରାମ ପାଶେ । ୩୮
ଗୋପାଳ ପୁଏ ଥାନ୍ତି ସଙ୍ଗେ
ଖେଳନ୍ତି ନାନା ରଙ୍ଗ ଭଙ୍ଗେ
କ୍ଷଣ କ୍ଷଣକେ ବେଣୁ ନାଦ
କେ କହୁ ତାଙ୍କର ଆନନ୍ଦ
ଏକ ଆରେକ ଭୁଜ ଧରି
ଯୁଦ୍ଧ କରନ୍ତି ବାଦକରି
ବେଲ ଅଏଁଳା କଣ୍ଟା ଫଳେ
ତୋଳ ଆଣନ୍ତି ବୃକ୍ଷୁଁ ବାଳେ
ଏକ ଆରକେ ମରାମରି
ସାକ୍ଷୀ କରନ୍ତି ରାମ ହରି
ନାନା ପକ୍ଷୀଙ୍କ ନାଦ ଶୁଣି
ପୁଏ ନାଚନ୍ତି ତାହା ଭଣି ।୩୯,୪୦
ଦିନେ ଯମୁନା ତୀରେ ହରି
ଆନନ୍ଦେ ଚରାନ୍ତି ବାଛୁରି
କଂସର ଆଜ୍ଞାରେ ଅସୁର
ଆସି ମିଳିଲା ଗୋପପୁର
କୃଷ୍ଣର ମୁଖକୁ ଚାହିଁଲା
ବାଛୁରି ରୂପକୁ ଧଇଲା
ବତ୍ସ ଗହଳେ ପଶିଅଛି
ରାମଙ୍କୁ ଦେଖାନ୍ତି ଶ୍ରୀବତ୍ସି

ଦେଖି ଦଇତ ବତ୍ସା ପାଶେ
ଆମ୍ଭଙ୍କୁ ମାରିବାର ଆଶେ
ମାୟା ବାଛୁରି ରୂପ ହୋଇ
କହ୍ନ ହସନ୍ତି ବେନି ଭାଇ
ଅସୁର ବିଚାରଇ ମନେ
କୃଷ୍ଣଙ୍କୁ ମାରିବି କେସନେ
ନିକଟେ ମିଳିଲେ ମୋହର
ପାଦେ କରିବି ଶତେ ଚୂର
ତାହା ଜାଣିଲେ ନାରାୟଣ
ମୋହିଲେ କୁମାରଙ୍କ ମନ
କଇଥ ବୃକ୍ଷ ଦେଖି ପୁଏ
ରାମଙ୍କୁ କହିଲେ ଥୋକାଏ
ଏ ଫଳ ଦିଶଇ ସୁସଞ୍ଜ
ହସ୍ତ ନ ପାଏ ବଡ଼ ଉଚ୍ଚ
ତୁ ରାମ ଅତି ବଳୀୟାର
ଫଳ ଥୋକାଏ ବୃକ୍ଷୁଁ ତୋଳ
ଶୁଣି ସାନନ୍ଦ ବନମାଳୀ
ବତ୍ସା ନିକଟେ ଯାଇଁ ମିଳି
ବେନି ଚରଣ ଧରି କରେ
ବୁଲାଇ ପିଟିଲେ ବୃକ୍ଷରେ
କରେ ବୁଲାନ୍ତେ ଚଳି ପ୍ରାଣ
ଗୋବିନ୍ଦେ ପଶିଲା ତକ୍ଷଣ
ଦେବେ ଚକିତ ଦେଖି ତାହା
ବ୍ରହ୍ମାଙ୍କୁ ଲାଗିଲା ଉତ୍ସାହା
ଅସୁର ଦେହ ଲାଗି ଝଡ଼ି
ଫଳ ବୃକ୍ଷରୁ ତଳେ ପଡ଼ି
ବାଳକେ ଦେଖିଣ ଚକିତ
ବୋଲନ୍ତି ଧନ୍ୟ ନନ୍ଦ ସୁତ
ଆନନ୍ଦେ ଦେବେ କଲେ ସ୍ତୁତି
କୃଷ୍ଣଙ୍କୁ କଲେ ପୁଷ୍ପବୃଷ୍ଟି ।୪୧-୪୪

ଏମନ୍ତେ ରାମ ବନମାଳୀ
ବତ୍ସା ରଖନ୍ତେ ନାନା କେଳି
ସକାଳେ ଦଧି ଗୁଡ଼ ଅନ୍ନ
ଭୁଞ୍ଜନ୍ତି ରାମ-ଭଗବାନ
ନିତ୍ୟେ ଯମୁନାକୂଳେ ଯାଇଁ
ବତ୍ସା ରଖନ୍ତି ବେନି ଭାଇ
ବାଳକେ ଯେତେ ବତ୍ସା ଘେନି
ଚରାନ୍ତି କରି ବେଣୁ ଧ୍ୱନି
ଦିନେ ନଦାଘେ ଖରବେଳେ
ମିଳିଲେ ଯାଇଁ ନଦୀଘାଟରେ
ବତ୍ସାଙ୍କୁ ପିଆଇ ବହନ
ସକଳେ କଲେ ଜଳପାନ
କଂସର ମିତ୍ର ବକାସୁର
ସଧୀରେ ନିହାରଇ ନୀର
କୃଷ୍ଣଙ୍କୁ ଦେଖି କାମରୂପୀ
କ୍ଷଣ କ୍ଷଣକେ ଦେହ ବ୍ୟାପି
ନିଜ ସ୍ୱଭାବେ ମହାକାୟେ
ଦେଖି ଡରିଲେ ଗୋପପୁଏ
ଏ ବନେ ଏଡ଼େ ବକ ଥାଇ
କହନ୍ତି ରାମଙ୍କୁ ଦେଖାଇ
ଗୋପାଳ ପୁଏ ପରଶଂସି
ପଞ୍ଚଖଣ୍ଡ ପ୍ରାୟେ ଦିଶି
ନାସେ ଉଠିଲେ ବେଗେ ଖର
ଦେଖି ଧାଇଁଲା ବକାସୁର
ଘୋର ଶବଦ ବେଗେ କଲା
ତକ୍ଷଣେ କୃଷ୍ଣଙ୍କୁ ଗିଳିଲା ।୪୫-୪୮
କୃଷ୍ଣ ନ ଦେଖି ଗୋପ ବାଳେ
ତଳ ପଡ଼ିଲେ ମହୀତଳେ
ଉଠିଣ କରନ୍ତି ରୋଦନ
ଚକିତେ ରହିଁ ଛନଛନ

ବକର ତାଙ୍କୁ ମୁଖେ ଥାଇଁ
ତାହା ଜାଣିଲେ ଭାବଗ୍ରାହୀ
ଦାସବତ୍ସଳ ନରହରି
ବେଗେ ଅନଳରୂପ ଧରି
ତପତ ଫାଳ ଯେହ୍ନେ ତେଜ
ତାଙ୍କୁ ଦହିଲେ ଦେବରାଜ
ତକ୍ଷଣେ ଘୋର ନାଦକରି
କୃଷ୍ଣଙ୍କ ପକାଇ ଉଦ୍‌ଗାରି
ଧୀରେ ଗୃହିଁଲା ବକାସୁର
ପୁଣି ଧାଇଁଲା ରୋଷଭର । ୪୯,୫୦
ଅସୁର ମନେ ବିଚାରଇ
କୃଷ୍ଣର ଦେହେ କ୍ଷତ ନାହିଁ
ଏହାର ସୁକୁମାର ପିଣ୍ଡ
ଥଣ୍ଟେ କରିବି ଖଣ୍ଡ ଖଣ୍ଡ
ବିସ୍ତାର ବେନି ପାଟି ତୋଳି
ବେଗେ ଧାଇଁଲା ମହାବଳୀ
ଶୂନ୍ୟେ ଦେଖନ୍ତି ଦେବଗଣ
ଆଗ ହୋଇଲେ ନାରାୟଣ
କରେ ଧଇଲେ ବେନି ପାଟି
ଅସୁର ନ ପାରିଲା ଲୁଟି
ବାଳକ ମେଳେ ଯେ ଶ୍ରୀହରି
ଚିରିଲେ ବେନି ଫାଳ କରି । ୫୧
ଦେଖି ମିଳିଲେ ବୃନ୍ଦାରକେ
କୁସୁମ ବରଷନ୍ତି ତୋଷେ
ବାଳକ ଦେଖିଣ ଚକିତ
ମାୟା ମୋହିଲେ ଗୋପୀନାଥ
ତକ୍ଷଣେ ଆଲିଙ୍ଗନ କରି
ଗୋପକୁ ଅଣିଲେ ବାଙ୍କୁଶ୍ରୀ
ପୁଏ ରହିଲେ ସେଠା ଘରେ
ପୁଣି ମିଳିଲେ ନନ୍ଦ ଦ୍ୱାରେ
ବକର ତୁଣ୍ଡୁ ଉବୁରିଲା
ଭାଗ୍ୟ ଗୋ ଯଶୋଦାର ଥିଲା
ଚକିତ ହୋଇ ଗୋପ ଗୋପୀ
କୃଷ୍ଣଙ୍କୁ ଗୃହାନ୍ତି ନରେପି
ବୋଲନ୍ତି ଧର୍ମ ତିନ ଲୋକେ
ସତ୍ୟ ବେଭାର ଜନ ମୁଖେ
ନିର୍ଦ୍ଦୋଷ ପ୍ରାଣୀ ହିଂସା କରି
ଆପଣେ ଯେ ଉଛନ୍ତି ମରି
ଏ ପୁଅ ବାଳକ ସ୍ୱଭାବେ
ଏହାଙ୍କୁ ହିଂସନ୍ତି ଦାନବେ
ତେଣୁ ହୁଅନ୍ତି ମୃତ୍ୟୁ ଯୋଗ
ଅନଳେ ଯେସନେ ପତଙ୍ଗ
ପଣ୍ଡିତ ଜନଙ୍କର କଥା
କାଳେହେଁ ନୁହଁଇ ଅନ୍ୟଥା
ଯାହା କହିଲେ ଗର୍ଗଋଷି
ରାମ କୃଷ୍ଣଙ୍କ ପରଶଂସି
ସେ କଥା ହୋଇଲା ପ୍ରମାଣ
ଏହାକୁ ରଖେ ନାରାୟଣ
ଆପଦ ଦେଖି ନନ୍ଦରାୟେ
ଶାନ୍ତି ଯେ କରନ୍ତି ଥୋକାଏ
ଗୋପେ ଗୋବିନ୍ଦ ଅଙ୍ଗ ସଙ୍ଗେ
ଚରିଲେ ଭବଜନ୍ତୁ ରଙ୍ଗେ । ୫୨-୫୮
ସେ ହରି ଚରଣେ ବିଶ୍ୱାସ
କହିଲେ ଜଗନ୍ନାଥ ଦାସ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବୃନ୍ଦାବନ ଗମନେ
ବତ୍ସାସୁର ବକାସୁରବଧୋ ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

# ତ୍ରୟୋଦଶ ଅଧ୍ୟାୟ

( ମୂଳାନୁସାରେ ୧୨ଶ ଅଧ୍ୟାୟ )

ଦ୍ୱାଦଶେ ତୁ ମହାସର୍ପ-ବପୁର୍ଧରମଘାସୁରଂ ।
ବତ୍ସପାଳଗିଳଂ କୃଷ୍ଣୋ ଗଳେଽହନନ୍ତି ବର୍ଣ୍ଣ୍ୟତେ ॥୦॥

ସର୍ପ ସ୍ୱରୂପେ ଅଘାସୁର । ଗିଳନ୍ତେ ବତ୍ସ ଗୋପବାଳ ।
ଶ୍ରୀକୃଷ୍ଣ କଲେ ତାର ବଧ । ତ୍ରୟୋଦଶରେ ଏ ସମ୍ବାଦ ॥୦॥

ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସ ମୁନିଶିଷ୍ୟ
ଶୁଣ ରାଜନ ! କୃଷ୍ଣ ରସ
ଗୋପ ନଗରେ ଶିଶୁରଙ୍ଗ
ଖେଳନ୍ତି କୁମାରଙ୍କ ସଙ୍ଗ
ଦିନେ ରହନ୍ତି ବୃନ୍ଦାବନେ
ଘରେ ମିଳନ୍ତି ରାତ୍ରମାନେ
ଏମନ୍ତେ ବୃନ୍ଦାବନେ କେଳି
ରାମ ଗୋବିନ୍ଦ, ବନମାଳୀ
ଦିନେକ ପ୍ରଭୁ ଦେବରାଜା
ରାତ୍ରହୁଁ ଉପେକ୍ଷିଲେ ଶଯ୍ୟା
ରଜନୀ ଅଛି ତେବେ ଘଡ଼ି
ନିଦ୍ରା ଉପେକ୍ଷି ନରହରି
ଜନନୀ ରାଇ ବନମାଳୀ!
ପଯ୍ୟରେ କଲେ ନିଉଛାଳି
ଆଜ ମୁଁ ନ ଭୁଞ୍ଜିବି ଘରେ
ଅନ୍ନ ପୁଡ଼ାଏ ଦିଅ ମୋରେ
ଦଇବେ ନିଦାଘର କାଳ
ଖରା ଲାଗିଲେ ବଢ଼େ ଝାଳ
ଶୀତଳ ବେଳେ ଯିବି ବନ
ଅନ୍ନ ସେ ଦିଅ ଗୋ ବହନ
ଶୁଣି ସାନନ୍ଦ ନନ୍ଦରାଣୀ
ଅନ୍ନ ବାଢ଼ିଲା ଘରୁ ଆଣି
ନାନା ବ୍ୟଞ୍ଜନ ଗୁଡ଼ ଦଧି
ପୁଡ଼ା ଗୋଟିଏ ଦେଲେ ବାନ୍ଧି
ଶିକାରେ ଘେନି ଅନ୍ନ ପୁଡ଼ା
ଶିଙ୍ଗା କାହାଳି ବେତ ଯୋଡ଼ା
ଛନ୍ଦ ଦଉଡ଼ି କାନ୍ଧେ ଘେନି
ଗୋବିନ୍ଦ କଲେ ଶିଙ୍ଗା ଧ୍ୱନି
ଗୋପକୁମରେ ଥିଲେ ଶୋଇ
କର୍ଣ୍ଣେ ପଶିଲା ନାଦ ଯାଇଁ
ଯେଝାଁର ନାମ ଧରି ଡାକି
ବାଳକେ ଶଯ୍ୟା ଉପେକ୍ଷି
ନନ୍ଦର ଘରେ ଯାଇଁ ମିଳି
ଦେଖିଲେ ପ୍ରଭୁ ବନମାଳୀ
ବୋଲନ୍ତି ପ୍ରଭୁ ଦେବରାଜ
ଆମ୍ଭର ପ୍ରାୟେ ହୁଅ ସଜ
ଶୁଣି ମିଳିଲେ ଯେଝା ଘରେ
ଅନ୍ନ ଘେନିଲେ ବାମକରେ
ବେଣୁ କଉଡ଼ି ଶିଙ୍ଗା ବେତ
ବାଛୁରି ଫେଡ଼ିଲେ ସମସ୍ତ
ମୁରଲୀ ବଜାଇ ତୁରନ୍ତେ
ବାହାର ହେଲେ ଗୋପସୁତେ ॥୧,୨

ଅନ୍ତ କରିବ କେତେ ମୁହିଁ
ବାଛୁରି ଗଣିତା ନ ଯାଇ
ଚଳାଇ ବତ୍ସା ଯୂଥ ଯୂଥ
ପଛେ ବ୍ରଜସ୍ୱେ ଗୋପୀନାଥ
ବନେ ପଶନ୍ତ ଏକମେଳେ
ଶୁଭଇ ମୁଖରାବ ଗୋଳେ
ସକଳେ ଏକରୁଣ୍ଡ ହୋଇ
ନାଚନ୍ତ ଗାଲଭୁରି ବାଇ
ଖେମଟା ଛନ୍ଦେ କରତାଳି
ମଧ୍ୟେ ବ୍ରଜସ୍ଥ ବନମାଳୀ
ମଣି ମୁକୁତା କର୍ଣ୍ଣଫୁଲ
ନୂପୁର କଙ୍କଣ ଅମୂଲ୍ୟ
କଟୀ ମେଖଳା ରତ୍ନ ଛନ୍ଦ
ଶିରରେ ଗୁଞ୍ଜମାଳ ବାନ୍ଧି
ଶିରେ ମୟୂରପୁଚ୍ଛ ଚୂଳ
କର୍ଣ୍ଣରେ କୋମଳ ପତର
ରଙ୍ଗ ମୃତ୍ତିକା ଦେହେ ବୋଳି
ପଇତା ଛନ୍ଦେ ପୁଷ୍ପମାଳ
କଙ୍କଣ ନୂପୁର ଶବଦେ
ନାଚନ୍ତି ଏକୁ ଆରେ ନାଦେ । ୩,୪
କେ କାହା ଅନ୍ନପୁଡ଼ା ବଳେ
ନେଇ ଲୁଗନ୍ତି ବୁଦାତଳେ
କେ କାନ୍ଧ କୃଷ୍ଣଙ୍କୁ କହନ୍ତି
ଆଜ୍ଞା ପ୍ରମାଣେ ଆଣିଦ୍ୟନ୍ତି । ୫
ଏକ ଆରକେ ଜଡ଼ି କରି
ଧାଇଁଣ ଛୁଅନ୍ତି ମୁରାରି
କେ କାହା ନାମ ଧରି ବାଦେ
ଦୂରୁ ଡାକନ୍ତି ବେଣୁ ନାଦେ
ଶୁକ କୋକିଳ ନାଦ ଶୁଣି
ଗୋପ କୁମରେ ତାହା ଭଣି

ପକ୍ଷୀ ଉଡ଼ନ୍ତେ ଛାୟା ଦେଖି
ଧାମନ୍ତି ବାଛୁରି ଉପେକ୍ଷି
ଦେଖି ମୟୂର ହଂସ ଚାଲି
ପୋଏ ଚାଲନ୍ତି ପେଲାପେଲି
ବକଙ୍କ ସଙ୍ଗେ ଯାଇ ବସି
ଭେକଙ୍କ ଭୁଲେ ଯାନ୍ତି ଖସି
ବାନରପୁଅଙ୍କୁ ଧରନ୍ତି
ଖେଳାଇ ପୁଶ ଗୁଡ଼ଦ୍ୟନ୍ତି
ସେ ଯାଇ ଉଠନ୍ତି ବୃକ୍ଷରେ
ପଲ୍ଲବେ ଲୁଚନ୍ତି କାତରେ
ପୋଏ ହୁଅନ୍ତି ସେହିମତ
ଡାକନ୍ତି ଆସ ଗୋପୀନାଥ । ୬-୯
ଆପଣା ଛାୟା ଦେଖି ଜଳେ
ହସନ୍ତି ନାନା କୁତୂହଳେ
କାନନେ ପ୍ରତିନାଦ ଶୁଣି
ହସନ୍ତି ନାନା ଗାଳି ଭଣି । ୧୦
ଏମନ୍ତେ ଗୋବିନ୍ଦର ମେଳେ
ବାଳକେ ନାନା କୁତୂହଳେ
ଅନେକ ଜନ୍ମେ ତପ କରି
ନିକଟେ ପାଇଲେ ମୁରାରି
କେ କହୁ ତାଙ୍କ ପୁଣ୍ୟ ଫଳ
ବେଦ ନ ଜାଣେ ଆଦ୍ୟମୂଳ । ୧୧
ଅନେକ ଯୋଗ ଯଜ୍ଞେ ବନ୍ଧ
ମନପବନ ହୃଦେ ଛନ୍ଦ
ଜ୍ଞାନୀ ଚିନ୍ତନ୍ତି ଯୋଗବଳେ
ସେ ଖେଳେ ଗୋପାଳଙ୍କ ମେଳେ
ମନୁଷ୍ୟ ଦେହ ମଧ୍ୟେ ବହି
କେ ପାରେ ତାଙ୍କ ପୁଣ୍ୟ କହି
ଯାହାର ପାଦରଜ ପାଇ
ଆନନ୍ଦେ ଶଙ୍କର ନାଚଇ

ଯା ନାମ ଗୁଣ ବେଦେ ଭଣେ
ସେହୁ ଗୋପାଳ ସଙ୍ଗେ ଜଣେ ।୧୨
ଏମନ୍ତେ ଶୁଣ ନରନାଥ !
ଅଘା ନାମେଣ ସେ ଦଇତ
କଂସର ମିତ୍ରପଣେ ହୋଇ
ମିଳିଲା ବୃନ୍ଦାବନେ ଯାଇଁ
ବୃଷର ଉହାଡେ ରହିଲା
ଗୋପାଳ ପୁଅଙ୍କୁ ଗ୍ରହିଁଲା
ମଧ୍ୟେ ଦେଖିଲା ଭଗବାନ
ହୃଦରେ ଶ୍ରୀବତ୍ସର ଚିହ୍ନ
ବୋଲଇ ଏ ମୋର ବଇରୀ
ବେନି ସୋଦର ଅଛି ମାରି
କଂସକୁ କରିବ ଏ ନାଶ
ଯାଦବେ ଏହାର ବିଶ୍ୱାସ
ନିଶ୍ଚୟ ରିପୁ ଏ ମୋହର
ମାରିଛି ବେନି ସହୋଦର
ମୋ ଜ୍ୟେଷ୍ଠଭ୍ରାତ ବକାସୁର
ପୂତନା ବହେଣୀ ମୋହର
ସୋଦରେ ଜଳ ତିଳ ଦେଇ
ଆଜ ଯେ ଉଦ୍ଧାରିବି ମୁହିଁ
ଯେତେ ବାଳୁତ୍ୱ ଗୋପପୁଏ
ମୋତେ ଦିଶନ୍ତି ଫଳ ପ୍ରାୟେ
ଜିହ୍ୱା ମୋହର ତମା ପାବି
କୁଶ ହୋଇବ ଦିନନ୍ତେ
ଖର ନିଃଶ୍ୱାସ ମନ୍ତ୍ରସ୍ୱରେ
ତର୍ପଣ କରିବ ଉଦରେ
ଗୋପେ ମିଳିବ ଗ୍ରାସେ ଯାଇଂ
ଗିଳିବ ଯେତେ ଜନ୍ତୁଗାଈ
ତେବେ ହୋଇବ ମନ ସ୍ଥିର
ଆକାଶେ ବସିବେ ସୋଦର

ପୁଣି ବଗୁରୁ ଅଛି ରହି
ଗୋକୁଳେ ମୋର କାର୍ଯ୍ୟ ନାହିଁ
ବାଳକ ବାଛୁରି ସମେତେ
ଏ ବେନି ଗିଳିବି ତୁରିତେ
ପୁଅଙ୍କୁ ନ ପାଇଲେ ମାଏ
ଗ୍ଳାଣ ମରିବେ ଥୋକାଏ
ଏମନ୍ତେ ସାଧିବ ବଇରୀ
ଗିଳିବ ସର୍ପରୂପ ଧରି
ବିଗୁର କଲା ଏହି ମତ
ଅସୁର ଅତି ବଳବନ୍ତ
ଯାହାର ନାମେ ଦେବେ ଡରି
ଗଗନେ ପଡ଼ିଥାଇ ହୁରି
ଅମୃତ ଖାନ୍ତି ଦେବଗଣ
ଚିନ୍ତନ୍ତି ଅସୁର ମରଣ
ଯେବେ ମରିବ ଅଘାସୁର
ସ୍ୱର୍ଗେ ହୋଇବୁ ଆମ୍ଭେ ସ୍ଥିର
ବ୍ରହ୍ମା ଡରଇ ନିରନ୍ତର
ଶୂନ୍ୟେ କମ୍ପନ୍ତି ଯାତପୁର
ଅଘାଙ୍କ ନାମେ ଥରହର
ଭୟେ କମ୍ପଇ ସୁନାଶୀର । ୧୩-୧୫
ହୋଇଲା ଅଜଗର ରୂପୀ
ଯୋଜନଯାଏ ଦେହ ବ୍ୟାପି
ପୂର୍ବଦିଗକୁ ମୁଖ କଲା
ସ୍ୱଭାବେ ତୁଣ୍ଡ ବିସ୍ତାରିଲା
ଉପର ପାଟି କଲା ମେଘେ
ଅଧର ଓଷ୍ଠ ମହୀଭାଗେ
ଜିହ୍ୱା ଝୁଲଇ ଅନ୍ତରାଳ
ଦନ୍ତ ପର୍ବତ ଶୃଙ୍ଗମାଳ
ତୁଣ୍ଡ ଦିଶଇ ଅନ୍ଧକାର
ବିଷ ପବନ ଖରତର । ୧୬,୧୭

ପଶ୍ଚିମ ଦ୍ୱାରେ ପଶନ୍ତ ଚଳି
ଗୋପ ଗୋ-ବତ୍ସା ବନମାଳୀ
ମାୟାଦେହର ମୁଖ ଲାଗେ
ପୋଏ ମିଳିଲେ ଆସି ବେଗେ
ଖର ପବନ ବହେ ଶ୍ୱାସ
ଦେହେ ଲାଗନ୍ତି ବଡ ତ୍ରାସ
ଚକିତେ ଚଉଦିଗେ ଗୁହାଁ
ବାଳକେ ବତ୍ସରନି ରହି
କି ଏ ଦିଶିଲ ଗିରିଖଣ୍ଡ
ବିସ୍ତାର କରିଅଛି ତୁଣ୍ଡ
କେ ବୋଲେ ମେଘ କାମରୂପୀ
ଭୂମି ଗଗନ ଅଛି ବ୍ୟାପି । ୧୮,୧୯
କେ ବୋଲେ ସର୍ପ ଏ ସ୍ୱରୂପ
ଅରୁଣ ବେନ ପାଟି ଦେଖ
ଆମିଷ ପ୍ରାୟେ ପୂତିଗନ୍ଧ
ରୁଷ ପବନ ମନ୍ଦ ମନ୍ଦ
କେ ବୋଲେ ପୋଡୁଅଛି ବନ
ଜନ୍ତୁଏ ହୁଅନ୍ତି ଦହନ
ତେଣୁ ଆମିଷ ଗନ୍ଧ ଦେଖ
ଏହାକୁ ଭଲେହେଁ ନ ଦେଖ
ବାମ ଦକ୍ଷିଣେ ଜିହ୍ୱା ଗୁଳା
ଗୁଞ୍ଜିଲା ବାଟ ପ୍ରାୟ ଝଳ । ୨୦-୨୩
ଜାଣିଲୁ ସର୍ପ ଏ ଶରୀର
ମରଣ ହୋଇଲା ଆମ୍ଭର
ଥୋଇଲେ ବୋଲନ୍ତି କପାଁ ଡର
ଆମ୍ଭର କୃଷ୍ଣ ବଳୀୟାର
ଯେବେ ଏ ଆମ୍ଭଙ୍କୁ ଗିଳିବ
ବକର ପ୍ରାୟେ ନାଶ ଯିବ
କ୍ଷଣକେ ମରିବଟି ଏହୁ
ଏମନ୍ତ ପଛକୁ ଅନାଇ ..

ହସିଲେ କରତାଳି ମାରି
ଆଗରେ ଅଡ଼ାନ୍ତି ବାଛୁରି
କେ ବୋଲେ ଆଗ ହୋ ନ ପଶ
ନିକଟେ ନାହିଁ ପୀତବାସ
ଗୁହାଁଲେ ହରି ଛନ୍ତି ଦୂରେ
ଡାକନ୍ତି କୃଷ୍ଣ ଆସ ଖରେ
ଦୂରୁଁ ଡାକନ୍ତି ଚକ୍ରଧର
ନ ପଶ ସର୍ପର ଉଦର
ନ ଜାଣି ସଙ୍ଗେ ଏକମେଳେ
ଯେତେ ବାଛୁରି ଗୋପବାଳେ
କୃଷ୍ଣର ବୋଲ ନ ଶୁଣିଲେ
ଅସୁର ଉଦରେ ପଶିଲେ
କୃଷ୍ଣ ଧାଇଁଲେ ମାୟାମୋହେ
ଡାକନ୍ତି ରହ ରହ ପୋଏ । ୨୪-୨୭
ତୁଣ୍ଡ ନିକଟେ ଚକ୍ରଧର
ଦେଖି ବିଚାରଇ ଅସୁର
ଏହାର ନାମ ବାସୁଦେବ
ଏ ସେ କଂସକୁ ସଂହାରିବ
ଗର୍ଭେ ପଶିଲେ ମୋର ଯେତେ
ବଇରୀ ନୁହନ୍ତି ବାଳୁତେ
ଏ ମୋର ସୋଦର ସଂହାରି
ବିଶେଷେ କଂସର ବଇରୀ
ଗର୍ଭେ ପଶିବ ଯେତେବେଳେ
ପାଟି ମାଡ଼ିବି ଅବହେଳେ
ହରି ଜାଣନ୍ତି ତାର ମନ
ବିଚାର କଲେ ଭଗବାନ
ଯେବେ ନ ପଶିବଇଁ ମୁହିଁ
ବଞ୍ଚା ବାଳକ ଆଉ କାହିଁ
ଅସୁର ଉଦର ଅନଳ
ତୃଣ ପ୍ରାୟେକ ଗୋପବାଳ

କି ବୁଦ୍ଧି କରିବଇଁ ଆଜ
ହେଲାଏ ହରାଇଲି କାର୍ଯ୍ୟ
କେମନ୍ତେ ମାରିବି ଅସୁର
ବାଳକେ ହୋଇବେ ବାହାର
କୃଷ୍ଣ ଗୃହ୍ନିଲେ ସ୍ଥିର ଦୃଷ୍ଟି
ଅସୁର ନ ପାଉଇ ପାଟି
ଦେବେ ଦେଖନ୍ତି ଶୂନ୍ୟେ ରହି
ତୁଣ୍ଡେ ପଶିଲେ ଭବଗ୍ରାହୀ ।୨୮
ଦେଖେ କରନ୍ତି ହା ହା କାର
ପାଟି ପାଡ଼ିଲା ଅଘାସୁର
ଅସୁର ହୋଇଲା ଆନନ୍ଦ
ଦେବଙ୍କୁ ଲାଗିଲା ବିଷାଦ ।୨୯
ସର୍ପ ଉଦରେ ଭଗବାନ
ଜାଣିଲେ ଦେବତାଙ୍କ ମନ
ଦାସବତ୍ସଳ ନନ୍ଦବାଳା
ରୁନ୍ଧିଲେ ଦାନବର ଗଳା
ଗିଳି ନ ପାରେ ସେ ଦଇତ
ଶବଦ କଲା ଗର୍ଭଗତ
ପ୍ରାଣ ହୋଇଲା ଛଟପଟ
ଫୁଲିଲା ଅସୁରର ପେଟ
ଆକୁଳ ହୋଇ ମହାକାୟେ
କଣ୍ଠେ ବଢ଼ିଲେ ଦେବରାୟେ
ବଢ଼ନ୍ତେ ଗୋବିନ୍ଦ ଶରୀର
ତାଳୁ ଫାଟିଲା ଧାଡ଼ିକରି
ପ୍ରାଣ ତା ଗଲା ଶୂନ୍ୟ ପଥେ
କୃଷ୍ଣ ପଶିଲେ ଗର୍ଭଗତେ
ଅମୃତ ନୟନେ ଗୃହ୍ନିଲେ
ସକଳେ ଜୀବନ ପାଇଲେ
ଉପରେ ଦେଖି ତାଙ୍କ ଦ୍ୱାର
ଗୋପକେ ହୋଇଲେ ବାହାର

ଆଗେ ବାଛୁରି କଲେ ପାର
ଗର୍ଭେ ରହିଲେ ନରହରି
ଦେଖିଲେ ଗର୍ଭେ କେହି ନାହିଁ
ବାହାର ହେଲେ ଭବଗ୍ରାହୀ ।୩୦-୩୨
ଅଘାଜୀବନ ଶୂନ୍ୟେ ଗଲା
ପୁଣି ଲେଉଟି ଅନାଇଲା
ତାଙ୍କୁ ବାହାର ବ୍ରହ୍ମବଶ
କଳାମେଘରୁ ଯେହ୍ନେ ଶଶୀ
ଜୀବନ ଲେଉଟିଲା ବେଗେ
ତେଜ ବିରାଜେ ଦଶଦିଗେ
ସ୍ୱର୍ଗେ ଦେଖନ୍ତି ଦେବତାଏ
ପଶିଲା ଗୋବିନ୍ଦର ଦେହେ ।୩୩
ଦେଖି ଚକିତ ତିନି ପୁର
ଦେବେ କରନ୍ତି ଜୟକାର
କୁସୁମ ବୃଷ୍ଟି କଲେ ଆଣି
ବ୍ରାହ୍ମଣେ ଜୟ ସ୍ତୁତି ଭଣି
ନାଚନ୍ତି ଅପସରାବୃନ୍ଦ
ଗନ୍ଧର୍ବେ ବାଦ୍ୟ ଗୀତ ନାଦ
ଆକାର୍ବିଶ କଲେ ଜୟେ ଜୟେ
ଶୁଭିଲା ବ୍ରହ୍ମଲୋକ ଯାଏ
ବ୍ରହ୍ମାର ସମାଧି ଭାଜିଲା
ବିମାନେ ବସି ବିଜେ କଲା
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ
ସ୍ତୁତି କରଇ ତୋଷମନେ
କୃଷ୍ଣ ମହିମା ବ୍ରହ୍ମା ଦେଖି
ତୋଷେ ବୁଜିଲା ଅଷ୍ଟ ଆଖି
କୃଷ୍ଣ ମହିମା ମନେ ଗୁଣି
ଚତୁର ମୁଖେ ବେଦ ଭଣି
ସୁଜନ ଶୁଣ ସାବଧାନେ
ସନ୍ଦେହ ନ କର ତୁ ମନେ

ମନୁଷ୍ୟ ଦେହେ ଅବତାର
ପଞ୍ଚ ବରଷ ଚକ୍ରଧର
ଏଡ଼େ ଦୈତ୍ୟକୁ ସଂହାରିଲେ
ଗୋପ ଗୋବତ୍ସାଙ୍କୁ ତାରିଲେ
ଏମନ୍ତ ନ କର ବିଗ୍ଭର
କୃଷ୍ଣେ ପଶିଲ୍ ଅଘାସୁର
ମିଶ ଅଇଲା ନାହିଁ ଯା'ର
ଭାବକୁ ଥାଇ ନିକଟର
ଯା ପାଦ ମୁନି ପୂଜାକରି
ହେଲେ ତରନ୍ତି ଭବବାରି
ଗୋପେ ଗୋପାଳେ ଯାର ସଙ୍ଗେ
ତରିଲେ ମାୟାର ତରଙ୍ଗେ
ଏକଥାମାନ କଉତୁକେ
ପୁଣ କହିଲେ ବରଷକେ
ଆଜ ମାରିଲେ ସର୍ପ ହରି
ଶୁଣି ବିଷାଦ ଗୋପନାରୀ । ୩୪-୩୯

ଶ୍ରୀ ସୁତ ଉବାଚ

ଅଘା ଦଇତ ନାଶ ଶୁଣି
ପରୀକ୍ଷ ମନେ ମନେ ଗୁଣି
ହରି ଚରିତ ଅଗୋଚର
ଦେଖି ଚକିତ ବେଦବର
ସନ୍ଦେହ ବାକ୍ୟ ଶୁଣି ରାଜ୍ୟୁ
ନମଇଁ ଶୁକମୁନି ପାଦ୍ୟୁ ।୪୦

ରାଜୋବାଚ

ହେ ମୁନି ଭୁତ ପୁଣ୍ୟଚେତା
ହରିବିଷୟେ ତୋର ଚିନ୍ତା
ସନ୍ଦେହ ଫେଡ଼ିବା ମୋହର
ମାୟା କି କଲେ ଚକ୍ରଧର
ସର୍ପଉଦରୁଁ ଚକ୍ରଧର
ତାରିଲେ ବାଳୁତ୍ସ କୁମର
ମାତାଙ୍କ ଆଗେ ଗୋପସୁତେ
କହିଲେ ବରଷକ ଅନ୍ତେ
ସର୍ପ ଆମ୍ଭକୁ ଗିଳିଥିଲା
ଶ୍ରୀକୃଷ୍ଣ ଆଜ ଗୋ ଦେଖିଲ୍
ଏକଥା ସନ୍ଦେହ ତ ମୋତେ
କହ ମୁନି ! ନ ଯାଇ ପରତେ
ବରଷେ ପୋଏ ଥିଲେ କାହିଁ ?
କିବା ମୋହିଲେ ଭାବଗ୍ରାହୀ
ଏ କଥା ମୋତେ କଉତୁକ
କାହିଁ ବଞ୍ଚିଲେ ବରଷକ ?୪୧,୪୨
ମୋର ଜୀବନ ଆଜ ସୁଖ
ତୋ ବାଣୀ ଶୁଣି ଗଲ୍ ଦୁଃଖ
କ୍ଷତ୍ରିୟ ଅଂଶେ ମୁହିଁ ଜାତ
ଧନ୍ୟ ମୋହର ତାତ ମାତ
ହରି ଚରିତ୍ର ସୁଧା ଜଳ
ତୋ ମୁଖୁ ଗଳୁଛି ନିର୍ମଳ
ସେ ଜଳେ ଧୋଇ ମୋର ଚିତ୍ତ
ମରଣେ ହୋଇବ ନିଶ୍ଚିତ । ୪୩

ଶ୍ରୀ ସୁତ ଉବାଚ

ଶୁଣି ପରୀକ୍ଷବାଣୀ କର୍ଣ୍ଣେ
ମୁନି ବସିଲେ ଯୋଗଧ୍ୟାନେ
ଆନନ୍ଦେ ପୁଲକିତ ହୋଇ
ଗୋବିନ୍ଦ ପାଦେ ଚିତ୍ତ ଦେଇ
ନେତ୍ର ଲୋତକୁ ବହେ ନୀର
ବୋଲନ୍ତି ଶୁଣ ନୃପବର ।୪୪
ଯମୁନାକୂଳେ ଅଘା ନାଶ
ବୋଲଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅଘାସୁରବଧୋ
ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

# ଚତୁର୍ଦ୍ଦଶ ଅଧ୍ୟାୟ

ମୂଳାନୁସାରେ ୧୩ଶ ଅଧ୍ୟାୟ

ତତ୍ରୈବାଦଶୋଽହରଦ୍ବ୍ରହ୍ମା ବତ୍ସାନ୍ ପାଳାଂଶ୍ଚ ମାୟୟା ।
ତଦା ତତ୍ସର୍ବରୂପୋଽହଂ କୃଷ୍ଣଃ ପୂର୍ବବଦାଚରତ୍ । ୦ ।

କୃଷ୍ଣଙ୍କ ବନ୍ୟଭୋଜବେଳେ । ବ୍ରହ୍ମା ଆସିଣ ବତ୍ସବାଳେ
ଯେମନ୍ତ କରିଲେ ହରଣ । ଚତୁର୍ଦ୍ଦଶରେ ତା ବର୍ଣ୍ଣନ ।୦।

ଶ୍ରୀ ଶୁକ ଉବାଚ ॥ ଦେଖ ସୁସଞ୍ଚ ବାଳବୃନ୍ଦ
॥ ଗୃହାଁନ୍ତେ ଲଗଚ ଆନନ୍ଦ
ହରି ସେବକ ଶିରୋମଣି ॥ ନିର୍ମଳ ବାଳି ନଦୀତୀର
ଶୁଣ ହେ। ଭାଗବତ ବାଣୀ ॥ ଶୀତଳ ବହଇ ସମୀର
ସାଧୁଙ୍କ ମଧ୍ୟେ ତୁମ୍ଭେ ସାଧୁ ॥ ନାନା କୁସୁମ ଜଳ ସ୍ଥଳ
ତରିବୁ ଭବ ପରମାଦୁଁ ॥ ସୁବାସ ବହେ ପରିମଳ
ଯେତେ କହିଲ ଭାଗବତ ॥ ଶୁକ କୋକିଳ ନାଦ ଶୁଣି
ତୋଷ ନୋହିଲା ତୋର ଚିତ୍ତ ॥ ଭ୍ରମର ମନୋହର ଧ୍ୱନି
ସାଧୁଜନଙ୍କର ଏ ଗତି ॥ ନବ ପଲ୍ଲବ ତରୁଗଣ
ଯେସନେ ବିଟପୀ ଯୁବତୀ ॥ ମୟୂରକଣ୍ଠ ନାଦ ସ୍ୱନ
ସ୍ୱାମୀସେବାରେ ଥାଇ ମନ ॥ ଏଠାରେ ହୁଅ ଏକମେଳ
ବିଟପେ କରିଥାଇ ଧ୍ୟାନ ॥ ବୋଲନ୍ତି ପ୍ରଭୁ ଆଦ୍ୟମୂଳ
ସଂସାରେ ଥାଇ ଯେ ଏମନ୍ତ ॥ ବତ୍ସା କରନ୍ତୁ ଜଳପାନ
ନିକଟେ ପାଇ ସେ ଅନନ୍ତ ॥ ସକଳେ କରିବା ସ୍ନାହାନ
ଏବେ ତୁ ଶୁଣ ସ୍ଥିର ହୋଇ ॥ ଦେଖ କୋମଳ ଘାସ ତୀରେ
ଭାବ ସେବକ ଏହା କହି । ୧-୩ ॥ ବାଛୁରି ଚରନ୍ତୁ ସଧୀରେ
ମରଣୁଁ ତରି ଗୋପବାଳେ ॥ ଅନ୍ନ ଭୋଜନ ବସି କର
ମିଳିଲେ ଯମୁନାର କୂଳେ ॥ ପଞ୍ଚ ପରଣ ହେଉ ସ୍ଥିର
ନିର୍ମଳ ଦେଖି ବାଳବୃନ୍ଦ ॥ ବେଳହିଁ ହେଉଛି ଉଚ୍ଛୁର
ଶ୍ରୀକୃଷ୍ଣ ହୋଇଲେ ଆନନ୍ଦ ॥ କ୍ଷୁଧାଏ ଦେହ ଥରହର
ଗୋପକୁମରଙ୍କୁ ଅନାଇ ॥ ମରଣୁଁ ଉବୁରିଲ ଆଜ
ବୋଲନ୍ତ ପ୍ରଭୁ ଭବଗ୍ରାହୀ ॥ ପେଟ ପୁରେଇ ଅନ୍ନ ଭୁଞ୍ଜ

ତୁମ୍ଭ ମନକୁ ଯେ ଯୋଗାଇ
ହସି ବୋଲନ୍ତି ଭବଗ୍ରାହୀ । ୪-୭
କୃଷ୍ଣର ବାକ୍ୟ ଶୁଣି ପୋଏ
ଆନନ୍ଦ ହୋଇଲେ ଥୋକାଏ
ଚାହିଁଲେ କୃଷ୍ଣଙ୍କୁ ଆନନ୍ଦେ
ଅନ୍ନ ଥୋଇଲେ ବାଳକୁଦେ
ବତ୍ସାଙ୍କୁ ଜଳ ପିଆଇଲେ
କୋମଳ ଘାସେ ଗୁଡ଼ିଦେଲେ
ଗୋପାଳେ ସାରିଲେ ସ୍ନାହାନ
ସନ୍ତୋଷେ କଲେ ଜଳପାନ
ଖରେ ଉଠିଲେ ଧାଡ଼କାରେ
ଅନ୍ନ ଫେଡ଼ିଲେ ଯେ ଯାହାରେ
କେ ବୃକ୍ଷଡାଳୁଁ ପତ୍ରଆଣି
ବସ୍ତ୍ରୁ ସୁନ୍ଦର ସିଞ୍ଚେ ପାଣି
ପାଷାଣ ଆଣନ୍ତି କେ ଯାଇ
ଅନ୍ନ ବାଢନ୍ତି ତାହା ଧୋଇ
ବସ୍ତ୍ର ପାରନ୍ତି ପୀତ ନୀଳ
କେ ବୃକ୍ଷୁଁ ଆଣନ୍ତି ବକଳ
ଯେ ଯାହା ମତେ ଅନ୍ନ ଥୋଇ
କୃଷ୍ଣ ବୋଲନ୍ତି ତାହା ଚାହିଁ
ଅନ୍ନ ଦେଖାଅ ସବୁ ମୋତେ
ବ୍ୟଞ୍ଜନ ଆଣିଛ କେ କେତେ
ଶୁଣି ସାନନ୍ଦ ମନେ ପୋଏ
ମଧ୍ୟେ ବସିଲା ଦେବରାୟେ
ଯେ ଯାହା ଅନ୍ନପୁଡ଼ା ଫେଡ଼ି
ଦେଖାନ୍ତି ବେନିକର ଯୋଡ଼ି
ଦେଖ ଗୋବିନ୍ଦ ମୋର ଭାତ
ବ୍ୟଞ୍ଜନ ଆଣିଛୁ ବହୁତ
ବଗଡା ଅନ୍ନକେ ଆଣିଲୁ
ବେଲ୍ କରଡ଼ି ଲୁଣ ଅଁଳା

କେ ବୋଲେ ଦଧି ଅନ୍ନ ମୋର
ନିର୍ମଳ ଦେଖ ନନ୍ଦଧର ।
କେ ବୋଲେ ଭୁଜା ଅନ୍ନ ମୋର
ଭୁଞ୍ଜିବ ପଛେ ଗୋଟି ଘର
ଏମନ୍ତେ ଅନ୍ନ ଦେଖାଇଲେ
ବେଢି ଗୋବିନ୍ଦକୁ ବସିଲେ
ସୁନ୍ଦର ପଦ୍ମଦଳ ପ୍ରାଏ
ସ୍ୱର୍ଗେ ଦେଖନ୍ତି ଦେବତାଏ ।୭-୧୦
ଶ୍ରୀକୃଷ୍ଣ ଭୁଞ୍ଜିବାର ଆଶେ
ବେଣୁ ଖୋସିଲେ ବାମ ପାଶେ
କାଖେ ଯାକିଲେ ଶିଙ୍ଗା ବେତ
ଅନ୍ନ ପୁଡ଼ାଏ ବାମହସ୍ତ
ଅଙ୍ଗୁଳି ସନ୍ଧିରେ ଅଁଳା
ହୃଦେ ଲମ୍ବଇ ବନମାଳା
ବିବିଧମତେ ପରିହାସ
ଗୋପକୁମରେ ହସ ହସ
ପଙ୍କ୍ତିଭୋଜନ-ବାଳକେଳି
ଦେଖନ୍ତି ସ୍ୱର୍ଗଲୋକେ ମିଳି
ମଧ୍ୟେ ବସାଇ ପୀତବାସ
ବାଳକେ ହୁଅନ୍ତି ହରଷ
ଆନନ୍ଦ ଗୋପାଳଙ୍କ ମନ
ଏମନ୍ତେ କରନ୍ତି ଭୋଜନ
ବ୍ରହ୍ମା ଯେ ଦେଖିଥିଲା ଶୂନ୍ୟେ
ଆସି ମିଳିଲା ବୃନ୍ଦାବନେ
ଦେଖିଣ ଗୋ ବାଳର ଚିତ୍ତ
ମନେ ଚିନ୍ତଇ ବେଦପତି
ଅଳପ ବୟସେ ଭଗବାନ
ଗୋକୁଳେ ପଡ଼ି ହେଲେ ଭ୍ରମ
ଆମ୍ଭାକୁ ନ ଚିହ୍ନଇ କିଛୁ
ଗୋପାଳ ମେଳେ ଭୁଞ୍ଜୁ ଅଛୁ

ଏହାକୁ ମାୟା ମୁଁ କରିବ
ବତ୍ସା ବାଳକ ହରି ନେବ
ଦେଖିବ ଏହାର ସକଳ
କେମନ୍ତେ ରଖିବ ଗୋକୁଳ
ଏମନ୍ତ ବିଚାରଇ ବସି
ଅନ୍ନ ଭୁଞ୍ଜନ୍ତି ବ୍ରଜବାସୀ
କୋମଳ ତୃଣ ଚରି ଚରି
ଗହନେ ପଶିଲେ ବାଛୁରି
ମଧ୍ୟାରେ ବ୍ରହ୍ମା ତାହା ହରି
ଥୋଇଲା କମଣ୍ଡଳେ ଭରି
ଗୋପାଳେ ବତ୍ସା ନ ଦେଖିଲେ
ଅନ୍ନ ଭୋଜନ ଉପେକ୍ଷିଲେ
ବନକେ ଚନ୍ଦ୍ରବଦନେ ଗୁହାଁ
ବୋଲନ୍ତି କୃଷ୍ଣଙ୍କୁ ଅନାଇଁ
ନିକଟେ ବତ୍ସା ଦିଶୁନାହାଁ
ଯେଣୁ ପରେ ଆଣିବା ଅଡ଼ାଇ
ଶୁଣି ବୋଲନ୍ତି କୃଷ୍ଣ ହସି
ମୁହିଁ ଆଣିବ ବନେ ପଶି
ସୁଖେ ଭୋଜନ ତୁମ୍ଭେ କର
କହି ଉଠିଲେ ଚକ୍ରଧର
ପଞ୍ଚ ଦେଯ ଗ୍ରାସ ଛିଣ୍ଡି ଧରି
ଅନ୍ନ ପଡ଼ାଏ ହସ୍ତେ ଧରି
ଗିରି କାନନ ନଦୀ ତୀରେ
ଲୋଡ଼ନ୍ତି ଘର୍ମ୍ମ ଜରଜରେ
କୃଷ୍ଣ ନ ଦେଖି ବେଦପତି
ମିଳିଲା କୁମାରଙ୍କ କତି
ମାୟାରେ ବଳେ ଜ୍ଞାନ ହରି
ପୁଅଙ୍କୁ କମଣ୍ଡଳେ ଭରି
ବୃନ୍ଦାବନକୁ ଅନାଇଲା
ନିଜ ଭୁବନେ ବିଜେ କଲା । ୧୧।୧୫

ବତ୍ସା ନ ପାଇ ବନମାଳୀ
ଭୋଜନ ସ୍ଥାନେ ଯାଇଁ ମିଳି
ଦେଖିଲେ ଗୋପପୁଏ ନାହାଁ
ବିଚାର କଲେ ଭବଗ୍ରାହୀ
ବିଧାତା ମୋତେ ମାୟା କରି
ବତ୍ସାବାଳକ ନେଲା ହରି
ମୋତେ ଦେଖାଇଲା ସ୍ୱଭାବ
ଆଜ ଗଞ୍ଜିବି ତାର ଗର୍ବ
ଗୋପଯୁବତୀଙ୍କର ହିତେ
ବ୍ରହ୍ମାଙ୍କୁ ଗଞ୍ଜିବା ନିମନ୍ତେ
ଉଭୟ ରୂପେ ଅଙ୍ଗୀକାରି
ବତ୍ସାବାଳକ ରୂପ ଧରି
ଯେତେ ବାଛୁରି ଗୋପପୁଏ
ଜାତ ହୋଇଲେ କୃଷ୍ଣଦେହେ
ଯାହାର ଯେମନ୍ତ ସ୍ୱଭାବ
ମାୟା ଉଆଣ ପଦ୍ମନାଭ
ବିବିଧ ରଙ୍ଗେ କାଛ ପିନ୍ଧି
ଗୁଞ୍ଜ ମୟୂରପକ୍ଷ ବାନ୍ଧି
ବେଣୁ କଠାଉ ଶିଙ୍ଗା ବେତ
ଯାହାର ସ୍ୱରୂପ ଯେମନ୍ତ
କର ଚପୁର ଶିକା ଡୀଳ
ଖଞ୍ଜି ମୁକୁତା ବଦମାଳ
ବଚନ କହନ୍ତି ଯେମନ୍ତ
ମଧ୍ୟ ବାମନ ଉଚ ସଞ୍ଚ
ଓଁ କାରୁ ଯେସନ୍ତେ ବେଦ ଷର
ସବୁ ସ୍ୱରୂପ ନରହରି
ବେଳ ହୋଇଲା ଅସ୍ତକାଳ
ଗୋଠେ ଚଳିଲେ ନନ୍ଦବାଳ
ଆଗେ ବାଛୁରି ଆଗେ ପୋଏ
ଆମ୍ଭାକୁ ଆପଣେ ଅଡ଼ାଏ

ପ୍ରବେଶ ଗୋପପୁର ଲାଗେ
ପୋଏ ନାଚନ୍ତି ନାନାରଙ୍ଗେ ।୧୭,୨୧
ମୂରଲୀ ଶୁଣି ଗୋପନାରୀ
ପାଶ୍ଳେଷ୍ଟି ଗଲେ ଆଗସରି
ପୁତ୍ରଙ୍କୁ ଦେଖି ସ୍ନେହଭରେ
ହୃଦେ ଚାପିଲେ ଟୋଳି କରେ
ଆନନ୍ଦ କେ ପାରିବ କହି
ସ୍ତନ ପିଆନ୍ତି ଚୁମ୍ବ ଦେଇ
ଗୋବତ୍ସା ଗଲେ ଯେଝାଘରେ
ଗୋପୀ ମିଳିଲେ ନିଜ ପୁରେ
ପୁତ୍ରଙ୍କୁ ମାଜଣା କରାଇ
ଦଧି ଲବଣୀ ଅନ୍ନ ଦେଇ
ଯେଝାରେ କରାଇ ସ୍ନାହାନ
ଆନନ୍ଦ ଗୋପୀଙ୍କର ମନ
ଘରେ ଅଇଲେ ବନୁଁ ଗାଈ
ହୁଂକାର ନାଦେ ବେଗେ ଧାଇଁ
କୋଳେ ଆବୋରି ବତ୍ସା ଲେହି
ସ୍ତନ ପିଆନ୍ତେ ସ୍ନେହ ବହି ।୨୨,୨୪
କି ପୁଣ୍ୟ ଗୋପୀ ଜନଙ୍କର
କୋଳେ ଧଇଲେ ଚକ୍ରଧର
ପୂର୍ବେ ଅଛନ୍ତି ତପ କରି
ସ୍ତନ ପିଆନ୍ତି ନରହରି
ଭାଗ୍ୟ କେ କହୁ ତାହାଙ୍କର
ଯାହା ନ ପାନ୍ତି ବ୍ରହ୍ମା ହର
ଏ କଥା ନ ଜାଣନ୍ତି କେହି
ମାୟା ଭିଆଣ ଭବଗ୍ରାହୀ
ନିତ୍ୟେ ଚରାନ୍ତି ବତ୍ସା ବନେ
ଗୋପେ ମିଳନ୍ତି ରାତ୍ରମାନେ
ଏମନ୍ତେ ପୂରିଲା ବରଷ
ଶୁଣ ସୁଜନ କୃଷ୍ଣରସ । ୨୫-୨୭

ଦିନେକ ରାମ ଧେନୁ ସଙ୍ଗ
ବନେ ଚଳିଲେ ଶିଶୁରଙ୍ଗ
ପର୍ବତ ନାମ ଗୋବର୍ଦ୍ଧନ
କାଳିନ୍ଦୀ ତୀରେ ଘୋର ବନ
ଗୋପକୁମର ଧେନୁ ହରି
ସେ ବନେ ଚରାନ୍ତି ବାଛୁରି
ପର୍ବତେ ଗାଈ ଚରୁଥିଲେ
ତଳେ ବତ୍ସାଙ୍କୁ ଅନାଇଲେ
ଦେଖି ଧାଇଁଲେ ଅତି ଖରେ
ତଳେ ମିଳିଲେ ସ୍ନେହଭରେ
ସ୍ତନ ପିଆନ୍ତି ଦେହ ଲେହି
ହୁଙ୍କାର ନାଦେ ସର୍ବ ଗାଈ
ଗୋପାଳେ ଥିଲେ ଗିରି ପରେ
ତଳେ ମିଳିଲେ ଧାଡିକାରେ
ନିଜ ବାଳକ ଦେଖି ତଳେ
ସ୍ନେହେ କରିଲେ କାଖ କୋଳେ
ଚୁମ୍ବନ ଦେଇ ହୃଦେ ଚାପି
ସ୍ନେହେ ବୁଡିଲେ ବେନି ଆଖି ୨୮,୩୪
ଗୋରୁ ଗୋପୀଙ୍କ ସ୍ନେହଭର
ଦେଖନ୍ତି ରୋହିଣୀ କୁମର
ଭାଳନ୍ତି ବୃକ୍ଷତଳେ ରହି
ଏମନ୍ତ ଦେଖିଲିତ ନାହିଁ
ପୂର୍ବରୁଁ ସ୍ନେହତ ଅତ୍ୟନ୍ତ
ଏକଥା ଜାଣିବା କେମନ୍ତ
ଏ କଥା ସନ୍ଦେହ ଲାଗିଲା
କିବା ଗୋବିନ୍ଦ ମାୟା କଲା
ରାମ ଚାହିଁଲେ ଯୋଗବଳେ
ଯେତେ ବାଛୁରି ଗୋପବାଳେ
ଦିଶନ୍ତି ଚାରି ଚାରି ଭୁଜ
କୋଟିଏ କାମ ଜିଣି ତେଜ

ପୀତ ବସନ କଟୀ ମାଝେ
ମଣିକୁଣ୍ଡଳ ରବି ଗଞ୍ଜେ
ଦେଖି ଚକିତ ହଳଧର
କୃଷ୍ଣଙ୍କୁ କହନ୍ତି ମଧୁର
ଦେବତା ଋଷି ଏ ନୁହନ୍ତି
ତୋହର ପ୍ରାୟେକ ଦିଶନ୍ତି
ନିଜ ବାଳକ ବତ୍ସ କାହିଁ
ଦୋଚହୁଁ ଆନ ନ ଦିଶଇ
ମାୟା କି କରିଅଛୁ ମୋତେ
କେମନ୍ତେ ଯିବଇଁ ପରତେ ?
ହସି ବୋଲନ୍ତି ନନ୍ଦ ବାଳା
ବ୍ରହ୍ମା କପଟ ମୋତେ କଲା
ଅନ୍ନ ଭୋଜନ ଦେଖି ମୋର
ବତ୍ସବାଳକ ନେଲା ପୁର
ଏମାନ ଭିଆଇଲି ମୁହିଁ
ଶୁଣିମା ସାବଧାନ ହୋଇ
ଶୁଣି ସାନନ୍ଦ ବଳରାମ
କୃଷ୍ଣଙ୍କୁ ଦିଅନ୍ତି ଚୁମ୍ବନ
ଗୋପେ ମିଳିଲେ ସନ୍ଧ୍ୟାକାଳେ
ଶୟନ ଯଶୋଦାର କୋଳେ
ରଜନୀ ହୋଇଲା ପ୍ରଭାତ
ବନେ ଚଳିଲେ ଗୋପୀନାଥ ।୩୫।୩୧
ବ୍ରହ୍ମା ଯେ ବତ୍ସ ହରି ନେଲା
ମର୍ତ୍ତ୍ୟକୁ ବରଷେ ହୋଇଲା
ବିଧାତା ବିଚାରଇ ମନେ
କୃଷ୍ଣ ଭେଟିବି ବୃନ୍ଦାବନେ
କେମନ୍ତ କଲେ ଦାମୋଦର
ଆଜ ଦେଖିବି ଗୋପପୁର
ବ୍ରହ୍ମା ବିଚାରି ଏହା ମନେ
ବେଗେ ମିଳିଲା ବୃନ୍ଦାବନେ

ଦେଖିଲା ଯମୁନାର କୂଳେ
ବତ୍ସ ବାଳକ କୃଷ୍ଣ ମେଳେ
ମୁରଲୀ ବାଇ ନାନା ଛନ୍ଦେ
ବାଳକେ ନାଚନ୍ତି ଆନନ୍ଦେ
ନିଶ୍ଚିନ୍ତେ ଚରନ୍ତି ବାଛୁରି
ମଧ୍ୟେ ବିଜୟ ନରହରି
ଦେଖି ଚକିତ ପ୍ରଜାପତି
ବନେ ଗୁହାଁଇ ଚଉକତି
ଚକିତ ହୋଇ ଛନ ଛନ
ବିଧାତା ବିଚାରଇ ମନ
ବତ୍ସ ବାଳକ ମୁହିଁ ନେଇ
ମାୟା ଶୟନେ ଅଛି ଥୋଇ
ଏହାକୁ କାହୁଁ ଭିଆଇଲା
ଏମନ୍ତ ବୋଲି ବାହୁଡ଼ିଲା
ଦେଖିଲା ନିଜପୁରେ ଯାଇଁ
ବତ୍ସବାଳକେ ଛନ୍ତି ରହି
ପୁଣି ମିଳିଲା ନନ୍ଦଘୋଷରେ
ବାଳକେ ଅଛନ୍ତି ସେଠାରେ
ଆନନ୍ଦେ ଚରନ୍ତି ବାଛୁରି
ନାଚନ୍ତି ବେଣୁନାଦ କରି
ଉଭୟ ସଙ୍କଟେ ବିଧାତା
ମନେ ପାଇଲା ଗୁରୁ ଚିନ୍ତା
ପୁଣି ଦେଖିଲା ଯାଇଁ ଘରେ
ଆସି ମିଳିଲା ନନ୍ଦଘୋଷରେ
ବିଧାତା ବିଚାରି ଚକିତ
ବୋଲଇ ଏତ ବିପରୀତ
ମୋର ଭୁବନେ ଶୋଇଛନ୍ତି
ପୁଣି ଏ ବନେ ଚରୁଛନ୍ତି
ଏହାଙ୍କୁ କାହୁଁ ଏ ଆଣିଲା
ମୋତେ ତ ସନ୍ଦେହ ଲାଗିଲା

କ ବୁଦ୍ଧି କରିବଇଁ ଆଜ
ମୋତେ ହୋଇଲା ବଡ଼ ଲଜ
ଯେବେ ମୁଁ ଦେବ ବତ୍ସା ଆଣି
କୋପ କରିବେ ଚକ୍ରପାଣି
କିବା ମୋହର ବଡ଼ପଣ
ହାସ୍ୟ କରିବେ ଦେବଗଣ
କରିବି କେବଣ ଉପାୟ
ନ ପୂଣ କୋପେ ଦେବରାୟ
କୋପ କରିଣ କ୍ଷିରବସ୍ତ୍ରୀ
ଆନ ବ୍ରହ୍ମାଏ ଭିଆଇଛି
ନୁହଇ ମୋହର ସଞ୍ଚଲ
ଆନ ବ୍ରହ୍ମା କ ଭିଆଇଲା
ବାଳକ ବାଛୁରି ଭିଆଇ
ଗୋବିନ୍ଦ ଅଛି କ ଲୁଚଇ । ୪୦।୪୩
ନିଜ ମାୟାରେ ନିଜେ ଜଡ଼
ବ୍ରହ୍ମା ଭ୍ରମିଲା ପ୍ରଥ ହୁଡ଼
ମାୟା ମୋହିଲେ ଭଗବାନ
ଆନ ମାୟାଯେ ବଡ଼ମାନ
ଘୋର ଅନ୍ଧାର ରାତ୍ରମାନେ
କୁହୁଡ଼ ଦିଶେ କ ଗଗନେ
ଦିବସେ ଜୁଳୁଜୁଳା ପୋକ
ପ୍ରକାଶି ପାରେ କ ଆଲୋକ ।୪୪,୪୫
ତକ୍ଷଣେ ହୋଇଲା ସଚରାଚ
ପୁଣ ରୁହିଁଇ ଭୟଚିତ୍ତ
ଯେତେ ବାଛୁରି ଗୋପବାଳେ
ବ୍ରହ୍ମାଙ୍କୁ ଦିଶନ୍ତି ସକଳେ
ନୀଳ ଜଳଦ ତନୁକାନ୍ତି
ପୀତ ବସନ ଝଟକନ୍ତି
ଶ୍ରବଣେ କୁଣ୍ଡଳ ବିରାଜେ
ରବିକିରଣ ତେଜ ଗଞ୍ଜେ

ଶ୍ରୀବତ୍ସ ଚିହ୍ନ କଣ୍ଠେ ମଣି
କଣ୍ଠୀରେ ରତ୍ନ ଓଡ଼ିଆଣି
ମର୍କତ ସ୍ତମ୍ଭ ଭୁଜ ଚାରି
ଶଙ୍ଖ କମଳ ଗଦାଧାରି
ଦକ୍ଷିଣ କରେ ଚକ୍ର ଶୋହେ
ରୂପେ କୋଟିଏ କାମ ମୋହେ
କରେ କଙ୍କଣ କଣ୍ଠେ ହାର
ଚରଣେ ବାଜେଣି ନୂପୁର
କୋମଳ ତୁଳସୀର ମାଳ
କଣ୍ଠୁଁ ଲମ୍ବଇ ପାଦତଳ
ବିକଚ କମଳ ଲୋଚନ
ଅଧର ବିମ୍ବଫଳ ବର୍ଣ୍ଣ
ଯାର ମହିମା ପରିମାଣି
ବେଦ ପୁରାଣେହେଁ ନ ଜାଣି
ସ୍ତୁତି କରନ୍ତି ସୁରମୁନି
ପାଦେ ଖଟନ୍ତି ପଦ୍ମଯୋନି
ଅଶେଷ ବ୍ରହ୍ମାଣ୍ଡ ଠାକୁର
ବ୍ରହ୍ମାଏ ସେବନ୍ତି ପ୍ରଚୁର
ପୂଜନ୍ତି ନାନା ଉପହାରେ
ନୃତ୍ୟ କରନ୍ତି ଗୀତ ସ୍ୱରେ
ସ୍ତମ୍ଭରୁ ବ୍ରହ୍ମ ପରିଯନ୍ତେ
ବ୍ରହ୍ମାଣ୍ଡେ ଅଛନ୍ତି ଯେ ଯେତେ
ପଞ୍ଚ ଇନ୍ଦ୍ରିୟ ପଞ୍ଚଭୂତ
ଯେ ଅଧିଷ୍ଠାତା ଦଇବତ
ବୁଦ୍ଧି ଚେତନା ଅହଂକାର
ଯେତେ ଏ ମନର ବିକାର
ଯେଝା ବିଷୟ ଅନୁରୂପେ
ଖଟନ୍ତି ବ୍ରହ୍ମାଙ୍କ ସମୀପେ
ଅଣିମା ଆଦି ଅଷ୍ଟ ନିଧି
କାଳ ସ୍ୱଭାବ କର୍ମ ସିଦ୍ଧି

ସୃଷ୍ଟି କରନ୍ତି ଅପ୍ରମିତ
ଚଞ୍ଚଳ ବ୍ରହ୍ମାଙ୍କର ଚିତ୍ତ
ଖଟନ୍ତି ଗୋବିନ୍ଦ ପୟର
ଦେଖି ଚକିତ ବେଦବର
କୋଟି ଅଂଶରେ ତୁଲ୍ୟ ନୋହେ
ସ୍ୱରୂପ ବ୍ରହ୍ମାଙ୍କର ପ୍ରାୟେ । ୪୬-୫୫
ଏମନ୍ତ କୃଷ୍ଣମାୟା ଦେଖି
ଭୟେ ବୁଜିଲେ ଅଷ୍ଟ ଆଖି
ଯେସନେ ଦେଖାପୂଜା ଯୋଗେ
କାଷ୍ଠ ପିତୁଳା ଥୋଇ ଆଗେ
ତେସନେ ହୋଇ ବେଦବର
ରହିଲେ ଗୋବିନ୍ଦ ସ୍ତମ୍ଭର
ଦେବେ ଗୋଚର ନୋହେ ଯେହୁ
ମହାମହିମ ମହାବାହୁ
ପ୍ରମାଣି ନ ପାଇଲେ ଅନ୍ତ
ବ୍ରହ୍ମା ହୋଇଲେ ମୋହଗତ
କଣ୍ଠେ ହୋଇଲେ ପଞ୍ଚପ୍ରାଣ
ଜାଣିଲେ କମଳା ରମଣ
ବ୍ରହ୍ମାଙ୍କୁ କୃଷ୍ଣ ଦୟା କଲେ
ମାୟାପଟଳ ଉହାଡ଼ିଲେ । ୫୬,୫୭
ଜ୍ଞାନ ପାଇଲେ ପ୍ରଜାପତି
ଉଠି ଚାହିଁଲେ ଚଉକତି
ଦେଖିଲେ ବୃନ୍ଦାବନ ଲଗେ
ଲକ୍ଷ୍ମୀ ବିଜୟ ଗୃହଦଟେ
ବନପଶୁଙ୍କ ହିଂସା ନାହିଁ
ଚରନ୍ତି ମିତ୍ର ପ୍ରାୟେ ହୋଇ
ଦେଖିଲେ କଦମ୍ବର ତଳେ
କୃଷ୍ଣ ନାଚନ୍ତି କୁତୂହଳେ
ପୁଣି ଦେଖିଲେ କେହି ନାହିଁ
ଚକିତେ ଚଉଦିଗେ ଚାହିଁ

ସଭୟ ଚିତ୍ତେ ଛନ ଛନ
ଆରତେ ବୁଜିଲେ ନୟନ
ଘଡ଼ିକେ ପୁଣି ଅନାଇଲେ
ଦେଖଇ ଗୋବିନ୍ଦର ଲୀଳା
ବାମ କରରେ ଅନ୍ନ ଘେନି
ବତ୍ସା ଖୋଜନ୍ତି ବନେ ଭ୍ରମି ।୫୮,୬୧
ଦେଖିଣ ରଥୁ ଓହ୍ଲାଇଲେ
କୃଷ୍ଣର ନିକଟେ ମିଳିଲେ
ପାଦେ ପଡ଼ିଲେ ବେଦବର
ଅବନୀ ଦିଶିଲେ ସୁନ୍ଦର
ନୀଳ ପାଷାଣ ତଳେ ଥୋଇ
ସୁବର୍ଣ୍ଣ ଯେମନ୍ତେ ଦିଶଇ
ଚାରି ମୁକୁଟ ଶିରେ ଥିଲେ
କୃଷ୍ଣର ଚରଣେ ଲଗିଲେ
ବେନି ଚରଣ କର ଦେଇ
ଭୟେ ବୋଲଇ ତ୍ରାହି ତ୍ରାହି
ପୂଜିଲେ ଗୋବିନ୍ଦ ପୟର
ଦେଇ ବିବିଧ ଉପହାର
ପାଦ ଧୋଇଲେ ଚକ୍ଷୁ ଲୁହେ
ମନ ନିବେଶି ପଦ୍ମ ପାୟେ
ଶତେକ ବେଳ ପାଦେ ପଡ଼ି
ଉଠିଲେ ବେନିକର ଯୋଡ଼ି
ସ୍ତୁତି କରଇ ଚାରି ବେଦେ
ଆନନ୍ଦେ ଶୋକ ଗଦଗଦେ ।୬୨,୬୪
ସେ ହରି ଚରଣ କମଳେ
ସୁଜନେ ଚିନ୍ତି ଧ୍ୟାନବଳେ
ବତ୍ସାହରଣ ଏହୁ ଛାନ୍ଦ
ଏଣେ ଛାଡ଼ିବ ମୋହ ଫାନ୍ଦ
ଗର୍ବଗଞ୍ଜନ ଯାର ବାନା
ଭକ୍ତଜନଙ୍କ ବଜ୍ରସହ୍ନା

ଭକ୍ତବତ୍ସଳ ନରହର
ଯାହାର ନାହିଁ ମିତ୍ର ଅର
ସେ ହରିପାଦେ ଦେଇ ଚିତ୍ତ
କହିଲା ଦାସ ଜଗନ୍ନାଥ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବତ୍ସାହରଣଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

***●***

## ପଞ୍ଚଦଶ ଅଧ୍ୟାୟ

( ମୂଳାନୁସାରେ ୧୪ଶ ଅଧ୍ୟାୟ )

ଚତୁର୍ଦ୍ଦଶେଽଦ୍ଭୁତଂ ଦୃଷ୍ଟ୍ୱା । ପୂର୍ବାଗନ୍ତୁକନଷ୍ଟୟୁଃ ।
ଅମାଶଃ କର୍ତ୍ତୁମସ୍ତୌଷୀତ୍ କୃଷ୍ଣ ବ୍ରହ୍ମା ବିମୋହିତଃ ॥୦॥

କୃଷ୍ଣ ମହିମା ଅଦ୍ଭୁତ । ଦେଖିଣ ବ୍ରହ୍ମା ମୋହଗତ
ସ୍ତବ ଆରମ୍ଭ କଲା ଭୟେ । ବର୍ଣ୍ଣନ ପଞ୍ଚଦଶାଧ୍ୟାୟେ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ମହୀପତି
ବ୍ରହ୍ମାର ମନୁଁ ଗଲା ଭ୍ରାନ୍ତି
ସମ୍ଭ୍ରମେ ବେନି କରଯୋଡ଼ି
କ୍ଷଣ କ୍ଷଣକେ ପାୟେ ପଡ଼ି
କୃଷ୍ଣ ଚରଣେ ଦେଇ ଶିର
ସ୍ତୁତି କରଇ ବେଦବର
ନମସ୍ତେ ବ୍ରହ୍ମାଣ୍ଡ ଠାକୁର
ତୋହର ମାୟା ଏ ସଂସାର
ତୋ ତନୁ ନୀଳ ଘନ ହାସ
ବିଜୁଳି ପ୍ରାୟେ ପୀତବାସ
ଗୁଞ୍ଜା ଅଳକା ଶିଖିପୁଚ୍ଛ
ଏଣେ ନର୍ମିଳ ଚୂଳସଞ୍ଚ
ଅଳପ ସ୍ମିତ ରଙ୍ଗ ମୁଖ
ଚିନ୍ତିଲେ ଖଣ୍ଡେ ଭବ ଦୁଃଖ
ବନମାଳାଏ ଲମ୍ବ ଉରେ
ଅନ୍ନ ପୁଡ଼ାଏ ବାମ କରେ
ବେତ ମୁରଲୀ ଶିଙ୍ଗା କରେ
କମଳା ସେବଇ ପୟରେ
ଏ ସେତେ ବାଳୁଙ୍ଗା କୁମର
ତୋହର ଶରୀରୁ ବାହାର । ୧
ତୋ ଅବତାର ମୋର ହିତେ
ସୁଖ ସମ୍ପଦ ଅବିରତେ
ଇଚ୍ଛାରେ ହୋଇଅଛୁ ଜାତ
ନିର୍ମାଣ ନୋହୁ ପଞ୍ଚଭୂତ
ଏ ଦେହମହିମା ନ ଜାଣୁ
ମୁଁ ବ୍ରହ୍ମା ରୁଦ୍ର ମୁନି ମନୁ

ବୁଦ୍ଧି ବଳରେ ଅନୁମାନ
ବେଦ ପୁରାଣେ ପରମାଣି । ୨
ଯେ ଜ୍ଞାନଯୋଗେ ଇନ୍ଦ୍ରିଜଣେ
ତୋର ମହିଁମା ନ ପ୍ରମାଣେ
ସେ ପ୍ରାଣୀ ହୁଅନ୍ତି ନାଶ
କେବଳ ଲଭେ ଦେହ ତ୍ରାସ
ଜ୍ଞାନର ପଥ ଛାଡ଼ି ଥୋକେ
ତୋତେ ଚିନ୍ତନ୍ତି ସନ୍ଥ ଲୋକେ
ସାଧୁଜନଙ୍କ ମୁଖୁଁ ଶୁଣି
ତୋର ମହିମା ମନେ ଗୁଣି
ମନ ବଚନ କରି ଏକ
ହେଲେ ଜିଣନ୍ତି ତିନିଲୋକ । ୩
ତୋର ଚରଣେ ଭାବ ଛାଡ଼ି
ଯେ ଯାନ୍ତି ଯୋଗପଥ ମାଡ଼ି
ମନ ବଚନ ହୃଦେ ବନ୍ଧ
ତପେ ଇନ୍ଦ୍ରିୟ ବଳ ରୁନ୍ଧି
ଯେତେ କରନ୍ତି ଦେହ ଶ୍ରମ
ତୋର ମାୟାରେ ହୋନ୍ତି ଭ୍ରମ
ତଣ୍ଡୁଳ ଆଶେ ତୁଷ କୁଟି
ଝାଡ଼ି ଯେସନେ ପ୍ରାଣୀ ଫୁଟି
ନିରାଶ ହୋନ୍ତି ବେନ ପଥ
ପଶୁ ଯୋନିରେ ହୋନ୍ତି ଜାତ
ତୋତେ ନ ପାଇ ନରହରି
ଭ୍ରମନ୍ତି ତୋ ମାୟା ଅବାରି
ପୂର୍ବେ ବହୁତ ମୁନି ଜନ
ସେବିଲେ ତୋହର ଚରଣ
ନିଜ କର୍ମରୁ ଫଳ ଭୁଞ୍ଜି
ତୋ ଗତି ଏକୁ ଆରେ ହେଜି
ପାଇଲେ ତୋ ପରମ ପଦ
ଖଣ୍ଡିଲେ ବିଷୟ ବିଷାଦ । ୪,୫

ନିର୍ମଳ ଆତ୍ମା ମୁନିଗଣେ
ତୋର ମହିମା ପରମାଣେ
ତୋର ବିକାର ନ ପାଇଲେ
ଭକତ ହେବ ତରିଗଲେ । ୬
ନିର୍ଗୁଣ ଆତ୍ମା ଗୁଣବନ୍ତ
ତୋର ମହିମା ଗୋପୀନାଥ
ବ୍ରହ୍ମାଣ୍ଡେ ଦେହବନ୍ତ ହୋଇ
ତୋ ଗୁଣ କେ ପାରିବ କହି
ଭୂମିରେ ଯେତେ ରେଣୁ ଛନ୍ତି
ଆକାଶେ ଯେତେ ତାରା ପନ୍ତି
ବରଷାଧାର ପଡ଼େ ଯେତେ
କେ ଜାଣିପାରେ ଏ ଜଗତେ
ଏ ତିନି ଗଣିନ ସମର୍ଥ
କେହି ବା ଥିବେ ଏ ଜଗତ
ତୋର ମହିମାଗଣ ଗଣି
ସଂସାରେ ଅଛି କେଉଁପ୍ରାଣୀ । ୭
ଯାହାକୁ ହେଉ ତୁ ସଦୟେ
ସେ ନ ପଡ଼ଇ ମାୟାମୋହେ
ତୋର ଭକତ ହୃଦେ ହେଜି
ଅର୍ଜିଲ କର୍ମଫଳ ଭୁଞ୍ଜି
ଚିତ୍ତ ନିବେଶି ତୋର ପାଦେ
ସଂସାରୁ ଯାନ୍ତି ମୋକ୍ଷପଦେ । ୮
ଅଜ୍ଞାନ ପଣ ଦେଖ ମୋର
ତୋତେ ଭଣ୍ଡିଲି ଗଦାଧର
ମାୟାବିମାନଙ୍କର ଶ୍ରେଷ୍ଠ
ତୋତେ ମୁଁ କଲି ମାୟାଢଠ
ଅନଳ ପର୍ବତର ତଳେ
କଣାଏ ଦେଖାଇଲି ହେଳେ
ଅଳପ ଲୋକ ଅଧିକାର
ତୁ ଜନ୍ମା ଦେଲୁ ଦାମୋଦର

ବ୍ରହ୍ମା ବୋଲଣ ମୋର ଗର୍ବ
ତୋତେ ଭଣ୍ଡିଲି ପଦ୍ମନାଭ
ଏଣୁ ହୋଇଲି ଅପରାଧୀ
ତୁ ନାଥ କରୁଣା ବାରିଧି
ମୋ ଅପରାଧ କ୍ଷମାକର
ହେ ନାଥ ଶରଣ ତୋହର
ମୁଁ ତୋର ରଜଗୁଣୁ ଜାତ
ତୁ କି ନ ଜାଣୁ ଜଗନ୍ନାଥ
ମୁଁ ତୋର କେତେକ ଅନ୍ତର
ତୁ କି ନ ଜାଣୁ ଚକ୍ରଧର । ୯,୧୦
ଅବନୀ ଆଦି ପଞ୍ଚଭୂତେ
ମନ ଚେତନା ଅହଂକୃତେ
ଜୀବ ପରମ ଭାବ ବନ୍ଧ
ବ୍ରହ୍ମାଣ୍ଡ କରୁ ଭବଗାହ୍ମ
କେତେ ବ୍ରହ୍ମାଣ୍ଡ ରୋମମୂଳେ
ଉଡ଼ୁଅଛନ୍ତି ଅନ୍ତରାଳେ
ଜଳାକବାଟି ବାଟେ ଯେହ୍ନେ
ରେଣୁଏ ଉଡନ୍ତି ଗଗନେ
ମୁଁ ଏକ ଅଣ୍ଡମଧ୍ୟେ ଥାଇ
ସପ୍ତ ବୃଖଣ୍ଡ ଦେହ ବନ୍ଧି
ଅଛଇଁ ଜୀବ ଆତ୍ମା ଧରି
ତୋ ମାୟା ପଟଳ ଆବୋରି
ଏତେ ଅନ୍ତର ତୋର ମୋର
ତୋତେ ଭଣ୍ଡିଲି ମୁଁ ପାମର । ୧୧
ଗର୍ଭ ଭିତରେ ସୁତ ଥାଇ
ସେ ଯେହ୍ନେ ପାଦ ପ୍ରହାରଇ
ସେ ଅପରାଧ ବରେ ଯେନ
କୋପ କି କରଇ ଜନନୀ । ୧୨
ତୋ ନାଭିକମଳୁଁ ମୁଁ ଜାତ
ତୋତେ ଭଣ୍ଡିଲି ଜଗନ୍ନାଥ
ତୋହର ଉଦରେ ପଶିଲି
ଅଶେଷ ବ୍ରହ୍ମାଣ୍ଡ ଦେଖିଲି
ଜଳଧି ଶୟନର କାଳେ
ଏ କଥା ଜାଣନ୍ତି ସକଳେ
ନର ଆବର ଜଳବ୍ୟାପି
ତୁ ନାଥ ନାରାୟଣ ରୂପୀ
ସକଳ ନର ଆତ୍ମା ହୋଇ
ତେଣୁ ନାରାୟଣ ବୋଲାଉ
ପ୍ରଳୟ ଜଳେ ଥିଲୁ ଶୋଇ
ତୋ ରୂପ ଦେଖିଲଇଁ ମୁହିଁ
ଦେଖି ସାନନ୍ଦ ମୋର ମନ
ତୁ କି ନ ଜାଣୁ ଭଗବାନ । ୧୩-୧୫
ମିଥ୍ୟା ନୁହଇ ନା ଏ କଥା
ତୋତେହେଁ ସାକ୍ଷୀ ତୋର ମାତା
ଗୋପାଳ କୁମରଙ୍କ ମେଳ
ମାଟି ଭକ୍ଷିଲୁ ଯେତେବେଳେ
ଯଶୋଦା ଦେଖିଲା ତୋ ତୁଣ୍ଡ
ଉଦରେ ଅଶେଷ ବ୍ରହ୍ମାଣ୍ଡ
ବାହାର ଭିତରରେ ପୁରି
ତୋ ମାୟାଅଛୁଯେଆବୋରି।୧୬,୧୭
ଏବେ ଏ ବୃନ୍ଦାବନେ ମୋତେ
ମାୟା ନ କଲୁ କେତେ କେତେ
ପ୍ରଥମେ ଦେଖିଲଇଁ ଏକ
କ୍ଷଣକେ ହୋଇଲୁ ଅନେକ
ଯେତେ ବାଛୁରି ଗୋପପୁଏ
ଦିଶିଲେ ତୋହର ପରାୟେ
ନୀଳ ଶରୀର ଚତୁଃକର
ବ୍ରହ୍ମାଏ ଖଟନ୍ତି ପଯୂର । ୧୮
ତୁହି ତୋହର ମାୟା ବନ୍ଧ
ବ୍ରହ୍ମା ଶଙ୍କର ରୂପ ହୋଇ

ସୃଷ୍ଟିର ଅଗ୍ରେ ମୋତେ କର
ସଙ୍ଗାନ ଦେଲୁ ବେଦ ଗୁର
ଜଗତ କରାଇ ଉଆସ
ତୁ ତାହା ପାଳୁ ନାରାୟଣ
ଶଙ୍କରରୂପେ କରୁ ଅନ୍ତ
ଏମନ୍ତେ ତ୍ରିକାଳଜ୍ଞ ଅନନ୍ତ ।୧୯
ଦେବ ବ୍ରାହ୍ମଣ ଋଷି ପଶୁ
ଏଣେ ଶରୀର ତୁ ପ୍ରକାଶୁ
ଦୁଷ୍ଟ ନିବାରି ସନ୍ଥପାଳୁ ।୨୦
ଦୟାରେ ଧର୍ମ ତୁ ସମ୍ଭାଳୁ
କାହିଁ କପଟ କସ ପାଇଁ
କେତେବେଳେ ବା ଖେଳୁ ତୁହି
ବିସ୍ତାରି ତୋର ଯୋଗମାୟା
କେ ଜାଣିପାରେ ପ୍ରଭୁ ଏହା ?
ଯୋଗେଶ୍ୱରଙ୍କୁ ଅଗୋଚର
ହେ ନାଥ ! ଲୀଳା ଏ ତୋହର ।୨୧
ତେଣୁ ତୋ ମାୟାରେ ଜଗତ
ତୋ ତହୁଁ ହୋନ୍ତି ଆତଯାତ
ବିଜୁଳି ଜ୍ୟୋତି ଏ ଯେସନ
ମେଘରେ ଦିଶି ହୋନ୍ତି ଲୀନ ।୨୨
ତୁ ନାଥ ପୁରୁଷ ପୁରାଣ
ସତ୍ୟ ଅନନ୍ତ ଆଦିଶୂନ୍ୟ
ତୁ ସ୍ୱୟଂ ଜ୍ୟୋତି ନିରଞ୍ଜନ
ଉପାଧିହୀନ ସୁଖପୂର୍ଣ୍ଣ ।୨୩
ସକଳ ଜନ୍ତୁ ମଧ୍ୟ ତୁହି
ବିହରୁ ଆତ୍ମାରୂପ ହୋଇ
ଗୁରୁ ବଚନୁ ଜ୍ଞାନ ସାର
ପାଇ ଯେ କରନ୍ତି ବିଚାର
ଭବଜଳଧି ସେ ତରନ୍ତି
ମାୟାପଟଳେ ନ ପଡ଼ନ୍ତି ।୨୪

ଆତ୍ମାକୁ ଆତ୍ମଜ୍ଞାନେ ଜାଣି
ଚିନ୍ତା ନ କରେ ଯେଉଁ ପ୍ରାଣୀ
ଅଜ୍ଞାନଭାବେ ଜ୍ଞାନ ନାଶ
ରଜ୍ଜୁରେ ଯେହ୍ନେ ସର୍ପଭାସ ।୨୫
ଜୀବର ବନ୍ଧ ମୋକ୍ଷ ଦୁଇ
ଅଜ୍ଞାନଭାବୁଁ ଜାତ ହୋଇ
ତୋହର ତତ୍ତ୍ୱ ଯେ ଜାଣଇ
ତାହାର ବନ୍ଧ ମୋକ୍ଷ ନାହିଁ
ଆଦିତ୍ୟ ସଦା ପ୍ରକାଶିଲେ
ନ ଥାନ୍ତି ଦିବାରାତ୍ର ଭଲେ । ୨୬
ତୋତେ ଯେ ଚିନ୍ତି ନ ଜାଣନ୍ତି
ଆତ୍ମାକୁ ବାହାରେ ଲୋଡ଼ନ୍ତି
ଭ୍ରମ ସେ ଲକ୍ଷ ତାହାଙ୍କର
ନାହିଁ ତୋ ଭିତର ବାହାର ।୨୭
ଯେ ତୋତେ ଶରୀରେ ଲୋଡ଼ନ୍ତି
ସୂକ୍ଷ୍ମ ସ୍ୱରୂପେ ରୂପ ଚିନ୍ତି
ଅଜ୍ଞାନ ନାଶେ ତାହାଙ୍କର
ଭବସାଗରୁ ହୋନ୍ତି ପାର
ଜ୍ଞାନୀ ଜନ ସେ ଏହିମତ
ତୋହର ଦୟାରୁ ଅନନ୍ତ
ତୋତେ ଜାଣିଣି ଏ ଶରୀରେ
ଶରୀରଭ୍ରାନ୍ତି ଦୂର କରେ
ନିକଟେ ସର୍ପ ଯାର ଥାଇ
ସେହି ରଜ୍ଜୁରେ ଭ୍ରମ ହୋଇ
ହୋଇ ମାୟାରେ ତୋତେ ଜାଣି
ଭବ ତରନ୍ତି ସାଧୁପ୍ରାଣୀ ।୨୮
ତୋ ଅନୁଗ୍ରହ ଯାକୁ ନାହିଁ
ବ୍ରହ୍ମାଣ୍ଡେ ଲୋଡ଼ିଲେ ନ ପାଇ
କେତେ କହିବ ସ୍ୱାମୀ ତୋତେ
ଏମନ୍ତ ଆଜ୍ଞା ଦିଅ ମୋତେ

ନାନା ଯୋନିରେ ଜାତ କରି
ତୋର ସେବକ ମଧ୍ୟେ ହରି
ଅପରାଧ କ୍ଷମା କର ମୋତେ
ତୋ ପାଦେ ସେବଇ ଯେମନ୍ତେ ।୨୯,୩୦
ଗୋପେ ଅଛନ୍ତି ଯେତେ ଜନ୍ତୁ
କେ ତାଙ୍କ ପୁଣ୍ୟ କରୁ ହେତୁ
ହୋଇଣ ବାଛୁରି କୁମର
ସ୍ତନ ପିଇଲୁ ତାହାଙ୍କର
ତୋ ମନ ରଞ୍ଜନେ ଅନନ୍ତ
ଯଜ୍ଞେ ନୋହିଲେ ସମରଥ ।୩୧
ନନ୍ଦ ଯଶୋଦା ଗୋପୀ ଗୋପ
ଅନେକ କରିଛନ୍ତି ତପ
ତୁ ନାଥ . ମିତ୍ର ତାହାଙ୍କର
ବ୍ରହ୍ମା ଶଙ୍କର ଅଗୋଚର ।୩୨
ତୋ ପାଦ ପଦ୍ମର ଅମୃତ
ଏଣେ ଲୋଡ଼ିତ ଯାର ଚିତ୍ତ
ମନଭ୍ରମରେ କରି ପାନ
ହେଲେ ତେଜଇ ଭବଭ୍ରମ
କାଷ୍ଠ ପାଷାଣ ତୃଣ ହୋଇ
ଗୋକୁଳେ ପଡ଼ିଥିବି ମୁହିଁ
ଗୋପୀଜନଙ୍କ ପାଦଧୂଳି
ଦେହେମୁଁ ହେଉଥିବି ବୋଲି ।୩୩,୩୪
ଦେବେ ନ ପାନ୍ତି ଯାହା ଖୋଜି
ଗୋପୀଏ ମିତ୍ରପଣେ ଭଜି
ପୂତନା କରି ଶତ୍ରୁପଣ
ତୋ ଦେହେ ପଶିଲା ତକ୍ଷଣ
ଏଣୁ ତୋ ନାହିଁ ମିତ୍ର ଅରି
ଜଗଜୀବନ ନରହରି । ୩୫
ତୋହର ପାଦେ ଗୋପୀନାଥ !
ଶରଣ ନ ପଶେ ଯାବତ

ତାବତ କାମ କ୍ରୋଧ ବଳେ
ଡ଼କା କରନ୍ତି ଅବହେଳେ
ଗୃହ ହୁଅଇ ବନ୍ଦୀଘର
ମୋହ ଶାଙ୍କୁଳି ଏ ପସୁର
ଦାରା ତନୟ ମୋହେ ଜଡ଼ି
ଦୁଃଖ ସଙ୍କଟେ ଥାନ୍ତି ପଡ଼ି ।୩୬
ଶରଣ ଜନର ଆନନ୍ଦ
ବଢ଼ାଇବାକୁ ଆହ୍ଲାଦକନ୍ଦ
ଅରୂପ ହୋଇ ରୂପ ଧରୁ
ପୃଥ୍ୱାଦିରୂପେ ଲୀଳା କରୁ ।
ଯେ ବୋଲେ ତୋହର ମହିମା
ଜାଣେଇଁ ବୋଲି ଗୁଣ ସୀମା
ସେ ଜାଣୁ,ମୁହିଁତ ବହୁତ
ବିଚାରି ନ ପାଇଲି ଅନ୍ତ । ୩୮
ତୁ ଅନ୍ତର୍ଯ୍ୟାମୀ ଜଗନ୍ନାଥ
ତୋର ଏ ଦେହ ଏ ଜଗତ
ଅଧିକ କି କହିବି ଆଉ
କ୍ଷମ କରିବ ଆଜ୍ଞା ହେଉ ।୩୯
ତୁ ବୃଷ୍ଣି ବଂଶ-ବନକର
ପାଷଣ୍ଡଧର୍ମ ତମହର
ଭୂମି ଦେବତା ଗୋ ବ୍ରାହ୍ମଣ—
ସମୁଦ୍ରକୁ ତୁ ଚନ୍ଦ୍ର ସମ
ଧରା ନବାରୁ ଦୁଷ୍ଟ ନାଶି
ନମୋ ନମସ୍ତେ ବ୍ରହ୍ମରାଶି ।୪୦

ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ !
ବ୍ରହ୍ମା ସ୍ତୁତିଲା ମନୁଁ ଭୟେ
ପାଦେ ପଡ଼ିଲା ତିନିବାର
ବାହୁଡ଼ି ଗଲା ନିଜ ପୁର

ବତ୍ସା ବାଳକ ଆଣି ଦେଲ
ବଇଲେ କୃଷ୍ଣଙ୍କୁ ଚାହିଁଲ । ୪୧
ବ୍ରହ୍ମାର ମୁଖକୁ ଅନାଇ
ବୋଲନ୍ତି ପ୍ରଭୁ ଭବଗ୍ରାହୀ
ହସି ବୋଲନ୍ତି ଚକ୍ରଧର
ବିଧାତା ଯାଅ ନିଜପୁର
ବ୍ରହ୍ମାଣ୍ଡ ପାଳ ସୁଖେ ଯାଇଁ
ମୋହର ପାଦେ ଚିତ୍ତ ଦେଇ
ଗୋବିନ୍ଦ ଆଜ୍ଞା ଘେନିଶିରେ
ବ୍ରହ୍ମା ଚଳିଲ ନିଜ ପୁରେ । ୪୨
ମାୟା ମୋହିଲେ ଦେବରାୟେ
ଭୋଜନ କରୁଛନ୍ତି ପୋଏ
କୃଷ୍ଣ ଆସିଲେ ବତ୍ସା ଲେଉଡ଼ି !
ଅନ୍ନ ପୁଡ଼ାଏ ହସ୍ତେ ଧରି
ଥୋକାଏ ତୁଣ୍ଡେ ଅଛି ଭାତ
ପୋଏ ଦେଖିଲେ ଗୋପୀନାଥ
କୃଷ୍ଣର ଅଙ୍କ ବିହି ଖାଳ
ବୋଲନ୍ତି ଆସ ନନ୍ଦବାଳ
ଏକଇ ଗ୍ରାସ ନାହିଁ ଖାଇ
ଲେଉଡ଼ି ଆଣିଲ ବତ୍ସା ଯାଇଁ
ଆସ ଭୁମ୍ଭର ଠାବେ ବସ
ଶୁଣି ଗୋବିନ୍ଦ ହସ ହସ
ଅନ୍ନ ଭୁଞ୍ଜନ୍ତି କୃଷ୍ଣ ବସି
ଗୋପାଳ ପୋଏ ପରଶଂସି । ୪୩।୪୫
ଭୋଜନ ସାରି ଜଳେ ଯାଇଁ
କର ଚରଣ ମୁଖ ଧୋଇ
ବେଳ ହୋଇଲା ଅବସାନ
ଗୋପେ ଚଳିଲେ ଭଗବାନ
ପଥେ ଅଧାର ଦେହ ଚାହିଁ
ବୋଲନ୍ତି ପ୍ରଭୁ ଭବଗ୍ରାହୀ
ନିତ୍ୟେ ଖେଳିବା ଏଥି ପଶି
ଶୁଣି ଗୋପାଳ ପୋଏ ହସି । ୪୬
ଗ୍ରାମ ନିକଟେ ପୋଏ ଯାଇଁ
ଅତି ଆନନ୍ଦେ ବେଣୁବାଇ
ମୟୂରପୁଚ୍ଛ ଚୂଳମାଳ
ଗୁଞ୍ଜରିପାଟି ରଙ୍ଗଫୁଲ
ଗୋରଜ ଶୋହେ କୃଷ୍ଣଦେହେ
ବେଢ଼ି ନାଚନ୍ତି ଗୋପପୁଏ
ଗୋପୀଙ୍କ ନୟନ ଆନନ୍ଦ
ଉଦୟ ପୂର୍ଣ୍ଣିମାର ଚନ୍ଦ । ୪୭
ପୋଏ ମିଳିଲେ ଯେଝା ଘରେ
କହିଲେ ମାତାଙ୍କ ଗୋଚରେ
ସର୍ପ ଆମ୍ଭଙ୍କୁ ଗିଳିଥିଲ
ଆଜ ଗୋ ଗୋବିନ୍ଦ ରଖିଲ
ସର୍ପ ଯେ ପାଟି ଫାଡ଼ିଥିଲ
କୃଷ୍ଣ ତା ତାଳୁ ବିଦାରିଲ
ସେ ବାଟେ ହୋଇଲୁଁ ବାହାର
ପଛେ ଗୋ ଥିଲ ଦାମୋଦର
ଶୁଣି ଚକିତ ବ୍ରଜନାରୀ
ଭୟେ ବୋଲନ୍ତି "ହରି ହରି" । ୪୮

ଶ୍ରୀରାଜୋବାଚ

ଶୁଣି ପରୀକ୍ଷିତ ନୃପବର..
ଶୁକଙ୍କୁ ବୋଲଇ ମଧୁର
ତୁ ଯେ ବୋଇଲୁ ଗୋପ ଗୋଷ୍ଠି
କୃଷ୍ଣଙ୍କୁ ପୁତ୍ରରୂପେ ପାଇ
ମାୟାବାଳକେ ସ୍ନେହ ଯେତେ
ନିଜ ବାଳକେ ନାହିଁ ତେତେ
ଏଣେ ସେ ମୋହର ସନ୍ଦେହ
ସଂଶୟ ଯାଉ ମୁନି କହ । ୪୯

### ଶ୍ରୀ ଶୁକ ଉବାଚ

ମୁନି ବୋଲନ୍ତି ଶୁଣ ରାଜେ
ଜଗତ ଅଛି ମାୟା ମୋହେ
ସୁତ କଳତ୍ର ଦେହ ବନ୍ତ
ସ୍ନେହେ ଜଡ଼ିତ ଅବିରତ
ବିଷୟ ଜଞ୍ଜାଳ ବଳବନ୍ତା
ଆମ୍ଭାକୁ ନ କଳନ୍ତି ଚିନ୍ତା
ତଥାପି ରାଜା ଜାଣ ତୁମ୍ଭେ
ଆମ୍ଭାହୁଁ ପ୍ରିୟ ନାହିଁ କେହି
ସୁତ କଳତ୍ର ସ୍ନେହ ଭଙ୍ଗ
ଜରା ବ୍ୟାଧିରେ କ୍ଷୀଣ ଅଙ୍ଗ
ହେଲେହେଁ ପୁଣି ପ୍ରାଣୀ କେହି
ଜୀବନ ଆଶା କି ଛାଡ଼ଇ ?
କୃଷ୍ଣତ ଜୀବର ଜୀବନ
କିମ୍ପା ନୋହିବେ ପ୍ରିୟତମ
ଏଣୁ ପୂର୍ବହୁଁ ସ୍ନେହଭର
ମାୟାବାଳକେ ଗୋପପୁର । ୫୦,୫୭
ସେ ହରି ପାଦେ ଦେଇ ମନ
ନିରତେ ଯେ କରନ୍ତି ଧ୍ୟାନ
ବିପଦେ ତାର ନାହିଁ ଭ୍ରାନ୍ତି
ଭବସାଗରୁ ତରିଯାନ୍ତି
କୁମାରକାଳେ ବାଳକେହି
ଯେମନ୍ତେ କଲେ ବନମାଳୀ
ଷଡ଼ ବରଷ ହୋଏ ଏବେ
ଘେନିତ କରିବେ ବାଳଭାବେ
ଏଣେ ତୁ ହୁଅ ସାବଧାନ
ଖଣ୍ଡିବ ମୋହ ଜଡ ଭ୍ରମ । ୫୮-୬୧
ପାମର ବିପ୍ର ଜଗନ୍ନାଥ
ଗୀତେ ଗାଇଲା ଭାଗବତ ।
ପଣ୍ଡିତେ ନ ଧରିବା ଦୋଷ
ହରିଚରିତ ସୁଧାରସ
କୃଷ୍ଣ ସବୁରି ଦେହେ ଥାଇ
ଯାହାକୁ ଯେମନ୍ତ ବୁଝାଇ
କେ କରି ପାରିବ ତା ଆନ
ଚିତ୍ତକୁ ସାକ୍ଷୀ ଭଗବାନ
ମୋ ମନ ମୋହିଲେ ମୁରାରି
ପୁରାଣ ଗୀତ ଅର୍ଥ କରି
ଏଣୁ ମୋହର ଜ୍ଞାନ ନାହିଁ
ବାତୁଳ ଜନ ପ୍ରାୟ ହୋଇ
ସୁଜନେ ଏଣେ ମନ ଦେଲେ
କୃଷ୍ଣ ଭେଟିବ ତୁମ୍ଭେ ଭଲେ
ସେ ଦୟାନିଧି ହେଲେ ଭେଟ
ନ ଥିବ ଏ ସଂସାର କଷ୍ଟ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବ୍ରହ୍ମସ୍ତୁତି
ନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

—ః0ః—

# ଷୋଡ଼ଶ ଅଧ୍ୟାୟ

( ମୂଳାନୁସାରେ ୧୫ଶ ଅଧ୍ୟାୟ )

ତତଃ ପଞ୍ଚଦଶେ ଧେନୁ ପାଳନଂ ଧେନୁକାର୍ଦ୍ଦନଂ ।
କାଳୀୟ କ୍ଷେଡ଼ତୋ ଗୋପ-ରକ୍ଷଣଂ ଚ ନିରୂପ୍ୟତେ ।

ଷୋଡ଼ଶେ ବନାଶି ଧେନୁକା । କାଳୀୟ ବିଷୁଁ ଗୋପରକ୍ଷା ॥

ଶ୍ରୀ ଶୁକ ଉବାଚ

ଏବେ ହେ ଶୁଣ ନରନାଥ
ହରିର ବାଳକ ଚରିତ
ଷଷ୍ଠ ବରଷେ ନରହରି
କାନନେ ଚରାନ୍ତି ବାଛୁରି
ଦିନକୁ ଦିନ ବଳୀୟାର
ଗାଈ ରଖିଲେ ଦାମୋଦର
ରୋହିଣୀ ସୁତ ଧେନ ସଙ୍ଗେ
ବନେ ଖେଳନ୍ତି ନାନାରଙ୍ଗେ
ଦିନେ ସେ କୃଷ୍ଣ ବେଣୁନାଦେ
କାନନେ ମିଳିଲେ ଆନନ୍ଦେ
କୃଷ୍ଣଙ୍କୁ ବେଢ଼ି ଗୋପବାଳେ
ବେଣୁ ବଜାନ୍ତି କୁତୂହଳେ
ଆଗେ ଅଡ଼ାଇ ବତ୍ସା ଗାଈ
ମିଳିଲେ ବୃନ୍ଦାବନେ ଯାଇଁ
କୋମଳ ଘାସ ନାନାଫୁଲ
କୋକିଳ ଶବଦ ଚହଳ
ମୟୂରନାଦ ଭୃଙ୍ଗମେଳେ
ଗନ୍ଧ କୁସୁମ ଜଳ ସ୍ଥଳେ
ନବ ପଲ୍ଲବ ତରୁ ସ୍ଥିତ
କୋମଳ ବହଇ ମରୁତ
ପଦ୍ମ କୁମୁଦ ଗନ୍ଧ ଘେନ
ଆନନ୍ଦେ ବିରାଜେ ମେଦିନୀ
ଦେଖି ସାନନ୍ଦ ଶ୍ରୀହରିଙ୍କ
ବାଳକ ମେଳେ ରାମ ସଙ୍ଗ
ଫଳକୁସୁମ ତରୁ ଗଣେ
ଲଗନ୍ତି ରାମର ଚରଣେ
ଦେଖି ହସିଲେ ଦାମୋଦର
ରାମଙ୍କୁ ବୋଲନ୍ତି ମଧୁର । ୧-୪

ଶ୍ରୀ ଭଗବାନୁବାଚ

ଏହେ ଦେବ ! ଦେଖ ତରୁଗଣ
ନମନ୍ତି ତୋହର ଚରଣ
ଦେବେ ନ ପାନ୍ତି ଯାହା ଖୋଜ
ଏ ଦୋଷେ ତରୁରୂପେ ଭଜ
ତରିବେ ଭବବନ୍ଧତାପୁଁ
ବୃକ୍ଷ ହୋଇଲେ ଯେଉଁ ପାପୁଁ । ୫
ଏ ଯେ ଭ୍ରମର ପକ୍ଷୀଗଣେ
ନାଦେ ଭଜନ୍ତି ତୋ ଚରଣେ
ଦେବେ ଗୁପତେ ବନବୃକ୍ଷ
ତୋତେ ପୂଜନ୍ତି ଧ୍ୟାନକରି
ପକ୍ଷିସ୍ୱରୂପ ମୁନିଗଣେ
ମନ ନିବେଶି ତୋ ଚରଣେ । ୬

ଦେଖ ଏ ମୟୂରଙ୍କ ନୃତ୍ୟ
ମୃଗଯୁବତୀ ଯୂଥ ଯୂଥ
ଗୋପୀଙ୍କ ପ୍ରାୟେ ଛନ୍ତି ରହିଁ
ଦେଖନ୍ତି ନୟନ ପୂରାଇ
ଦେଖ ଗନ୍ଧର୍ବ ପିକ ନାଦ
ଶୁଣନ୍ତେ ଖଣ୍ଡେ ମନଖେଦ
ସାଧୁଜନଙ୍କ ପ୍ରାୟେ ହୋଇ
ଭାବନ୍ତି ତୋ ମୁଖ ଅନାଇ
ଏ ପୁଣ୍ୟବନ୍ତ ମହୀଧର
ଲାଗୁଛି ତୁମ୍ଭର ପୟର
ତୋ ପାଦ ଲାଗି ବୃକ୍ଷଲତା
ପୁଣ୍ୟେ ହୋଇଲେ ବଳବନ୍ତା
ନଦୀ ପର୍ବତ ଖଗ ମୃଗ
ନିଶ୍ଚେ ଲଭିବେ ମୋକ୍ଷ ଯୋଗ । ୮

ଶ୍ରୀ ଶୁକ ଉବାଚ

ଏମନ୍ତେ ରାମଙ୍କୁ ଦେଖାଇ
ମିଳିଲେ ନଦୀକୂଳେ ଯାଇଁ
ଗାଈ ଚରାନ୍ତି ବେଣୁ ବାଇ
ଆନନ୍ଦ କେ ପାରିବ କହି । ୯
ଗୋପାଳପୁଏ ଗୀତ ନାଦେ
ଶ୍ରୀକୃଷ୍ଣ ନାଚନ୍ତି ଆନନ୍ଦେ
ଗୋପକୁମରେ ପରଶଂସି
ମୁରଲୀ ନାଦେ ବ୍ରହ୍ମରାଶି
ହଂସର ରାବ ଶୁଣି ଡାକ
ନାଚନ୍ତି ମୟୂରଙ୍କୁ ଦେଖି
ଶୁକ କୋକିଳ ନାଦ ଶୁଣି
ମୁରଲୀନାଦେ ତାହା ଭଣି
ଗୋରୁଙ୍କୁ ଡାକନ୍ତି ସୁସ୍ୱରେ
ଗମ୍ଭୀରେ ନାମ ଧରି ଧୀରେ
ପକ୍ଷିଙ୍କ ନାଦ ଶୁଣି ଡାକ
ପଶୁଙ୍କୁ ଗୃହାନ୍ତି ହସାଇ । ୧୦-୧୪
ବେଳ ହୋଇଲା ବଳୀୟାର
ଫୁଟିଲେ ରୋହିଣୀ କୁମର
ରାମର ଶ୍ରମ ଅନୁସରି
ବୃକ୍ଷରେ ଉଠନ୍ତି ମୁରାରି
କୋମଳ ପତ୍ର ବୃକ୍ଷୁଁ ଆଣି
ଶଯ୍ୟା ପାଡନ୍ତି ଚକ୍ରପାଣି
ତହିଁ ଶୁଆଇ ହଳଧର
ପାଦ ରୁପନ୍ତି ଧୀର ଧୀର । ୧୫
ଗୋପାଳ ପୁଏ ନୃତ୍ୟ କରି
ମନ ତୋଷନ୍ତି ହଳଧାରୀ
ଶୁଦ୍ଧ କରନ୍ତି ନାନା ରଙ୍ଗେ
ବେଣୁ ବଜାନ୍ତି କୃଷ୍ଣ ସଙ୍ଗେ
ଉଠେଣ ରାମ ପରଶଂସି
ହସ୍ତ ଧଇଲେ ବ୍ରହ୍ମରାଶି । ୧୬
କୃଷ୍ଣ କରନ୍ତି ରଙ୍ଗେ ନୃତ୍ୟ
ଗୋପାଳେ ବେଣୁନାଦେ ଗୀତ
କୃଷ୍ଣର ଶ୍ରମ ଦେଖି ପୋଏ
ପଲ୍ଲବ ଆଣନ୍ତି ଥୋକାଏ
ବୃକ୍ଷର ମୂଳେ ଶଯ୍ୟା କରି
ତହିଁରେ ଶୁଆନ୍ତି ମୁରାରି
ଜାନୁରେ ରଖି ଶୀର୍ଷସ୍ଥାନ
କେ ବସି ରୁପନ୍ତି ଚରଣ
ପତ୍ର ବିଞ୍ଚଣା ଘେନି ବିଞ୍ଚି
କେ ପାଣି କୃଷ୍ଣଦେହେ ସିଞ୍ଚି
ସୁସ୍ୱରେ କରି ଗୀତରସ
ଯେସନେ ହୋଇବ ମନ ତୋଷ
ଏମନ୍ତେ ଗୋପବାଳ ସଙ୍ଗେ
କୃଷ୍ଣ କ୍ରୀଡ଼ନ୍ତି ନାନା ରଙ୍ଗେ । ୧୭,୨୦

ସୁଦାମ ନାମେ ଗୋପସୁତ ୪
କୃଷ୍ଣର ମିତ୍ର ସେ ଯୁକତ ୪
ସୁବଳ ସ୍ତୋକକୃଷ୍ଣ ଆଦ ୪
ଏମନ୍ତେ ନାମ ପରସିଦ୍ଧ ୪
ରାମ ଗୋବିନ୍ଦ ମୁଖ ଚାହିଁ ୪
କହନ୍ତି ଶିରେ କର ଦେଇ । ୨୧
ହେ ରାମ ! ଶୁଣ ସାବଧାନ ୪
ଆଗେ ଦିଶଇ ତାଳବନ ୪
ସୁପକ୍ୱ ଫଳ ରସମୟେ ୪
ଦେଖି ଲୋଭିତ ହେବ ତାଏ ୪
ଟାଚ ଯେ ପଡ଼ିଅଛି ତଳେ ୪
ପୂର୍ବ୍ୱେ ପ୍ରମାଣ ବହିଲେ ୪
ବୃକ୍ଷେ ଅଛଇ ଅପ୍ରମିତ ୪
ଗନ୍ଧେ ଲୋଭନ୍ତ ଆମ୍ଭ ଚିତ୍ତ ୪
ପୂର୍ବେ ଏ ଫଳ ଲୋକେ ଖାଇ ୪
ଏ କାଳେ ନ ପାରନ୍ତି ଯାଇ ୪
ଧେନୁକା ନାମେ ମହାସୁର ୪
ଏ ତାଳ ବନେ ତାର ଘର ୪
ବନ୍ଧୁ ବାନ୍ଧବ ଅପ୍ରମିତ ୪
ନିର୍ଭୟେ ବସଇ ହୋଇତ ୪
ତାହାର ଭୟେ ଲୋକେ ଡରି ୪
ତିନ ଭୁବନେ ପଡ଼ି ହରି ୪
ଗର୍ଦ୍ଦଭ ରୂପରେ ହୋଇତ ୪
ଏ ବନେ ବସଇ ନିଶ୍ଚିନ୍ତ ୪
ଦେବେ ଡରନ୍ତି ତାର ନାଁଏ ୪
ପ୍ରଚଣ୍ଡେ ପବନ ନ ବହେ ୫
ତୁ ନାଶ କରୁ ଯେବେ ଦୟେ ୪
ସେ ଫଳ ଖାଇବୁ ଥୋକାଏ ୪
ଗୋପପୁରକୁ ନେବୁଁ ବହି ୪
ଶୁଣି ସାନନ୍ଦ ହେଲ ଭାଇ । ୨୨-୨୬ ୪

ବୋଲନ୍ତି କଢ଼ାଅ ହେ। ପଥ ୪
ଆଗ ହୋଇଲେ ଗୋପୀନାଥ ୪
ତା ଦେଖି ରୋହିଣୀକୁମର ୪
ଧାଇଁଲେ ପବନରୁଁ ଖର ୪
ବେଗେ ପଶିଲେ ତାଳବନେ ୪
ଗୋପାଳେ ମିଳିଲେ ବହନେ ୪
ରୋହିଣୀସୁତ ଆଗ ହୋଇ ୪
ବୃକ୍ଷକୁ ଦେଲେ ଦୋହଲାଇ ୪
ଫଳ ଝାଡ଼ନ୍ତି ବୃକ୍ଷ ଗୃଳା ୪
ଘୋର ଶବଦେ ମହାବଳୀ ୪
ବୃକ୍ଷକୁ ବୃକ୍ଷଦେହ ଲାଗି ୪
ଫଳ ସହିତେ ବୃକ୍ଷ ଭାଙ୍ଗି ୪
ଫଳ ପଡ଼ନ୍ତି ତଳେ ଝଡ଼ି ୪
ଶବଦ ମେଘ ଘଡ଼ଘଡ଼ି । ୨୭,୨୮
ଶୁଣି ଧେନୁକା ପରଜ୍ୱଳି ୪
ବେଗେ ଧାଇଁଲା ମହାବଳୀ ୪
ଭାଙ୍ଗିଲା ଦେଖି ତାଳବନ ୪
ଅସୁର କଲା ଘୋର ଧ୍ୱନ ୪
ଶବଦେ ଅବନୀ କମ୍ପିଲା ୪
ରାମର ନିକଟେ ମିଳିଲା ୪
ବେନି ଚରଣ ତୋଳି ବେଗେ ୪
ମାଇଲା ହଳଧର ଅଙ୍ଗେ । ୨୯,୩୦
କ୍ଷଣେକେ ପଛଙ୍କ ଦେଇ ୪
ପୁଣି ମାଇଲା ପାଦ ଦେଇ ୪
ଗର୍ଦ୍ଦଭ ସ୍ୱଭାବ ଶବଦେ ୪
ଗର୍ଜ୍ଜଇ ମାରି ବେନିପାଦେ ୪
ଅନନ୍ତ କୋପେ ଗୁରୁତର ୪
ଆକର୍ଷି ଧଇଲେ ସତ୍ୱର ୪
ବେନି ଚରଣ ଧରି କରେ ୪
ବୁଲାଇ ପିଟିଲେ ବୃକ୍ଷରେ ୪

କରେ ବୁଲନ୍ତେ ହଳଧର
ଜାବନ ଗୁଡ଼ଲ୍ ଅସୁର । ୩୧,୩୨
ତାଙ୍କର ସଙ୍ଗେ ମୃତପିଣ୍ଡ
ମାଡ଼ ପଡ଼ଲ୍ ଭୂମି ଖଣ୍ଡ ।
ବନ୍ଧୁ କୁଟୁମ୍ବ ତାର ଯେତେ,
ରାକ୍ଷସ ବଳ ଅପ୍ରମିତେ
ଧାଇଁଲେ ଅତି ଖରତରେ
ମିଳଲେ ରାମର ଛାମୁରେ
କୁପିତ ଘୋର ନାଦ କରି
ମାରନ୍ତି ପାଦଘାତ କରି.
ଦେଖି ଧାଇଁଲେ ହଳଧର
ମଙ୍ଗଳ ଧ୍ୱନି ସୁରପୁର
ପଛ ଚରଣ କରେ ଧରି
ବୁଲାଇ ଅନ୍ତରାଳ କରି
ଏକ ଆରକେ ପ୍ରହାରିଲେ
ଅସୁରେ ଯମପୁରେ ଗଲେ ।୩୩।୩୭
ଅସୁରଙ୍କର ଦେହ ସଙ୍ଗେ
ତାଳ ପଡ଼ଲ୍ ଭୂମିଭାଗେ
ମେଘ ଯେସନେ ଢାଙ୍କି ଶୂନ୍ୟ
ଅସୁରଦେହ ବ୍ୟାପେ ବନ । ୩୮
ଦେଖି ସାନନ୍ଦ ଦେବତାଏ
ଆନନ୍ଦେ କଲେ ଜୟେ ଜୟେ
ପୁଷ୍ପ ବରଷି ଦେବତାଏ
ନିର୍ଭୟ ହୋଇଲେ ଥୋକାଏ । ୩୯
ତାଳ ଭୁଞ୍ଜିଲେ ଗୋପ ପୋଏ
ଘରକୁ ଆଣିଲେ ଥୋକାଏ
ସେ ଦିନୁଁ ଗୋପ ନରନାରୀ
ନିର୍ଭୟେ ତାଳ ଭୋଗ କରି
ସେ ବନେ ଚରାଇଲେ ଗାଈ
ନିଷ୍ଟିନ୍ତେ ଶିଙ୍ଗା ବେଣୁ ବାଇ । ୪୦

ଦିନ ଅନ୍ତରେ ଗୋପେ ପଶି
ଗୋପୀଏ କୃଷ୍ଣଙ୍କୁ ପ୍ରଶଂସି
ଗୋପବାଳକ ମଧ୍ୟେ ଥାଇ
ରଙ୍ଗେ ନାଚନ୍ତି ବେନିଭାଇ
ଗୋ-ରଜ ଭୂଷଣ ଶରୀରେ
ଗୁଞ୍ଜି ମୟୂରପୁଚ୍ଛ ଶିରେ
ହୃଦେ ଲମ୍ବିଇ ବନମାଳି
କରେ ସୁରଙ୍ଗ ତାଳ ଫଳ
ଗୋପୀଏ ରାମକୃଷ୍ଣ ଦେଖି
ନିର୍ମଳ କଲେ ଚର୍ମ ଆଖି
କୃଷ୍ଣ ଗୃହ୍ନିଲେ ରସଭରେ
ମିଳିଲେ ନନ୍ଦର ମନ୍ଦିରେ
ଆନନ୍ଦ ଯଶୋଦା ରୋହିଣୀ
କୋଳେ ବସାନ୍ତି ପୁତ୍ର ଆଣି
ପୁତ୍ରଙ୍କୁ ମାଜଣା କରାଇ
ସର ଲବଣୀ ଅନ୍ନ ଦେଇ
ଶେଯେ ଶୁଆଇ ପୁତ୍ର ବେନି
ସୁସ୍ୱରେ କଲେ ଗୀତ ଧ୍ୱନି
ଏମନ୍ତେ ବଞ୍ଚିଲେ ରଜନୀ
ପରାଶେ କହେ ଶୁକ ମୁନି । ୪୧,-୪୬
ପ୍ରଭାତେ ଉଠି ଦାମୋଦର
ବନେ ଚଳିଲେ ବେଣୁଧର
ଗୋପ କୁମରେ ଗାଈ ଘେନି
ଯାନ୍ତେ କରନ୍ତି ବେଣୁଧ୍ୱନି
ଘରେ ରହିଲେ ହଳଧର
କୃଷ୍ଣ ମିଳିଲେ ନଦୀ ତୀର
ଗୋରୁ ଚରନ୍ତି ବନେ ପଶି
ରବିର ତେଜ ପରକାଶି
ତୃଷିତେ ନ ପାରନ୍ତି ଚଳି
କାଳିନ୍ଦୀତୀରେ ଯାଇଁ ମିଳି

ସକଳେ କଲେ ଜଳପାନ ଃ ନିର୍ବିଷ କରିବଇଁ ଆଜ
ତକ୍ଷଣେ ଗୁଡ଼ିଲେ ଜୀବନ । ୪୭,୪୯ ଃ ଏଣେ ମୋହର ବଡ଼ କାର୍ଯ୍ୟ
ଗୋରୁ ଗୋପାଳ ପୁଏ ମରି ଃ ଏତେ ବିଚାରି ସ୍ୱୀବଗ୍ରାହୀ
ଦେଖି ଚକିତ ନରହରି ଃ ଅମୃତନୟନେ ଅନାଇଁ
ଜଳକୁ ଗୋବିନ୍ଦ ଅନାଇଁ ଃ ଗୋପବାଳକ ଗୋରୁ ସଙ୍ଗେ
ବିଚାରି କଲେ ଭାବଗ୍ରାହୀ ଃ ଜୀବନ ଦେଲେ ଶିରିରଙ୍ଗେ
ଗରୁଡ଼ ପକ୍ଷିରାଜ ଭୟେ ଃ ଗୋରୁ ଗୋପାଳ ସଙ୍ଗେ କରି
କାଳିନ୍ଦୀ ହ୍ରଦେ କାଳି ରହେ ଃ ଗୋପେ ମିଳିଲେ ନରହରି ।୫୦,୫୨
ତାହାର ବିଷେ ଜଳ ନାଶ ଃ ସେ ହରି ଚରଣ କମଳେ
ଜନ୍ତୁଏ ନ କରନ୍ତି ଗ୍ରାସ ଃ ଚିତ୍ତ ମୋ ରହୁ ଭୃଙ୍ଗମେଳେ
ଏ ଜଳ ବୃନ୍ଦାବନେ ଥିଲେ ଃ କୃଷ୍ଣ ଚରିତ ଭାଗବତ
ପ୍ରାଣ ପାଇବେ କେହ୍ନ ଭଲେ ଃ କହଇ ଦାସ ଜଗନ୍ନାଥ
ଭବ ନିବାରେ ମୁହିଁ ଜାଚ ଃ ହେ ଦୟାନିଧି ! ଦୟା କରି
ଗୋପାଳ ହୋଇଲେ ଅନାଥ ଃ ଏ ଘନଜନେ କର ପାରି ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଧେନୁକାସୁର ବଧୋ
ନାମ ଷୋଡ଼ଶୋଽଧ୍ୟାୟଃ ॥ ୧୬ ॥

✳✳✳✳✳✳✳✳✳✳

## ସପ୍ତଦଶ ଅଧ୍ୟାୟ

( ମୂଳାନୁସାରେ ୧୬ଶ ଅଧ୍ୟାୟ )

ଷୋଡ଼ଶେ କାଳିୟସ୍ୟୋକ୍ତା ନିଗ୍ରହୋ ଯମୁନାହ୍ରଦେ
ତତ୍ପତ୍ନୀଭିଃ ସ୍ତୁତେନାଥ କୃଷ୍ଣେନାନୁଗ୍ରହଃ କୃତଃ । ୦ ।
କାଳିୟ ଦଳନ ଚରିତ । ଏପରି ଦଶରେ ବର୍ଣ୍ଣିତ ।୦।

ଶ୍ରୀ ଶୁକ ଉବାଚ ଃ ଗୋପ ଗୋ-ବତ୍ସା ସଙ୍ଗେ ଧେନ
ଃ ସୁସ୍ୱରେ କଲେ ବେଣୁ ଧ୍ୱନ
ଶୁଣ ରାଜନ କୃଷ୍ଣକଥା ଃ ଗୋପାଳେ ବନପୁଷ୍ପ ତୋଳି
ଯେଣେ ଗୁଡ଼ିବ ଭାବବ୍ୟଥା ଃ କାଳିନ୍ଦୀ ହ୍ରଦେ ଯାଇ ମିଳି
ରଜନୀ ହୋଇଲା ପ୍ରଭାତ ଃ ତୀରେ କଦମ୍ବ ତରୁ ବନ
ବନେ ଚଳିଲେ ଗୋପୀନାଥ ଃ ଦେଖି ବାଳକେ ତୋଷମନ

ବୃକ୍ଷେ ଉଠିଲେ ଧାଇଁକାରେ
ଗାଣ୍ଠିଚଷନ୍ତ ଖରେ ଖରେ
ଗୋବିନ୍ଦ ବୃକ୍ଷତଳେ ଯାଇଁ
ବିଚ୍ଛୁର କଲେ ଭାବଗ୍ରାହୀ
ନିର୍ମଳ ଶୀତଳ ଗମ୍ଭୀର
ବିଷେ ଦୂଷିତ ପୁଣ୍ୟ ନୀର
ଏ ଜଳେ କାଳିୟ ନ ଥିବ
ଜଳ ପିଅନ୍ତୁ ସର୍ବ ଜୀବ
ଏମନ୍ତ ମନେ ବିଚାରିଲେ
କଦମ୍ବ ବୃକ୍ଷରେ ଉଠିଲେ
ଅତି ଶିଖର ଡାଳେ ଯାଇଁ
ଜ୍ୱଳନ୍ତ ଜଳକୁ ଅନାଇଁ
ଶୁଣି ପରୀକ୍ଷ ମନତୋଷେ
ମୁନିଙ୍କି ପୁଚ୍ଛଇ ହରଷେ
ଅଗାଧ ଜଳକୁ ହୃଷୀକେଶ
ସର୍ପକୁ ଦେଲେ ପରବାସ
ଅନେକ କାଳ ଜଳେ ଥିଲା
କୃଷ୍ଣେ କି ଅପରାଧ କଲା ?
ହରିର ମହିମା ଅଶେଷ
ଯାହା ଚିତ୍ତ କରିଲେ ପ୍ରକାଶ
ମାୟା ମନୁଷ୍ୟ ଅବତାର
ଗୁପତେ ରହି ନନ୍ଦଘର
ତାର ଚରିତ ଯେବା ଶୁଣି
ଅମୃତ ରସମୟ ବାଣୀ
ସାଧବ ଜନଙ୍କର ମତେ
କେ ଗୁଣି ପାରିବ ତା ଶତେ ।୧,୨
ବୋଲନ୍ତି ବ୍ୟାସଙ୍କ କୁମର
ଶୁଣ ପରୀକ୍ଷ ନୃପବର
ଘୋର ନିବାରେ ନରହରି
ମନୁଷ୍ୟ ଦେହେ ଅବତରି
ଦୁଷ୍ଟ ନିବାରି ସନ୍ଥ ପାଳି
ଦୟା ସାଗର ବନମାଳୀ
କାଳିୟ ବିଷେ ଜଳ ନାଶ
ଜନ୍ତୁଏ ନ କରନ୍ତି ଗ୍ରାସ
ଗରଳ ଯୋଗେ ଜଳବାୟେ
ପକ୍ଷିଏ ନ ଉଡ଼ନ୍ତି ଭୟେ
ବିଶେଷ ଗରଳ ଲହରୀ
ଜଳ ପିଅନ୍ତେ ଜନ୍ତୁ ମରି ।୩-୪
ଦାସବତ୍ସଳ ହୃଷୀକେଶ
ଗାଢ଼େ ପିନ୍ଧିଲେ ପୀତବାସ
ଆନନ୍ଦେ ବାହାସ୍ଫୋଟ ମାରି
କଦମ୍ବ ଡାଳେ କରେ ଧରି
ଜଳେ ପଡ଼ିଲେ କୃଷ୍ଣ ଡେଇଁ
ସ୍ୱର୍ଗେ ଦେଖନ୍ତି ଦେବେ ରହି । ୫
ଜଳ ଯେ ଉଚ୍ଛୁଳିଲା ବେଗେ
ଶତେକ ଧନୁ ଗୁରୁ ବେଗେ
ହରିର ବଳ ଅପ୍ରମିତ
ଯାହାର ମହିମା ଅନନ୍ତ ।୬
ଖେଳନ୍ତି ବେନି ବାହା ଝାଡ଼ି
ଶବଦ ମେଘ ଘଡ଼ଘଡ଼ି
କାଳିୟ ଶୁଣିଲା ପାତାଳେ
କିସ ଶବଦ ମୋର ଜଳେ
ଦେଖିବ ବୋଲି ବେଗେ କଲା
ସହସ୍ର ଫଣା ଉଭାରିଲା
ନୟନେ ଦେଖିଲା ମାଧବ
କୋପେ କମ୍ପଇ ଚକ୍ଷୁଃଶ୍ରବ *

* ଚକ୍ଷୁଃଶ୍ରବ = ସର୍ପ

ନୀଳ ଜୀମୂତ ଦେହ କାନ୍ତି
ମଣି କଙ୍କଣ ଝଟକନ୍ତି
ଶ୍ରୀବତ୍ସ ଚିହ୍ନ ପୀତବାସ
ରଙ୍ଗ ଅଧରେ ମନ୍ଦ ହାସ
କଣ୍ଟି କନ୍ତେ ଖେଳନ୍ତ ମୁରାରି
ସର୍ପ ଧାଇଁଲା କୋପ କରି
କୋମଳ ଚରଣେ ଦଂଶିଲା
ଦେହେ ନବାଙ୍କ ବନ୍ଧୀ କଲା ।୮,୯
ଗୋପାଳେ ବୃକ୍ଷଡାଳେ ଥିଲେ
ଜଳେ କୃଷ୍ଣଙ୍କୁ ଅନାଇଲେ
କାଳୀୟ କଲାଟି ବନ୍ଧନ
ଗରଳ ବହଇ ବଦନ
ନାଗରେ ବନ୍ଧନ ଶରୀର
ଦେଖି କମ୍ପନ୍ତ ଥରହର
ମନ ନୟନ କୃଷ୍ଣ ଦେହେ
ତଳ ପଡ଼ିଲେ ଶୋକ ମୋହେ
କାନ୍ଦନ୍ତ କୃଷ୍ଣଙ୍କୁ ଅନାଇ
ବିକଳ ଭେ ପ୍ରାଣବ କହି
ହୃଦେ ଚାଡ଼ନ୍ତ ବେନିପାଣି
ମୂର୍ଚ୍ଛିତେ ପଡ଼ିଲେ ଧରଣୀ
ଗୋରୁଏ କୃଷ୍ଣଙ୍କୁ ଅନାଇଁ
କାନ୍ଦନ୍ତ ଚଉଦିଗ ଚାହିଁ
କୃଷ୍ଣର ଦେହେ ବକ୍ଷ୍ୟ ଦେଇ
ଚିତ୍ର ପ୍ରତିମା ପ୍ରାୟ ରହି
ବତ୍ସାଏ କାନ୍ଦଣ ବିକଳ
ଆବୋର କାଳିନ୍ଦୀର ଜଳ ।୧୦,୧୧
ଗୋକୁଳେ ହୋଇଲା ଅରିଷ୍ଟି
ରୁଧିର ସଙ୍ଗେ ଜଳ ବୃଷ୍ଟି
ଭୂମି କମ୍ପଇ ଥରହର
ହୋଇଲେ ଘୋର ଅନ୍ଧକାର

ଗଗନେ ଶୁଭେ ଘୋର ନାଦ
ବିବିଧ ଶବ୍ଦ ପରମାଦ ।୧୨
ଦେଖି ଗୋପାଳେ ଖରତର
ମିଳିଲେ ନନ୍ଦର ମନ୍ଦିର
ବୋଲନ୍ତ କାହିଁ ତୋ କୁମର
ଶବ୍ଦ ପଡ଼ିଲା ଗୋପପୁର
ନନ୍ଦ ଶୁଣିଣ ଥରହର
ରାମର କରେ ଦେଇ କର
ନନ୍ଦ ବୋଇଲା ପୁଏ କାହିଁ ?
ବନେ ଯେ ଧେନୁଗଲା ଗାଈ
ଅନନ୍ତ ଅଛି ମୋର ଘରେ
ଶବ୍ଦ ପଡ଼ିଲା ଗୋପପୁରେ
କି ବୁଦ୍ଧି କରିବଇଁ ମୁହିଁ
କିରୂପେ ପୁତ୍ର ମୁଖ ଚାହିଁ
ଯଶୋଦା ଦେଖି ମୋହମାନ
ଧରଣୀ ପଡ଼ି ହତଜ୍ଞାନ
ପୁଣି କାନ୍ଦନ୍ତ ଗୋପନାରୀ
ଚହଲ ଚଉଦିଗେ ପୁରୀ
ସକଳେ ରାମ ଧେନୁ ସଙ୍ଗେ
ବାହାର ବୃନ୍ଦାବନ ମାର୍ଗେ ।୧୩-୧୫
ରେବତୀ ସୁତ ମନେ ଗୁଣି
କୃଷ୍ଣ ପ୍ରଭାବ ପରମାଣି
ଅଳପ ଅଳପ ହସିଲେ
ବଚନେ କିଛି ନ କହିଲେ ।୧୬
କୃଷ୍ଣଚରଣ ଚିହ୍ନ ଚାହିଁ
ଚାଲନ୍ତି ଅଙ୍ଗୁଳି ଦେଖାଇ
କମଳ ଜବାଙ୍କୁଶ ଚିହ୍ନ
ଗୋରୁଙ୍କ ଖୁରଚିହ୍ନମାନ ।୧୭,୧୮
କାଳିନ୍ଦୀ ନିକଟେ ମିଳିଲେ
ଗୋପ ଗୋ-ବତ୍ସାଙ୍କୁ ଚାହିଁଲେ

ଜଳେ ଦେଖିଲେ ଦାମୋଦର
ନାଗରେ ବନ୍ଧନ ଶରୀର
ବିଷଅନଳେ ଅଚେତନ
ଗରଳ ବହଇ ବଦନ
ଦେଖି କାନ୍ଦନ୍ତି ଉଚ୍ଚସ୍ୱରେ
ଗୋରୁ ଗୋପାଳ ତୀରେ ତୀରେ
ଗୋପାଳେ ହୋଇଲେ ମୂର୍ଚ୍ଛିତ
ଗୋପୀ ହୋଇଲେ ଭୂମିଗତ । ୧୯
ଗୋପୀଙ୍କ ଚକ୍ଷୁ କୃଷ୍ଣଦେହେ
କାନ୍ଦନ୍ତି ଅତି ମାୟାମୋହେ
ପ୍ରଳୟ ମଣିଲେ ଜଗତ
କୃଷ୍ଣର ଦେହେ ସର୍ପଘାତ
ସୂନକୁ ଚାହିଁ ଅଚେତନ
ନନ୍ଦର ଦେହେ ନାହିଁ ଜ୍ଞାନ
ବାଳୁତ କାଳୁ ଯେତେ ଗୁଣ
ସୁମରି କାନ୍ଦେ ପୁଣ ପୁଣ
ଜଳେ ପଶନ୍ତେ କୃଷ୍ଣପାତ
ଗୋପୀ ଧଇଲେ ପାଦହସ୍ତ । ୨୦,୨୧
ନିର୍ଣ୍ଣିନ୍ତେ ଦେଖି ହଳଧର
ଆଡୋର କାଳିନ୍ଦୀର ତୀର
ରାମ ବୋଲନ୍ତି "ରହ ରହ"
ଦେଖିବ ଗୋବନ୍ଦର ଦେହ । ୨୨
ଗୋକୁଳ ମନ ଜାଣି ହରି
କାଳିୟ ଅଙ୍ଗ ବନ୍ଦୀକରି
ଗୋବନ୍ଦ ଶରୀର ବଢ଼ିଲା
କାଳିୟ ବନ୍ଧ ନ ପାରିଲା
କୃଷ୍ଣଦେହ ତା ଦେହେ ଲାଗି
ସର୍ପରଗଣ୍ଠି ଛନ୍ଦ ଭାଙ୍ଗି
ନକ୍ଷଣେ କୃଷ୍ଣକୁ ଛାଡ଼ିଲା
ସମ୍ଭାଳି ନପାରି ବୁଡ଼ିଲା

ଉଠିଲା ଖଣ୍ଡେ ଦୂର ଯାଇଁ
ଗର୍ଜିଲା କୃଷ୍ଣଙ୍କୁ ଅନାଇଁ । ୨୩,୨୪
ଫଣା ସହସ୍ରେ ଉଭାରିଲା
ଗରଳ ଅଗ୍ନି ଉଦ୍‌ଗାରିଲା
ଜିହ୍ୱା ବୁଲାଇ ଅନ୍ତରାଳ
ନାଗ କୋଟିଏ ନୟନ ମେଲି
ନାଦ କରଇ ଫୁ ଫୁ କାର
ଗରଜେ ଦୃଷ୍ଟି ତା ପିଙ୍ଗଳ
କୋପେ କୃଷ୍ଣଙ୍କୁ ଗୋଡ଼ାଇଲା
ଶବଦେ ବ୍ରହ୍ମାଣ୍ଡ କମ୍ପିଲା
ମାୟା ମନୁଷ୍ୟ ଅବତାର
ତୀରେ ଦେଖନ୍ତି ସୁରନର । ୨୫
ସର୍ପକୁ ଚାହିଁ ନରହରି
ବୁଡ଼ିଲେ ସର୍ପେ ମାୟା କରି
କାଳିୟ ଖୋଜିଲା ଅନେକ
ଗମ୍ଭୀର ଜଳ ଘର୍ଘ ପାଖ
ଲେଉଡ଼ ନ ପାଇ ଦାମୋଦର
ପୁଣି ଟେକିଲା ନିଜ ଶିର
କୃଷ୍ଣଙ୍କ ଦେଖିଲା ନିକଟେ
ଗୋପୀ ଗୋପାଳ ଜଳ ତଟେ
ଦେଖି ପଳାନ୍ତି ଚକ୍ରଧର
ଘୁରିଲେ ମଣ୍ଡଳ ଆକାର
ସର୍ପ ଗୋଡ଼ାଇ ନ ପାରିଲା
ଫୁଟିଣ ଗରଳ ଛାଡ଼ିଲା
କୃଷ୍ଣର ଅବସର ପାଇ
ଗର୍ଜ୍ଜିଇ ରସନା ବୁଲାଇ
ଦଂଶଇ ପୁଣ ପୁଣ ପାଦ୍ୱେ
ଗରଳ ଛାଡ଼େ କୃଷ୍ଣ ଦେହେ
ଗୋବନ୍ଦ କୋପେ ଗୁରୁତର
ଉଠିଲେ କାଳିୟ ଉପର

ସର୍ପର ଶିରେ ମଣି ଥିଲା
ଶ୍ରୀକୃଷ୍ଣ ଚରଣେ ଲାଗିଲା
ମଣିର ତେଜ ରଙ୍ଗବର୍ଣ୍ଣେ
ସୁନ୍ଦର ଶ୍ରୀହରି ଚରଣେ
ତ୍ରିଭଙ୍ଗ ଛନ୍ଦେ ଉଭା ହୋଇ
ନାଚନ୍ତି ଗୋପାଳଙ୍କୁ ଚାହିଁ । ୨୬
ଶ୍ରୀକୃଷ୍ଣ ନୃତ୍ୟ ଦେବେ ଚାହିଁ
ମିଳିଲେ ବୃନ୍ଦାବନେ ଯାଇଁ
ତାଣ୍ଡବ ରସେ ଗୀତ ଗାଇ
ଗନ୍ଧର୍ବେ ବେଣୁ ବୀଣା ବାଇ
ମୃଦଙ୍ଗ ତାଳ ବାଦ୍ୟ କରି
ରଙ୍ଗେ ନାଚନ୍ତି ଅପସରୀ
କୁସୁମ ବରଷନ୍ତେ ଆଣି
ଯେ ଯାହା ମତେ ସ୍ତୁତି ଭଣି
ଦେଖି ସାନନ୍ଦ ବନମାଳୀ
ନୃତ୍ୟ କରନ୍ତି ପାଦ ଟେକି । ୨୭
କାଳିୟ ପ୍ରାଣ କଣ୍ଠାଗତ
ସହସ୍ର ଫଣା ମୁରୁଛିତ
ଯେଉଁଣ ଫଣା ଉଚ୍ଚେ ଥାଇ
ବେଗେ ଉଠନ୍ତି କୃଷ୍ଣ ଯାଇ
ବେଗେ ନାଚନ୍ତି ପାଦ ଟେକି
ରୁଧିର ସର୍ପମୁଖୁଁ ଗଳି
କାଳିୟ ମନେ ବିଚାରିଲା
ନିଶ୍ଚୟ ମରଣ ହୋଇଲା
ହରିରେ ପଶିବି ଶରଣ
ଡାକିଲା ରଖ ନାରାୟଣ
କାଳିୟ ଶିରେ କୃଷ୍ଣ ଥାଇ
ଜାଣିଲେ ପ୍ରଭୁ ଭବଗ୍ରାହୀ
ଦାସବତ୍ସଳ ପୀତବାସ
ତକ୍ଷଣେ ହୋଇଲେ ଉଲ୍ଲାସ

କାଳିୟ ଜୀବନ ପାଇଲା
ଗୋବିନ୍ଦ ମୁଖକୁ ଚାହିଁଲା
ସଭୟେ ନ ପାରଇ କହି
ଭୟେ କମ୍ପଇ ତାର ଦେହି । ୨୮-୩୦
ଶତେକ ପତ୍ନୀ ତାର ଥିଲେ
ସ୍ୱାମୀର ମରଣ ଜାଣିଲେ
ହରିମହିମା ସେ ଜାଣନ୍ତି
ନାମ ଜପନ୍ତି ନିତି ନିତି
ସୁତ ଦୁହିତା ଆଗକରି
କରେ ଘେନିଲେ ଅର୍ଘ୍ୟଥାଳୀ
ଗନ୍ଧ ଚନ୍ଦନ ନାନା ମଣି
ନିର୍ମଳ ପଦ୍ମମାଳ ଘେନି
କୃଷ୍ଣର ନିକଟେ ମିଳିଲେ
ବାଳକ ତଳେ ଶୁଆଇଲେ
ପାଦେ ପଡ଼ିଲେ ନାଗନାରୀ
ଆନନ୍ଦେ ଦେଖନ୍ତି ମୁରାରି
କେଶ ବସନ ଅସମ୍ଭାଳ
ନୟନୁ ବହେ ଅଶ୍ରୁଜଳ
ଉଚ୍ଚ କରନ୍ତି ଜୟ ଜୟ
ସ୍ୱର୍ଗେ ଦେଖନ୍ତି ଦେବତାଏ । ୩୧,୩୨
ବୋଲନ୍ତି ଶରଣ ତୋହର
ଶାସ୍ତି କରିବା ବଂଶଧର
ଦୋଷୀକୁ ଦଣ୍ଡିବା ଯୁକତ
ଆଗ ନିବାରେ ତୁମ୍ଭ ଜାତ
ତୋହର ଶତ୍ରୁ ମିତ୍ର ନାହିଁ
ତୋର ଭିଆଣେ ସର୍ବ ଦେହୀ
ଭକତି କରନ୍ତି ଯେ ତୋତେ
ଯେ ଅବା ଭଜେ ଶତ୍ରୁ ମତେ
ଦୁହିଙ୍କି ଦେଉ ଏକ ଗତି
ଦୟାସାଗର ଦାଶରଥି । ୩୩

ଆମ୍ଭଙ୍କୁ କଲୁ ଅନୁଗ୍ରହ
ହେଲେ ନାଶିଲୁ ଦମ୍ଭ ମୋହ
ସର୍ପ ହୋଇଲୁ ପାପକର୍ମୀ
ତୋତେ ଦଂଶିଲୁ ନରହରି
ଏହାରେ ତାରିଲୁ ସକଳ
ବନ୍ଧୁ ବାନ୍ଧବ ନାଗକୁଳ । ୩୪
ପୂର୍ବେ ଅନେକ ତପ କଲା
ବହୁତ ଅନ୍ନ ଦାନ ଦେଲା
ଜଳ ଦେଉଳ ନାନାମତେ
ଜନ୍ତୁଙ୍କ ଦୟା ହୃଦଗତେ
ତୋ ନାମ ଭଜ ଏ ଆନନ୍ଦ
ତେଣୁ ପାଇଲା ପଦ୍ମପାଦ
କେତେ ଏ ଅଛି ତପ କରି
ତୋ ପାଦ ରଜ ଶିରେ ଧରି
ତାହା ପାଇବ ବୋଲି ପୁଣି
ତପ କରଇ କମଳମା । ୩୫,୩୬
ତୋ ପାଦପଦ୍ମ ଧ୍ୟାଇ ଜନେ
ଅଧିକ ନ ବାଞ୍ଛନ୍ତି ମନେ
ସ୍ୱର୍ଗ ଭୋଗକୁ ତୁଚ୍ଛ କରି
ବ୍ରହ୍ମାପଦକୁ ନ ଆଦରି
ପାତାଳ ପୁରେ ଭୋଗ ପଦ
ଏକାଙ୍ଗ ରାଜପଦେ ସଧ
ଯୋଗ ସିଦ୍ଧିକୁ ନ ଇଚ୍ଛନ୍ତି
ନିର୍ବାଣ ପଦ ନ ମାଗନ୍ତି
ଏଣେ ନୁହନ୍ତି ସାବଧାନ
ତୋ ପାଦେ ଥାଇ ଯାର ମନ ।୩୭
ଦୁର୍ଲ୍ଲଭ ଅଟୁ ଦୁଷ୍ଟ-ଚିତ୍ତେ
ଏ ତୋତେ ପାଇଲା କେମନ୍ତେ ?
ତମ ଗୁଣରେ ଅଛି ଭେଦ
ଜାତିଶେଷେ ସର୍ପ ପରମାଦ
ତୋତେ ନିକଟେ ଏ ପାଇଲା
ଯେଣୁ ଏ ପୂର୍ବେ ତପ କଲା ।୩୮
ନିର୍ଗୁଣ ଆତ୍ମା ଗୁଣବନ୍ତ
ନମସ୍ତେ ପ୍ରଭୁ ଭଗବନ୍ତ
ପଞ୍ଚଭୂତଙ୍କ ଆତ୍ମା ତୁହି
ତୋହର ଆଦିଅନ୍ତ ନାହିଁ
ଜ୍ଞାନ ବିଜ୍ଞାନ ଦାତା ହେଉ
ତ୍ରିଗୁଣେ ମାୟାରୂପ ବହୁ
ସୃଷ୍ଟି ପାଳନ କରୁ ଅନ୍ତ
ତୁ କାଳରୂପୀ ଗୋପୀନାଥ
ଅନନ୍ତ ରୂପ ସୂକ୍ଷ୍ମମୟ
ତ୍ରିଗୁଣ ଭେଦେ ବହୁ ଦେହ
ତ୍ରିଗୁଣ ରୂପେ ମାୟାକରି
ଜଗତେ ହେଉ ରୂପଧାରୀ
ଯେ ସାଧୁମତେ ତୋତେ ଭଜେ
ସେ ତୋର ଦେଲା ଫଳ ଭୁଞ୍ଜେ
ଯେ ତୋତେ ନ ଭଜନ୍ତି ଜନେ
ସେ ପ୍ରାଣୀ ତରିବେ କେସନେ ।୩୯-୪୦
ଆମ୍ଭର ସ୍ୱାମୀ ଏକବେଳେ
ଦ୍ରୋହ ଯେ କଲା ପାଦତଳେ
ଏ ଦୋଷ ସହିବା ମୁରାରି !
ଆମ୍ଭେ ତୋହର ପରିବାରୀ ।୪୧
ପ୍ରାଣ ଛାଡ଼ିବ ଏହିକ୍ଷଣି
ତୁ କି ନ ଜାଣୁ ଚକ୍ରପାଣି
ଆମ୍ଭଙ୍କୁ ଦିଅ ସ୍ୱାମୀ ଦାନ
ତୋର ଶରଣ ଭଗବାନ । ୪୨
ଏବେ କରିବୁଁ କସ କହ
କିଙ୍କର କରି ଆଜ୍ଞା ଦିଅ ।୪୩
ପରୀକ୍ଷେ ଶୁକମୁନି କହେ
ଶୁଣି ହସନ୍ତି ଦେବରାୟେ

ନାଗକାମିନୀ ସ୍ତୁତି ଶୁଣି
ଦୟାସାଗର ପଦ୍ମପାଣି
ପାଦ ପ୍ରହାର ଛାଡ଼ି କରି
ଉଶ୍ୱାସ ହୋଇଲେ ମୁରାରି ।୫୪
କାଳିୟ ଜୀବନ ପାଇଲା
କୃଷ୍ଣର ମୁଖକୁ ଚାହିଁଲା
ସଭୟେ ଶୋକ ଗଦଗଦେ
ପୁଣ ପଡ଼ଇ ପଦ୍ମପାଦେ । ୫୫
ବୋଲଇ ଶୁଣ ନାରାୟଣ !
ଜଗତ ତୋହର ଭିଆଣ
ସର୍ପରେ ଜାତ କଲୁ ମୋତେ
ସ୍ୱଭାବ ଛାଡ଼ିବି କେମନ୍ତେ ?
ତାମସ ଗୁଣେ ଜାତ କରି
ଗରଳେ କଲୁ ଅଧିକାରୀ
ଏଣୁ ମୁଁ କ୍ରୋଧଭର ହୋଇ
ସ୍ୱଭାବ ଛାଡ଼ି ନ ପାରଇ
ତୋହର ମାୟା ଜାଣୁ ତୁହ୍ମ
ହେ ନାଥ ରଖ ଭାବଗ୍ରାହ୍ମ !
ନାଥ ମୁଁ କଲି ଅପରାଧ
ତାମସ ଗୁଣେ ଦମ୍ଭ ହୃଦ
ଏଣୁ ନିଷ୍ଠୁର ମୋ ସ୍ୱଭାବ
ବଚ୍ଚର ଦଣ୍ଡ ପଦ୍ମନାଭ
ଯେ ତୋର ଇଚ୍ଛା ତେମନ୍ତ କର
ତୋର ଶରଣ ଚକ୍ରଧର । ୫୬-୫୯
ସର୍ପ ବଚନ କର୍ଣ୍ଣେ ଶୁଣି
ଦୟାସାଗର ଚକ୍ରପାଣି
ବୋଲନ୍ତି ସର୍ପ ମୁଖ ଚାହିଁ
କାଳିନ୍ଦୀଜଳେ ନ ଥା ତୁହ୍ମ
ବନ୍ଧୁ ବାନ୍ଧବ ଘେନି ସଙ୍ଗେ
ସମୁଦ୍ରେ ପଶ ଯାଇ ବେଗେ ।୬୦,୬୧

ଜଳଧି ଦ୍ୱୀପ ମଧ୍ୟଗତେ
ଗରୁଡ଼ଭୟ ନାହିଁ ତୋତେ
ମୋହର ପାଦ ଚିହ୍ନ ଶିରେ
ଲାଗିଲା ସହସ୍ର ଫଣାରେ
ଗରୁଡ଼ ଦେଖି ନମସ୍କରିବ
ତୋହର ଚରଣେ ପଡ଼ିବ
ନିର୍ଭୟ ହୋଇ ବେଗେ ଯାଅ
ମୋର ଭକତି ହୃଦେ ବହ
ଏ ଜଳ ଅମୃତ ତୁ କର
ଗରଳ ବେଗେ ପରିହର
ଏ ବନେ ଯେତେ ବନଚାରୀ
ଆନନ୍ଦେ ଜଳପାନ କରି
ସୁଖେ ବଞ୍ଚିବେ ସର୍ବ ଜୀବେ
ଏବେ ନିଶ୍ଚିନ୍ତେ ରହିବେ
ଶୁଣ କାଳିୟ ମୋ ଉତ୍ତର
କହଇ ତୋତେ ଦେଇ ବର
ତୋର ମୋହର ଏ ଚରିତ
ଯେ ସ୍ମରିବେ ଅବିରତ
ସର୍ପ ବିଘ୍ନେ ନାହିଁ ବାଧା
ଯେ ଜନ ସୁମରେ ତ୍ରିସନ୍ଧ୍ୟା
ଏ ଜଳେ ସ୍ନାହାନ କରିବ
ପିତୃ ତର୍ପଣ ପିଣ୍ଡ ଦେବ
ଆହାର ତେଜି ଉପବାସେ
ଜାଗର ଦେଇ ନଦୀପାଶେ
ମୋ ନାମେ ରଜନୀ ବଞ୍ଚିବ
ସକଳ ପାପୁଁ ସେ ତରିବ ।୬୨-୬୪
ହରି ଆଦେଶ ଘେନି ଶିରେ
ଝାଟରେ ଉଠିଲା ଧାଡ଼କାରେ
କୁଟୁମ୍ବ ଘେନିଣ ସଙ୍ଗରେ
ପୂଜିଲା ଗୋବିନ୍ଦ ପୟରେ

ଗନ୍ଧ ଚନ୍ଦନ ରଙ୍ଗ ବାସ
ଅମୂଲ୍ୟ ରତ୍ନ ମଣି ହାସ
କମଳମାଳ କଣ୍ଠେ ଦେଇ
ନାଚେ ଆନନ୍ଦେ ଗୀତ ଗାଇ
କୁଟୁମ୍ବ ଘେନି ପ୍ରଦକ୍ଷିଣ
କାଳିୟ କଲା ପୁଣ ପୁଣ
ଉତ୍ତର ଦିଗକୁ ଗୃହ୍ନିଲା
ଗୋବିନ୍ଦ ଆଦେଶେ ଚଳିଲା ।୭୫-୭୭
ସେ ହ୍ରଦୁଁ ଜଳପାନ କରି
ଆନନ୍ଦ ଗୋପ ନରନାରୀ ।୭୮
ସେ ହରି ଚରଣ କମଳେ
ମୋ ମନ ରହୁ ସୁଖଭେଳେ
ସୁଜନେ ଶୁଣ ମୋ ବଚନ
କୃଷ୍ଣ ଚରଣେ ଦେଇ ମନ
ହୃଦେ ଚିନ୍ତିବ ନରହରି
ସୁଖେ ତରିବ ଭବବାରି
ଭକତ ଜନେ ଏଥି ରସ
କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ କାଳିୟ ନିର୍ବାସନଂ
ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

********

## ଅଷ୍ଟାଦଶ ଅଧ୍ୟାୟ

( ମୂଳାନୁସାରେ ୧୭ଶ ଅଧ୍ୟାୟ )

ନାଗଂ ସପ୍ତଦଶେ ନାଗାଳୟଂ ତଂ ନିରଯାପୟତ୍
ବନ୍ଧୂନ୍ ସ୍ୱଦୁଃଖିତଃ ଶ୍ରାନ୍ତାନ୍ ସୁପ୍ତାନ୍ ଅଥ ଦବାଦପାତ୍ ।୦।

ଅଠର ଅଧ୍ୟାରେ କାଳିୟ । ସର୍ପକୁ ପେଷି ନାଗାଳୟ ॥
ବନଅନଳୁଁ ଗୋପଗଣ । ଶ୍ରୀକୃଷ୍ଣ କଲେ ପରିତ୍ରାଣ ।୦।

ରାଜୋବାଚ

ବୋଲଇ ଅଭିମନ୍ୟୁ ସୁତ
ହେ ମୁନି ! କହ ଭାଗବତ
କେବଣ ହେତୁ କାଳ ସର୍ପ
ଛାଡ଼ିଲା ରମଣକ ଦ୍ୱୀପ
ଗରୁଡ଼େ କେଉଁ ଅପରାଧେ
ପଶି ସେ ଥିଲା କାଳି ହ୍ରଦେ
ହରି ଚରଣ ଚିହ୍ନ ଶିରେ
ଆନନ୍ଦେ ଗଲା ନିଜପୁରେ
ଏ କଥା କହ ମୁନି ମୋତେ
ସଂସାରୁ ତରିବ ଯେମନ୍ତେ ।୧

ଜପନ୍ତି ଶୁକମୁନି ତୋଷେ
ଗୋବିନ୍ଦ ଚରଣ ବିଶ୍ୱାସେ

ଶ୍ରୀ ଶୁକ ଉବାଚ

ଶୁଣ ହୋ କାଳିୟର କଥା
ଭୁ ମୋକ୍ଷପଦଦ ଶୁଦ୍ଧଚେତା
ବ୍ରହ୍ମା ଯେ ସଂସାର ଭିଆଇ
ଯେ ଯାହାମନେ ସ୍ଥାନ ଦେଇ
କାଳିୟଆଦି ଯେତେ ସର୍ପ
ଥୋଇଲା ରମଣକ ଦ୍ୱୀପ
ନିର୍ଭୟ ହୋଇ ଥାନ୍ତି ତହିଁ
ଗରୁଡ଼େ ବଳି ଭୋଜ୍ୟ ଦେଇ
ବନ ଗହନ ବୃକ୍ଷମୂଳେ
ଗରୁଡ଼ ପୂଜନ୍ତି ସକଳେ
ମାସକେ ନାନା ଉପହାରେ
ପାଳି ପଡ଼ଇ ଏକ ଘରେ
ନିଜ ବଳି ଭୋଜ୍ୟ ଦେଇ ତୋଷେ
ପୂଜନ୍ତି ଜୀବନର ଆଶେ । ୨,୩
ଏମନ୍ତେ କାଳିୟର ଘରେ
ପାଳି ପଡ଼ିଲା ଏକ ବାରେ
ନାଗେ କହିଲେ ଯାଇ ବେଗେ
ପାଳି ପଡ଼ିଲା ତୋର ଭାଗେ
ଶୁଣି କାଳିୟ କ୍ରୋଧ ଚିତ୍ତେ
ସଜ୍ଜା ସେ କଲା ନାନାମତେ
ଦଇବେ ନାଗଙ୍କର ରାଜା
ଅନେକ କଲା ବଳି ଭୋଜ୍ୟ
ବୃକ୍ଷର ମୂଳେ ନେଇ ଥୋଇ
ଅନେକ ବାଦ୍ୟ ନାଦ ବାଇ
କାଳିୟ ବିଚାରଇ ଦେଖି
ଗରୁଡ଼ ବୋଲି କେଡ଼େ ପକ୍ଷୀ

ଏତେକ ଭୋଜ୍ୟ ତାକୁ ଦେବି
ତେବେ ସେ ନିର୍ଭୟ ହୋଇବି
ଏ ମୋତେ ବଡ଼ ଲଜ୍ଜା ହୋଇ
ବାସୁକି ମୋର ସାନ ଭାଇ
ଏକ ଫଣାକେ ମହୀ ଧରେ
ମୁଁ କମ୍ପା ଗରୁଡ଼କୁ ଡରେ
ସହସ୍ରେ ଫଣା ଅଛି ମୋର
ଗରୁଡ଼ କେଡ଼େ ବଳୀୟାର
ଆଜ ଗଞ୍ଜିବି ତାର ବଳ
ନିର୍ଭୟ ହେଉ ନାଗକୁଳ
କେ ଅବା ନ ଜାଣନ୍ତି ମୋତେ
ବ୍ରହ୍ମାଣ୍ଡମଧ୍ୟେ ଛନ୍ତି ଯେତେ
ଏମନ୍ତ ବିଚାରିଲା ମନେ
ସବୁ ଖାଇଲା ଦୁଷ୍ଟପଣେ
ବେଢ଼ି ରହିଲେ ନାଗବଳେ
ବୋଲଇ ମତ୍ତଗର୍ବ ଭୋଳେ
"ଯାଅ ରେ" ବୋଲି ଆଜ୍ଞା ଦେଲା
ଆପଣେ ବନସ୍ତେ ରହିଲା
ସହସ୍ରେ ଫଣା ଫୁ ଫୁ କରି
ବଦନେ ଅନଳ ଉଦ୍‌ଗାରି । ୪
ଏମନ୍ତେ ରଜନୀ ହୋଇଲା
ଗରୁଡ଼ ପକ୍ଷୀ ବିଜେ କଲା
ଗଗନ ପୂରିଲା ଶବଦେ
କାନନେ ମିଳିଲା ଆନନ୍ଦେ
ବୃକ୍ଷମୂଳକୁ ଦେଲା ଦୃଷ୍ଟି
ଦେଖିଲା ବଳି ଭୋଜ୍ୟ ନାହିଁ
ମନେ ପାଇଲା ଗରୁ ତାପ
ମିଳିଲା କାଳିୟ ସମୀପ
କୋପେ ଗର୍ଜ୍ଜିଲା ଖଗନାଥ
ଆବୋର କାଳିୟର ପଥ

ଗର୍ଜ୍ଜେ ଗରୁଡ଼ କୋପଭରେ
କାଳୟ ମିଳିଲା ସମ୍ମୁଖରେ
ସହସ୍ରେ ଫଣା ନେଲା ପ୍ରାୟେ
ଦଂଶିଲା ଗରୁଡ଼ର ଦେହେ
ଅର୍ଦ୍ଧ ଯୋଜନେ ଘୁଞ୍ଚିଗଲା
ପୁଣିହିଁ ଆଗେ ଓଗାଳିଲା
ବିନତାସୁତ ତାହା ଗୃହିଁ
ଗୃପୋଡ଼େ ପ୍ରହାରିଲା ନେଇ
ହରିଙ୍କି ବହଇ ଯେ କନ୍ଧେ
ସେ କି ପଡ଼ଇ ପରମାଦେ । ୫,୨
ଗରୁଡ଼ ପକ୍ଷିଘାତ ପାଇ
କାଳୟ ମୂର୍ଚ୍ଛାଗତ ହୋଇ
ଘଡ଼କେ ଜୀବନ ପାଇଲା
ପଚନ୍ତୁ ବେଗେ ପଳାଇଲା
କାଳନ୍ଦୀହ୍ରଦେ ପଶିଗଲା
ପାତାଳବିବରେ ଲୁଚିଲା
କାଳୟ ତଦନ୍ତ ଜାଣଇ
ଗରୁଡ଼ ଏଥି ନ ପଶଇ
ନିର୍ଭୟେ ବନ୍ଧୁଜନସଙ୍ଗେ
ରହିଲେ ରହିଲା ଜବରଙ୍ଗେ
ଶୁଣି ସଂନନ୍ଦ ନରପତି
ମୁନିଙ୍କି ପୃଚ୍ଛିଁ ତୋଷ ମତି
* ( ପରୀକ୍ଷିଦୁବାଚ
ବୋଲଇ ନରନାଥ ମୁହିଁ
ତୋର ବଚନେ ମନ ଦେଇ
ହେ ମୁନି ! ଅସମ୍ଭବ କଥା
ଗରୁଡ଼ ମହାବଳବନ୍ତା
ଗୋବିନ୍ଦ ଯାହାର ଠାକୁର
କେ ତାର ତୁଲେ ବଳୀୟାର
କାଳନ୍ଦୀଜଳେ ନ ପଶିଲା
ମୋତେ ତ ସନ୍ଦେହ ଲାଗିଲା
ହସି ବୋଲନ୍ତି ବ୍ୟାସ ସୁତ
ଶୁଣ ହେ ନୃପତି ବୃତ୍ତାନ୍ତ
ଶ୍ରୀ ଶୁକ ଉବାଚ
ପୂର୍ବେ ସେ ନଦୀଘାଟରେ ବନେ
ତପ କରନ୍ତି ମୁନି ଜନେ
ସୌଭରି ନାମେ ମହାଋଷି
ତପ କରନ୍ତି କୂଳେ ବସି
ମୁନିନିକଟେ ମୀନଗଣେ
ଖେଳୁଣ ଥାନ୍ତି ଅନୁକ୍ଷଣେ
ବିଶ୍ୱାସଭାବେ ନିତ ନିତ
ମୁନିଙ୍କ ନ କରନ୍ତି ଭୀତ
ହେନେକ ପ୍ରଭାତର କାଳେ
ଆସି ମିଳିଲେ ମତ୍ସ୍ୟବାଳେ
ରୋହିତ ନାମେ ମତ୍ସ୍ୟରାଜ
ଖେଳଇ ଉଛାରଣ ଲାଜ
ବାଳକ ମତ୍ସ୍ୟ ହୀଡ଼ା କରି
ଖେଳନ୍ତି ଦେଖେ ସଉଭରି )
ଏମନ୍ତେ ଗରୁଡ଼ ମିଳିଲା
ତତକ୍ଷଣେ ଜଳେ ଓହ୍ଲାଇଲା
ଆହାର ଅର୍ଥେ ଉଡ଼ୁଥିଲା
ଜଳରେ ମୀନକୁ ଦେଖିଲା
ନିଷ୍ଠୁରେ ମୀନ ଚରୁଥିଲା
ଜଳ ହାଦୋଳ କରିଦେଲା

* ବନ୍ଧନୀସ୍ଥିତ ବିଷୟ ମୂଳସଂସ୍କୃତର ଇତିହାସ

ନଷ୍ଟ କଲେ ବହୁରଇ ମତ୍ସ୍ୟ
ମୁନି ତା ଦେଖନ୍ତି ପ୍ରତ୍ୟକ୍ଷ
ମୁନି ବୋଲନ୍ତି ରହ ରହ
ଏମାନେ ମୋହରଟି ଦେହ
ଗରୁଡ଼ ନ ଶୁଣିଲା କର୍ଣ୍ଣେ
ହେଳିତ ଗିଳିଲା ବନ୍ଧନେ । ୯
ଦେଖି ଚକିତ ମୁନିବର
କୋପେ କମ୍ପିଲେ ଗୁରୁତର
ବୋଲନ୍ତି ହରିଙ୍କି ଏ ବନ୍ଧି
ଏହାକୁ କୋପ ନ ଯୋଗାଇ
ମୁଁ କଲେ ଏହାକୁ ବିନାଶ
କୋପ କରିବେ ପୀତବାସ
ଏମନ୍ତେ ଚିନ୍ତିଣ ହୃଦେ କରି
କୋପେ ବୋଲନ୍ତି ସଉଭରି
ରେ ରେ ଗରୁଡ଼ ! ଏଡ଼େ ଗର୍ବ
ମୋତେ ଦେଖାଇଲୁ ସ୍ୱଭାବ
ମୋହର ମନେ କଲୁ ତାପ
ଉଚିତେ ଘେନ ମୋର ଶାପ
କାଳିନ୍ଦୀଜଳେ ନ ପଶିବୁ
ଜୀବନେ ଯେତେ କାଳ ଥିବୁ
ଯେବେ ପଶିବୁ ଦୁଷ୍ଟପଣେ
ଭସ୍ମ ହୋଇବୁ ତତ୍‌କ୍ଷଣେ ।୧୦,୧୧
ଶୁଣି ପଳାଇ ଖଗବର
ମିଳିଲା ଆପଣା ମନ୍ଦିର
ତାହା କାଳିୟ ଥିଲା ଜାଣି
ଲୁଚି ପଶିଲା ମନେ ଗୁଣି ।୧୨
ଶୁଣ ପରୀକ୍ଷ ଦଣ୍ଡଧାରୀ !
କୂଳେ ବିଜୟ ନରହରି
କାଳିୟ ସକୁଟୁମ୍ବ ଘେନି
ପୂଜ ଯେ ଗଲା ପାଦ ବେନି
କୃଷ୍ଣର ଦେଖିଣ ବଦନ
ଆନନ୍ଦ ଯଶୋଦାର ମନ
ଗୋପୀ ଗୋପାଳେ ବେଗେ ଧାଇଁ
କୋଳ କରନ୍ତି ଚୁମ୍ବ ଦେଇ
ହରିଙ୍କି ପାଇ ତୋଷ ଚିତ୍ତେ
ଚିନ୍ତା ଗୁଞ୍ଜିଲେ ହୃଦଗତେ
କୃଷ୍ଣଙ୍କୁ ଦେଖି ହଳଧର
କୋଳ କରନ୍ତି ସ୍ନେହଭର
ଗାଈ ଗୋବତ୍ସା ଦେଖି ତୋଟେ
ରହିଲେ ମନର ହରଷେ ॥
ଆସି ମିଳିଲେ ବିପ୍ରଜନ
ନନ୍ଦଙ୍କୁ ବୋଲନ୍ତି ବଚନ
ବୋଲନ୍ତି ଭାଗ୍ୟବନ୍ତ ତୁହି
ଏମନ୍ତ ଦେଖିଲୁ ନାହିଁ
ଏତେ ଆପଦୁଁ ପୁତ୍ର ତର
ନଷ୍ଟେ ରଖିଲେ ମୁରାରି
ପୂର୍ବେ ଯାହାର ପୁଣ୍ୟ ଥାଇଁ
ସକଳ ଦୁଃଖ ସେ ତରଇ
କାଳିନ୍ଦୀ-ବିଷ-ଜଳ ଭୟେ
ପକ୍ଷୀଏ ନ ଉଡ଼ନ୍ତି ବାୟେ
କଲ୍ୟାଣ ହେଉ ତୋ କୁମର
ବୋଲି ଚଳିଲେ ବିପ୍ରବର ।୧୩-୧୮
ଏମନ୍ତେ ହୋଇଲା ରଜନୀ
ଗୋପାଳେ ରାମ କୃଷ୍ଣ ଘେନି
ଗୋପକୁ ଯାଇ ନ ପାରିଲେ
ରଜନୀ ବଞ୍ଚିବା ବୋଇଲେ
କ୍ଷୁଧା ପିପାସା ଦୁଃଖଭରେ
ଶୋଇଲେ କାଳିନ୍ଦୀର ତୀରେ ।୧୯
ଏମନ୍ତେ ଶୁଣ ମହୀପତି
ଅଗ୍ନି ବେଢ଼ିଲା ଚଉକତି

ଦଇବେ ନଦାଘର କାଳ
ବନ ଅନଳ ଅନ୍ତରାଳ
ପ୍ରଳୟ ଅଗ୍ନି ପ୍ରାୟ ହୋଇ
ବେଢ଼ିଲେ ଗୋପାଳଙ୍କୁ ଯାଇ
ନିଦ୍ରାରେ ନ ଜାଣନ୍ତି କେହି
ରଜନୀଅର୍ଦ୍ଧ ଅଛି ହୋଇ ।୨୦
ଏମନ୍ତେ ଗୋପାଳେ ଦେଖିଲେ
ବେଗେ ଶୟନ ଉପେକ୍ଷିଲେ
ଅଗ୍ନି ଜଳଇ ପରଖର
ପବନ ବେଗେ ବଳୀୟାର
ଦେଖି ଗୋପାଳେ ଖରତରେ
ପଶିଲେ କାଳନ୍ଦୀ ଭିତରେ
ଶ୍ରୀକାନ୍ତ ରଖ ନାରାୟଣ
ଗୋକୁଳ ତୋହର ଶରଣ
କୃଷ୍ଣ ତୁ ସଙ୍କଟୁ ତାରିଲୁ
ତୁ ନାଥ ପରମ ଦୟାଳୁ
ଏବେ ଆପଦୁଁ ରଖ ତୁହି
ଅନାଥ ହୋଇଲୁଁ ଗୋସାଇଁ !
ଗାଈ ଗୋପାଳ ପୁଅ ଆଦି
ଅମ୍ଭଙ୍କ ଆସିଲା ନବେଢ଼ି ।୨୧-୨୩
ଗୋକୁଳ କଷ୍ଟ ଦେଖି ହରି
ଅନନ୍ତ ମାୟାଯୋଗ କରି
ଦାସବତ୍ସଳ ଗୋପୀନାଥ
ଅନଳ କଲେ ଗର୍ଭଗତ
ମାୟାରେ ଜଳଧର ଆସି
ବୃଷ୍ଟି କରନ୍ତି ବନେ ପଶି
ତକ୍ଷଣେ ଅନଳ ଲିଭିଲା
ରବିକିରଣ ପ୍ରକାଶିଲା
ଶୁଭେ ପାହିଲା ଘୋର ନିଶି
ନିର୍ମଳ ଦଶଦିଗ ଦିଶି
ସେ ହରି ମହିମା ଅନନ୍ତ
ଅନନ୍ତ ଶକ୍ତି ଗୁଣେ ଯୁତ
ଗୋପ ଗୋକୁଳ ରକ୍ଷାକରି
ଗୋପେ ମିଳିଲେ ନରହରି ୨୪
ଗୋପାଳେ ହୋଇଲେ ଉଷତ
କହିଲା ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଦାବାଗ୍ନି ମୋଚନଂ
ନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।



# ଊନବିଂଶ ଅଧ୍ୟାୟ

( ମୂଳାନୁସାରେ ୧୮ ଶ ଅଧ୍ୟାୟ )

ଅଷ୍ଟାଦଶେ ଚତୋଗ୍ରୀଷ୍ମେ ବସନ୍ତଗୁଣ ଲକ୍ଷିତେ ।
ଅଘାତୟଦ୍ ବଲେନାଜଂ ପ୍ରଲମ୍ବଂ ଲୀଳୟା ହରିଃ । ୦ ।

ପ୍ରଲମ୍ବାସୁର ବଧବାଣୀ । ଊନବିଂଶରେ ବଖାଣି ॥

ଶ୍ରୀ ଶୁକ ଉବାଚ

ଏବେ ହେ। ଶୁଣ ନରନାଥ
ଅମୃତ କୃଷ୍ଣର ଚରିତ
ଗୋପାଳେ ବୃନ୍ଦାବନେ ଥିଲେ
ସୁଷ୍ଟେ ରଜନୀ ପୁହାଇଲେ
ରାମ ଗୋବିନ୍ଦ ଯେନ୍ତ ସଙ୍ଗେ
ଜ୍ଞାତି ବାନ୍ଧବ ଯେନ୍ତ ରଙ୍ଗେ
ଯେ ଯାହା ପୁରେ ଗୋପେ ଯାଇ
କଦମ୍ବ ବୃକ୍ଷକୁ ବସାଇ
କୃଷ୍ଣର ଯେତେ କର୍ମମାନ
ଶୁଣି ସକଳେ ତୋଷମନ । ୧ ।
ମାୟା ଗୋପାଳ ରୂପ ହୋଇ
କ୍ରୀଡ଼ା କରନ୍ତି ବେନଭାଇ
ଏମନ୍ତେ ଶୁଣ ପରୀକ୍ଷିତ
ସ୍ୱଭାବେ ସରିଲା ବସନ୍ତ
ନିଦାଘ କାଳ ଆଗମନେ
ଘର୍ମ ନ ଲାଗେ ବୃନ୍ଦାବନେ
ସର୍ବଦା ବସନ୍ତ ପବନ
ସୁଧୀରେ ବହେ ବନୁ ବନ
ବସନ୍ତ ନୁହେ ନା ବୁଝିବ
ଯେ ବନେ ଶ୍ରୀରାମ ମାଧବ । ୨,୩
ନଦୀ ନିର୍ଝର ଜଳନାଦ
ନିଷ୍କଳ ଝିଙ୍କାରି ଶବଦ
ଅତି ଶୀତଳ ବନସ୍ଥଳୀ
ନିର୍ଝର ଜଳକଣା ମିଳି
ନଦୀ ତଡ଼ାଗ ପ୍ରସ୍ରବଣ
ପବନ ଯୋଗେ ସ୍ନିଗ୍ଧ ବନ
ଜଳେ ଅଛଇ ପୁଷ୍ପ ଯେତେ
କମଳ କୁମୁଦ ସର୍ବତେ
ତାହାଙ୍କ ରେଣୁ ଯେନ୍ତ ବଳେ
ପବନ ବହେ କୁତୂହଳେ
ଏଣୁ ସେ ବୃନ୍ଦାବନ ଦେଶେ
ନିଦାଘ ଗ୍ରୀଷ୍ମ ନ ପଶେ
ଘନ ଗହଳ ବନଭୂମି
ତେଣୁ ନୁହନ୍ତି ଜୀବେ ଶ୍ରମୀ
ପଙ୍କ ଦ୍ରବଇ ବେନି ତଟେ
ସେ ଜଳେ ଗ୍ରୀଷ୍ମବାସ କଟେ
ଅରୁଣ ତେଜ ନ ଲାଗଇ
ଯଦି ବଜୟ ଭବଗ୍ରାହୀ । ୪-୬
ସ୍ୱଭାବେ କୁସୁମିତ ବନ
ମୃଗ ମୟୂର ପକ୍ଷୀଗଣ
କୋକିଳ ସାରସ ନିକର
ଭ୍ରମର ଧ୍ୱନି ମନୋହର । ୭ ।

ଶୁଣ ରାଜନ ସାବଧାନେ
ରାମ ଗୋବିନ୍ଦ ଏକ ଦିନେ
ଗୋରୁ ଗୋପାଳ ସଙ୍ଗେ ଘେନ
ବିଶେଷ କଲେ ବେଣୁଧ୍ୱନ
ବାଳକ କ୍ରୀଡ଼ା ସାବଧାନେ
କୃଷ୍ଣ ବିଜୟ ବୃନ୍ଦାବନେ । ୮
ପ୍ରବାଳ ବରହ ସ୍ତବକ
ଧାତୁ ଭୂଷଣ ରଙ୍ଗ ରେଖ
ରାମ ଗୋବିନ୍ଦେ ଗୋପସୁତେ
ଖେଳନ୍ତ ନୃତ୍ୟ ଯୁଦ୍ଧ ଗୀତେ ।୯
କୃଷ୍ଣର ନୃତ୍ୟ ଗୋପେ ଦେଖି
ମିଳିଲେ ଘରନ୍ତ ଉପେକ୍ଷି
କେ ତାଳ ବାଏ ମନୋହରେ
ଗମ୍ଭୀର ଗୀତ ନାଦ ସ୍ୱରେ
ଶିଙ୍ଗା ମୁରଲି ନାଦ ପୂର
କେ ସାଧୁ ଧନ୍ୟ ଧନ୍ୟ କର ।୧୦
ଦେବେ ଯେ ଥିଲେ ଶୂନ୍ୟପଥେ
ମିଳିଲେ କୃଷ୍ଣର ଅଗ୍ରତେ
ବନେ ଗୋପାଳ ରୂପ ହୋଇ
କୃଷ୍ଣର ଚଉପାଶେ ଥାଇ
ସ୍ତୁତି କରନ୍ତ କୃଷ୍ଣରାମେ
ଘଟେ ଯେସନ ଗୁଣଗାନେ
ଏକ ଆରେକ ସାଧୁ ଭଣି
ଶୁଣି ପାଣ୍ଡବ ଚୂଡ଼ାମଣି ।୧୧
ତାଣ୍ଡବ ରସେ ସୁଖେ ହର
ବୃନ୍ଦାବନରେ କ୍ରୀଡ଼ା କର
ବାଳକେ ରାମ କୃଷ୍ଣ ମେଳେ
ଯୁଦ୍ଧ କରନ୍ତ ବାହୁବଳେ
କୃଷ୍ଣର ନୃତ୍ୟ ଦେଖି ପୋଏ
ରାମଙ୍କୁ ବେଢିଲେ ଥୋକାଏ
ଖେମଣ୍ଟା ରସେ ଗୀତ ଗାଇ
କେ ଧାଇଁ ଶିଙ୍ଗାନାଦ ବାଇ
ତାଳ ମୁରଲି ଗାଲଗୁର
ନାଚନ୍ତ ବ୍ରହ୍ମାଣ୍ଡ ଠାକୁର
ନୃତ୍ୟ କରନ୍ତ ପରଶଂସା
ଥୋକେ କରନ୍ତ ଗୀତ ରସା
ଥୋକେ କରନ୍ତ ନାନା ସ୍ତୁତି
ହରଷେ ପୁଷ୍ପ ବରଷନ୍ତ
କୃଷ୍ଣର ସଙ୍ଗେ ନୃତ୍ୟ କର
ବୁଲନ୍ତ ବୃନ୍ଦାବନ ହେର
କେ ବଳେ ଏକୁ ଆରେ ଧର
ଡାକନ୍ତ ବାହା ନାଦ କର
କୃଷ୍ଣ ଉଠିଲେ ଉଚ୍ଚ ବୃକ୍ଷେ
ଫଳ ତୋଳିଲେ ନାନା ଶାଖେ
ପୁଏ ଆଣିଲେ ଯେଝା ମତେ
ଅମର ଲୋକେ ଯୂଥେ ଯୂଥେ
ଏକ ଆରେକ ମରାମର
ସାକ୍ଷୀ କେ କରନ୍ତ ମୁରାର
କର ଚରଣ ଧର ଛନ୍ଦେ
ଯୁଦ୍ଧ କରନ୍ତ ନାନାବନ୍ଧେ
କେ ପଛେ ଥାଇ ଚକ୍ଷୁ ବୁଜ
ନାମ ଧରନ୍ତ ମନେ ହେଜ
ମୃଗର ପ୍ରାୟେ କେହୁ ଧାଇଁ
ପକ୍ଷୀଙ୍କ ପ୍ରାୟେ କେ ଉଡ଼ଇ
ଭେକଙ୍କ ପ୍ରାୟେ କେ ଡିଅନ୍ତ
ଗୁଳନ୍ତ ଯେସନେ ହଂସପନ୍ତ
ବସ୍ତ୍ର ବାନ୍ଧନ୍ତ ବୃକ୍ଷଡାଳେ
ଦୋଳି ବସନ୍ତ କୁତୂହଳେ
ପର୍ବତକୁଞ୍ଜ ନଦୀକୂଳେ
ଖେଳନ୍ତ ରାମକୃଷ୍ଣ ମେଳେ

ଗାଈ ଚରାଇ ବେଣୁ ବାଇ
ବନେ ଖେଳନ୍ତି ବେନଭାଇ । ୧୨-୧୬
ଏମନ୍ତେ କଂସର ଅସୁର
ବନେ ମିଳିଲା ନଦାଣ୍ଡର
ପ୍ରଲମ୍ବା ନାମେ ମହାବଳୀ
ଲୁଚି ଦେଖଇ କୃଷ୍ଣ କେଳି
କ୍ଷଣକେ ସହି ନ ପାରିଲା
ଗୋପାଳ ରୂପେକ ଧଇଲା
ଅସୁର ବିଚାରଇ ମନେ
ଏହାକୁ ମାରିବି କେସନେ
ଗୋପାଳମାନେ ଥିବେ ପଶି
ମୋର ନିକଟେ ଯେବେ ଆସି
ମୁଣ୍ଡ ମୋଡ଼ିବି ଧରି କରେ
କହିବି କଂସର ଛାମୁରେ
ଏମନ୍ତେ ବିଚାରଇ ମନେ
ଲତାରେ ଥାଇ ବୃନ୍ଦାବନେ । ୧୭ ।
ତାହା ଜାଣିଲେ ଭବଗ୍ରାହୀ
କହନ୍ତି ଗୋପାଳଙ୍କୁ ଚାହିଁ
ବାଳକେ ଶୁଣ ମୋ ଉତ୍ତର
ମୁହିଁ ଜାଣଇଁ ଖେଳ ସାର
ରଜା ପରଜା ଖେଳୁ ଅଛୁ
ଆସ ଖେଳିବା ବଳ ଆଛୁ
ଶୁଣି ସାନନ୍ଦ ହୋଏ ହସି
ରୁଣ୍ଡ ହୋଇଲେ ସର୍ବେ ଆସି
ରାମ ଗୋବିନ୍ଦ କରି ରଜା
ସକଳେ ହୋଇଲେ ପରଜା
ଅଧେ ହୋଇଲେ ରାମଆଡ଼େ
ଥୋକେ ହୋଇଲେ କୃଷ୍ଣବାଡ଼େ
କୃଷ୍ଣ ବୋଇଲେ ଦୁଇ ଦୁଇ
ବଳ କଷିବା ଯୁଦ୍ଧ ହୋଇ
ଖେଳ ପାଞ୍ଚିଲେ ଗୋପ ଗୋଏ
ମାୟା ଭିଆଣ ଦେବରାୟେ
ଜଣ ଜଣକେ ନାମ ଧରି
ଯୁଦ୍ଧେ ପେଷିଲେ ନରହରି
ଶ୍ରୀଦାମ ନାମ ଗୋପବାଳେ
ଯୁଝିଲା ଗୋବିନ୍ଦର ତୁଲେ
ପ୍ରଲମ୍ବାସୁର ତୁଲେ ରାମ
ବୃଷଭ ତୁଲେ ଭଦ୍ରସେନ
ଏତେ ଭିଆଇ ଭବଗ୍ରାହୀ
ବୋଲନ୍ତି ଗୋପାଳଙ୍କୁ ଚାହିଁ
ଯୁଦ୍ଧ କରିବା ପ୍ରୀତି କରି
ସଂଗ୍ରାମେ ଯେ ଯାହାକୁ ହାରି
ଘେଣ୍ଟାରି ବଟ ତଳେ ନେଇ
ଥୋଇବ କାନ୍ଧରେ ବସାଇ
ହେଉ ବୋଇଲେ ଗୋପବାଳେ
ଯୁଝନ୍ତି ଯେ ଯାହାର ମେଳେ
ହାରିଲେ କାନ୍ଧ କରି ବହି
ଗୁଡ଼ନ୍ତି ବଟତଳେ ନେଇ । ୧୮-୨୩
ଏମନ୍ତେ ପ୍ରଭୁ ଦଇତ୍ୟାରି
ଶ୍ରୀଦାମ ତୁଲେ ଯୁଦ୍ଧ କରି
ତାହାଙ୍କୁ ଯୁଦ୍ଧେ କୃଷ୍ଣ ହାରି
ବଟେ ଗୁଡ଼ିଲେ କାନ୍ଧେ କରି
ପ୍ରଲମ୍ବାସୁର ରାମ ସଙ୍ଗେ
ପଡ଼ିଲା ପଞ୍ଝାପଞ୍ଝି ରଙ୍ଗେ
ଯୁଦ୍ଧ କରନ୍ତେ ଗୁରୁତର
ରାମକୁ ହାରିଲା ଅସୁର
ତତକ୍ଷଣେ ବସାଇଲା କାନ୍ଧେ
ମନେ ବିଚାରିଲା ଆନନ୍ଦେ
ଏହାକୁ ବଟ ପାଏ ନେଇ
ଯେବଣେ ପଳାଇବି ମୁହିଁ

ମୁଣ୍ଡ ମୋଡ଼ିବ ବନେ ପଶି
ପୁଣି ମିଳିବ ଏଥେ ଆସି
କୃଷ୍ଣ ପଡ଼ିବ ଯେତେବେଳେ
ତକ୍ଷଣେ ନେଇ ଅନ୍ତରାଳେ
କଂସ ସ୍ତମ୍ଭରେ ଦେବ ନେଇ
ନିଶ୍ଚିନ୍ତେ ଭୁଞ୍ଜିବ ସେ ମହୀ । ୨୪ ।
ଏତେ ବିଚାରି ମହାସୁର
କାନ୍ଧେ ବସାଇ ହଳଧର
ଭଣ୍ଡୀର ବଟ ଗଲା ଜାଣି
ତାହା ଜାଣିଲେ ହଳପାଣି
କୋଟିଏ ମେରୁ ଯେହ୍ନେ ଭାର
ଚଳି ନ ପାରିଲା ଅସୁର
ତକ୍ଷଣେ ନିଜ ରୂପ ଧରି
ଅସୁର ଗଗନେ ସଞ୍ଚରି
ନୀଳ ଜୀମୂତ ଦେହ କାନ୍ତି
ରତ୍ନ ଭୂଷଣ ଝଟକନ୍ତି
ସ୍ୱଭାବେ ନାନା ଅଳଙ୍କାର
ତେଜେ ବିସ୍ତାରିଲା ଅସୁର
କି ଅବା ଦେବା ପଟାନ୍ତର
ଯାହାର କାନ୍ଧେ ହଳଧର
ବିଜୁଳି ଯେହ୍ନେ କଳା ମେଘେ
ଯେସନେ ଶଶାଙ୍କର ଲାଗେ ।୨୫,୨୬
ଗଗନେ ଯାଉଅଛି କ୍ଷେପି
ରାମ ଡରିଲେ ତାହା ଦେଖି

ଭ୍ରୂକୁଟୀ କୁଟିଳ ପ୍ରପଞ୍ଚ
ବିକଟ ଦନ୍ତ ତୀକ୍ଷ୍ଣ ଉଚ୍ଚ
ଶୁଦ୍ଧ ସୁବର୍ଣ୍ଣେ ଦେହ ଝଳି
ନୀଳ ମେଘରେ କି ବିଜୁଳି । ୨୭ ।

ତକ୍ଷଣେ ପ୍ରଭୁ ହଳଧର
ଜାଣିଲେ ନିଶ୍ଚୟ ଅସୁର
ମୁଷ୍ଟିଏ ପ୍ରହାରିଲେ ମୁଣ୍ଡେ
ବଜ୍ର ଯେସନେ ଗିରି ଖଣ୍ଡେ
ମୁଣ୍ଡ ହୋଇଲା ଶତେ ଚୂର
ଶବଦ କଲା ମହାଘୋର
ରୁଧିର ନିକଳିଲା ମୁଖେ
ପଡ଼ିଲା ଗୋବର୍ଦ୍ଧନ ପାଖେ । ୨୮,୨୯

ଦେଖି ଚକିତ ଗୋପପୋଏ
ସ୍ୱର୍ଗେ ଯେ ଥିଲେ ଦେବତାଏ
ସକଳେ ସାଧୁ ସାଧୁ ଭଣି
ପୁଷ୍ପ ସିଞ୍ଚିଲେ ଦେବେ ଆଣି
ବଳଦେବଙ୍କୁ ଧରି କୋଳେ
ଚୁମ୍ବନ ଦ୍ୟନ୍ତି ଗୋପବାଳେ
ଅବଶ୍ୟ ହୋଇଲା ଆନନ୍ଦ
ବାଳା! ମୂରଛା ଆହ୍ଲାଦକନ୍ଦ । ୩୦-୩୨
ସେ ରାମ ଚରଣେ ବିଶ୍ୱାସ
କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ପ୍ରଲମ୍ବାସୁର ବଧୋ ନାମ ଊନବିଂଶୋଽଧ୍ୟାୟଃ ॥ ୧୯ ॥

# ବିଂଶ ଅଧ୍ୟାୟ

( ମୂଳାନୁସାରେ ୧୯ ଅଧ୍ୟାୟ )

ଉନବିଂଶେ ନବଷ୍ଟାନ୍ତୁ ଗୋପଗୋକୁଲମଚ୍ୟୁତଃ ।
ମୁଞ୍ଜାରଣ୍ୟ ମରଣ୍ୟାଗ୍ନେ ରରକ୍ଷ ତନ୍ମ ପାନତଃ । ୦ ।

କୁଞ୍ଜକାନନେ ବନାନଳେ । ପଡନ୍ତେ ଗୋକୁଳ ଗୋପାଳେ ।
ତାରିଲେ ଶ୍ରୀନନ୍ଦନନ୍ଦନ । ବିଂଶତି ଅଧ୍ୟାୟେ ବର୍ଣ୍ଣନ । ୦ ।

ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ ନନ୍ଦନ
ରାଜନ ହୁଅ ସାବଧାନ
ଖେଳନ୍ତି ରାମ ନରହରି
ଗୋରୁଏ ଗଲେ ବନେ ଚରି
ଚରନ୍ତେ ତୃଣଲୋଭେ ଗାଈ
ପଶିଲେ ଗିରିପୁଞ୍ଜେ ଯାଇ । ୧।
ଅଜ ମହିଷି ଗୋରୁସଙ୍ଗେ
ପ୍ରବେଶ କୁଞ୍ଜବନ ଲାଗେ
ଅନଳ ଆବୋରିଲା ଆସି
କୁଞ୍ଜ ଗହନେ ଛନ୍ତି ପଶି
ବିକଳ ଚଉଦିଗ ଚାହିଁ
କାନ୍ଦନ୍ତି କୃଷ୍ଣ ମନେ ଧ୍ୟାୟି ।୨।
ପୋଏ ଯେ ଥିଲେ କୃଷ୍ଣ ସଙ୍ଗେ
ଖେଳୁଁ ଭୁଲିଲେ ଚାରିଦିଗେ
ବିକଳେ ଚଉଦିଗ ଚାହିଁ
ଲୋଡ଼ନ୍ତି ବନେ ବୁଲି ଗାଈ
ଗୋରୁଙ୍କ ଖୋଜ ଅନୁସରି
କାନ୍ଦନ୍ତି ଗାଈ ନାମ ଧରି
ଗାଈଙ୍କି ନ ଦେଖି ବିକଳ
ପଛେ ଅଛନ୍ତି ଆଦିମୂଳ
ପଥ ନ ପାଇ କୁଞ୍ଜବନ
ପୋଏ ଡାକନ୍ତି ଦୁଃଖ ମନେ
ତୃଷିତ ହୋଇ ବାହୁଡ଼ିଲେ
କୃଷ୍ଣର ନିକଟେ ମିଳିଲେ ।୩-୫
ପୁଅଙ୍କ ଦୁଃଖ ଦେଖି ହରି
ବୃକ୍ଷେ ଉଠିଲେ ଦଇତ୍ୟାରି
ନୀଳ ଜୀମୂତ ଦେହ ଝଳି
ପୀତବସନ ବନମାଳୀ
ମେଘଗମ୍ଭୀର ଉଚ୍ଚସ୍ୱରେ
ଗୋରୁଙ୍କୁ ଡାକନ୍ତି ସୁସ୍ୱରେ
ଗୋରୁଏ ନାମ ଶୁଣି କର୍ଣ୍ଣେ
ହୁଙ୍କାର କଲେ ତୋଷମନେ । ୬
ଏମନ୍ତେ ବେଢ଼ିଲା ଅନଳ
ଯେସନେ ପ୍ରଳୟର କାଳ
ପବନ ବହେ ଖରତର
ଚଣ୍ଡ ଶବଦ ମହାଘୋର
ଅନଳ ଦେଖି ଗୋପବାଳେ
କୃଷ୍ଣଙ୍କୁ ଡାକନ୍ତି ବିକଳେ ।୭,୮
ହେ ରାମ କୃଷ୍ଣ ! ଦେଖ ବେଗେ
ଅଗ୍ନି ବେଢିଲା ଚାରି ଦିଗେ
ଆମ୍ଭେ ତୋହରେ ବନ୍ଧୁ ବଳି
ତୋହରେ ଶରଣ ଗୋକୁଳ ।୯,୧୦

ଶ୍ରୀ ଶୁକ ଉବାଚ

ମୁନି ବୋଲନ୍ତି ଶୁଣ ରାଯ୍ୟେ
ଗୋକୁଳେ କଲେ କୃଷ୍ଣ ଦଯ୍ୟେ
ବୋଲନ୍ତି ସେ ସାହାର ମତେ
ଚକ୍ଷୁ ହୋ ବୁଜ ବେଣୁ ହସ୍ତେ
ଶୁଣି ଲୋଚନେ କର ଦେଇ
ବୋଲନ୍ତି କୃଷ୍ଣ ହାହା ହାହା
ଗୋବିନ୍ଦ ଯୋଗମାୟାବଳେ
ଅଗ୍ନି ଗିଳିଲେ କଣ୍ଠନାଳେ । ୧୧,୧୨
ଗୋପକୁମର ବେଗେ ଧାଇଁ
ମିଳିଲେ ବଟମୂଳେ ଯାଇଁ
ଘଣ୍ଡୀରତଳେ ଚକ୍ଷୁ ଫେଇ
ସକଳେ ଚଉଦିଗ ଚାହିଁ
ଗୋରୁଏ ମିଳିଲେ ତକ୍ଷଣ
ରଙ୍ଗେ ନାଚନ୍ତି ନାରାୟଣ । ୧୩
ହରିଙ୍କି ଚାହିଁ ଗୋପପୋଏ
ଗୁପତେ ଭଲନ୍ତି ଥୋକାଏ
କଏ କେବଣ ଦେବତାଏ
ଜାତ ହୋଇଛି ନରଦେହେ
ଅନେକ ସଙ୍କଟୁ ତାରିଲା
ଯଶୋଦା ଦେଖା ଭାଗ୍ୟ କଲା । ୧୪
ଏମନ୍ତେ ରବି ଅସ୍ତ କାଳେ
ଗୋବିନ୍ଦ ଧେନୁ ଗୋପବାଳେ
ଗୋପେ ହୋଇଲେ ପରବେଶେ
ବେଣୁ ଶବଦେ ଗୀତ ରସେ । ୧୫
ଗୋପୀଏ ନ ଦେଖି ମୁରାରି
ଦିନ ମଣନ୍ତି ଯୁଗ ପରି
ପରମାନନ୍ଦ ମୁଖ ଚାହିଁ
ଚିନ୍ତା ଗୁଞ୍ଜିଲେ ତୋଷ ହୋଇ । ୧୬
ସୁଜନେ ହରିପାଦେ ଚିନ୍ତ
ସଂସାରେ ନୁହିଁ ଭ୍ରମଚିତ୍ତ
ସମ୍ପଦ ସ୍ୱପ୍ନର ପରାଯ୍ୟେ
ଚିଆଁଇ ଚିନ୍ତ ଦେବରାଯ୍ୟେ
ହରି ଚରଣେ ଦିଅ ମନ
ଯେ ହରି ବିପଦମୋଚନ
ଆବର ଯେତେ ଦ୍ରବ୍ୟମାନ
ସେ ସବୁ ଜାଣିର ସ୍ୱପନ
ନିସ୍ତାର ହୋଇବ ଯେମନ୍ତ
କହିଲା ବିପ୍ର ଜଗନ୍ନାଥ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀ କୃଷ୍ଣେନ ଦାବାନଳ ଭକ୍ଷଣଂ ନାମ ବିଂଶୋଽଧ୍ୟାୟଃ । ୨୦ ।



# ଏକବିଂଶ ଅଧ୍ୟାୟ

( ମୂଳାନୁସାରେ ୧୮ ଶ ଅଧ୍ୟାୟ )

ବିଂଶେ ପ୍ରାବୃଟ୍-ଶୋଭା-ବର୍ଣ୍ଣନେନ ବନୋଚରାଃ ।
ପ୍ରାବୃଟ୍ କ୍ରୀଡ଼ା କରୂପ୍ୟନ୍ତେ ଗୋପରାମଯୁତୋ ହରେଃ । ୦ ।
ବର୍ଷା ଶରଦ ଶୋଭା ବର୍ଣ୍ଣି । ରାମ ଗୋବିନ୍ଦ ସଙ୍ଗ ହୋଇ ।
କ୍ରୀଡ଼ନ୍ତି ଯେସନେ ଗୋପାଳେ । ବର୍ଣ୍ଣନ ଏକବିଂଶତିରେ । ୦ ।

ଶ୍ରୀ ଶୁକଉବାଚ

ଶୁଣ ରାଜନ ହରିରସ
ଭୁ ଅଟୁ ଗୋବିନ୍ଦର ଦାସ
ହରିମହିମା ଶୁଣି କର୍ଣ୍ଣେ
ଗୋପୀ ଗୋପାଳ ତୋଷମନେ
ରାମ କୃଷ୍ଣଙ୍କୁ ପର‌ଶଂସି
କେଉଁ ଦେବତା ମର୍ତ୍ତ୍ୟେ ଆସି
ନୋହିଲେ ଏଡ଼େ କର୍ମ କାହିଁ
ବିଷମ ସଙ୍କଟୁ ତାରଇ
ପରମାନନ୍ଦମୁଖ ଚାହିଁ
ଚନ୍ତା ଛାଡ଼ିଲେ ତୋଷ ହୋଇ ।୧,୨
ଏମନ୍ତେ ଗ୍ରୀଷ୍ମ କାଳ ଗଲା
ବରଷା ଋତୁ ପ୍ରସରିଲା
ସକଳ ଋତୁଙ୍କର ସାର
ଶସ୍ୟ ସମ୍ପଦ ମଞ୍ଜପୁର
ମେଘେ ମିଳିଲେ ଶୂନ୍ୟପଥେ
ବିଜୁଳି ଶବଦ ସଙ୍ଗମତେ । ୩ ।
ଭୂମି ସାଗର ଶୂନ୍ୟ ବ୍ୟାପି
ନୀଳ ଜୀମୁତ ବିଶ୍ୱରୂପୀ
ଗଗନ ମେଘାଛନ୍ନ ହୋଇ
ଜ୍ୟୋତି ପ୍ରକାଶ ନ ଦିଶଇ
ଗୁଣେ ଆଛନ୍ନ ବ୍ରହ୍ମ ଯେହ୍ନେ
ଆକାଶ ନ ଦିଶେ ତେସନେ । ୪ ।
ଭୂମିର ରସ ଅଷ୍ଟ ମାସ
ଆଦିତ୍ୟ କରିଥିଲା ଗ୍ରାସ
ତେତେଜେ ଅବନୀ ଦୁଃଖ ଚାହିଁ
ଜଳ ଛାଡ଼ିଲା ତୋଷ ହୋଇ । ୫ ।
ଘୋର ଶବଦେ ମେଘମାଳ
ଗର୍ଜିଣ ବରଷନ୍ତି ଜଳ
ପ୍ରାଣୀ ଜୀବନ ଜଳରାଶି
କରୁଣା ଚିତ୍ତରେ ବରଷି । ୬ ।
ପୃଥିବୀ ରବିତେଜ ହାସେ
ତାପି ଯେ ଥିଲା ଅଷ୍ଟମାସେ
ଜଳ ପାଇଲା ତୋଷ ଚିତ୍ତେ
ତପସ୍ୱି ଜନଙ୍କର ମତେ
ତପର ଫଳ ଯେହ୍ନେ ପାଇ
ଭୁଞ୍ଜନ୍ତି ଆବୋରିଣ ଦେହି । ୭
ଖଦ୍ୟୋତ କୀଟ ନିଶାମୁଖେ
ଜଗତ ଆବୋରିଲେ ସୁଖେ
ପାଷଣ୍ଡେ ଯେହ୍ନେ କଳିଯୁଗେ
ବେଦ ନିନ୍ଦନ୍ତି ପାପଯୋଗେ । ୮
ମଣ୍ଡୁକେ ମେଘନାଦ ଶୁଣି
ଗର୍ଜନ୍ତି ଆବୋରିଣ ପାଣି

ରଜନୀ ଅନ୍ତେ ବିପ୍ର ଜନେ
କରନ୍ତି ବେଦଧ୍ୱନି ଯେହ୍ନେ । ୯
ଅଳପ ନଦୀଏ ପୂରିଲେ
ଲହରୀ ଯେନ ଉଚ୍ଛୁଳିଲେ
ପୁଣି ଶୁଖନ୍ତି ଜଳ ଅନ୍ତେ
ଅଳପ ଲୋକଙ୍କର ମତେ । ୧୦
ତୃଣରେ ଇନ୍ଦ୍ରଗୋପ ମିଶି
ସୈନ୍ୟସମ୍ପଦ ପ୍ରାୟ ଦିଶି
ଛତ୍ରୁଏ ଛତ୍ର ପ୍ରାୟ ହୋଇ
ରାଜାଙ୍କ ପ୍ରାୟେ ଦିଶେ ମହୀ । ୧୧
ଶସ୍ୟସମ୍ପଦ କ୍ଷେତ୍ରମାନେ
ଦେଖି ଆନନ୍ଦ କୃଷି ଜନେ
ଦଇବ ବଳ-ଅବଶ୍ୱାସେ
ତାପ କେ ପାଇଲେ ବିଶେଷେ । ୧୨
ଜନ୍ତୁଏ ଯେତେ ଜଳ ସ୍ଥଳେ
ଜଳ ଭକ୍ଷନ୍ତି କୁତୂହଳେ
ଦିନକୁ ଦିନ ପୁଷ୍ଟ ଦେହ
ହରିସେବକ ପ୍ରାୟ ହୋଇ । ୧୩
ସମୁଦ୍ର ନଦୀଙ୍କର ମେଳେ
କଲ୍ଲୋଳ ଉଠେ ପୂର୍ଣ୍ଣଜଳେ
ଅଳପ ଯୋଗୀଙ୍କର ଚିତ୍ତ
ଯେହ୍ନେ ଚଞ୍ଚଳ ଗୁଣଗ୍ରସ୍ତ । ୧୪ ।
ପର୍ବତେ ଜଳଧାର ଘାଏ
ଛିଡ଼ନ୍ତେ ନ କରନ୍ତି ଭୟେ
କୃଷ୍ଣଆଶ୍ରିତ ପ୍ରାଣୀ ଯେହ୍ନେ
ଦୁଃଖିତ ନୁହନ୍ତି ବ୍ୟସନେ । ୧୫
ପଥ ହୋଇଲା ତୃଣମୟ
ବାଟର ନ ମିଳିଲା ଥୟ
ବ୍ରାହ୍ମଣେ ବେଦ ପାସୋରିଲେ
ଯେମନ୍ତେ ହୋନ୍ତି ପଶୁରିଲେ । ୧୬

ଜଗତବନ୍ଧୁ ମେଘମାନେ
ବିଜୁଳି ନ ରହେ ନିଶ୍ଚଳେ
ଗୁଣୀ ପୁରୁଷ ଥାଉଁ ମେଳେ
ବିଟପୀମନ ଯେହ୍ନେ ଟଳେ । ୧୭
ଜଳଦ ମଧ୍ୟେ ଇନ୍ଦ୍ର ଚାପ
ଦିଶଇ ନୀଳ ପୀତ ରୂପ
ତ୍ରିଷାୟୁ ଗୁଣେ ହୋଇ ଯୁତ
ନିର୍ଗୁଣ ପୁରୁଷ ଯେମନ୍ତ । ୧୮
ଚନ୍ଦ୍ର ନ ଦିଶେ ମେଘାଚ୍ଛନ୍ନେ
ଆତ୍ମା ଯେସନେ ଅହମାନେ । ୧୯
ମୟୂରେ ଗିରିଶିଖେ ଥାଇ
ନୃତ୍ୟ କରନ୍ତି ମେଘ ଚାହିଁ
ସାଧୁ ଅତିଥି ଦେଖି ଜନେ
ତୋଷ ହୁଅନ୍ତି ଯେହ୍ନେ ମନେ । ୨୦
ବୃକ୍ଷଙ୍କ ମୂଳେ ଜଳ ପଶି
ଫଳ ପଲ୍ଲବ ପରକାଶି
ତପର ଅନ୍ତେ ଫଳପାଇ
ତପସ୍ୱୀ ଯେହ୍ନେ ତୁଷ୍ଟ ହୋଇ । ୨୧
ଜଳକୁକ୍କୁଟ ଆଦି ହଂସ
ପଙ୍କ କଣ୍ଟକେ କଲେ ବାସ
ଦୁଃଖ କଷଟେ ନର ନାରୀ
ଯେସନେ ଗୃହେ ବାସ କରି । ୨୨
ଜଳପ୍ରବଳେ ବନ୍ଧ ବୁଡ଼ି
ଯେହ୍ନେ ପାଷାଣ୍ଡେ ବେଦ ଏଡ଼ି । ୨୩
ପବନଯୋଗେ ମେଘ ବଟି
ଅମୃତ ପ୍ରାୟ ଜଳ ଗୁଡ଼ି
ବିପ୍ରଙ୍କ ବୋଲେ ମହୀପାଳ
ଯେହ୍ନେ ଦିଅନ୍ତି ଦାନକାଳେ । ୨୪
ବରଷାକାଳେ ବନଭୂଇଁ
ଖର୍ଜୁର ଜାମ୍ବୁ ସେ ପାଚଇ

ଗୋରୁ ଗୋପାଳ ସଙ୍ଗେ ଘେନି
ବନେ ବିଜୟ କରଇ ବେନି । ୨୫
ଗାଈଏ ସ୍ତନଭରା ହୋଇ
କର୍ଦ୍ଦମେ ନ ପାରନ୍ତି ଯାଇ
କୃଷ୍ଣର ଡ଼ାକ ଶୁଣି କର୍ଣ୍ଣେ
ନିକଟେ ମିଳିଲେ ବହନେ । ୨୬
ବନସ୍ତେ ଯେତେ ଜୀବ ଥିଲେ
ଗିରିକନ୍ଦର ଆଶ୍ରେ କଲେ
ସକଳ ବୃକ୍ଷେ ମଧୁ ସ୍ରବେ
ବରଷ ଋତୁର ସ୍ୱଭାବେ । ୨୮
ଗାଈ ଚରାନ୍ତି ନନ୍ଦବାଳ
ଭକ୍ଷନ୍ତି କନ୍ଦମୂଳ ଫଳ
ବସନ୍ତି ବୃକ୍ଷଙ୍କର ତଳେ
ଦିନ ହରନ୍ତି ବୃଷ୍ଟି ବେଳେ । ୨୮
ଦଧି ଅନ୍ନ ଯେ ଘରୁ ଆଣି
ଜଳ ନିକଟେ ଚକ୍ରପାଣି
ଗୋପାଳମେଳେ ବେନିଭାଇ
ଭୁଞ୍ଜନ୍ତି ପାଷାଣରେ ଥୋଇ । ୨୯
କୋମଳ ଘାସ ଗୋରୁଗଣେ
ସେବାନ୍ତି ମିଳିତ ଲୋଚନେ । ୩୦
ବରଷା ଦେଖି ବ୍ରହ୍ମରାଶି
ନିଜ ବିଭୂତି ପରଶଂସି । ୩୧
ବନେ ବୁଲନ୍ତି ନନ୍ଦବାଳ
ପ୍ରବେଶ ଶରଦର କାଳ
ଶୁକଳ ମେଘ ଶୂନ୍ୟେ ଦିଶି
ସଧୀରେ ପବନ ପ୍ରକାଶି । ୩୨
ଭୂମିରେ ଯେତେ ଜଳଥିଲେ
ଶରଦେ ନିର୍ମଳ ହୋଇଲେ
ଭ୍ରଷ୍ଟ ଯୋଗୀଙ୍କ ଚିତ୍ତ ଯେହ୍ନେ
ପୂର୍ଣ୍ଣ ନିର୍ମଳ ଯୋଗଧ୍ୟାନେ । ୩୩

ଶରଦ ଭୟେ ମେଘ ଗଲା
ଆକାଶ ନିର୍ମଳ ଦିଶିଲା
ଭାଙ୍ଗିଲା ଜନ୍ତୁଙ୍କ ଗହଳ
ଜନ୍ତୁଁ ହରିଲା ପଙ୍କମଳ
ହରିଭକତି କଲେ ଜନେ
ପାତକ ନ ଲାଗେ ଯେସନେ । ୩୪
ସନ୍ତୋଷେ ଜଳ ଛାଡ଼ି ମେଘେ
ଶୁଭ୍ର ଦିଶିଲେ ଶୂନ୍ୟମାର୍ଗେ
ସଂସାରମୋହ ଛାଡ଼ି ଜନେ
ଯେହ୍ନେ ଦିଶନ୍ତି ଯୋଗଧ୍ୟାନେ । ୩୫
ପର୍ବତେ ଯେତେ ଜଳ ଥିଲେ
ସଞ୍ଚରି ଭୂମିରେ ପଡ଼ିଲେ
ଉତ୍ତମ ଶିଷ୍ୟେ ତୋଷ ହୋଇ
ଗୁରୁ ଯେସନେ ଜ୍ଞାନ ଦେଇ । ୩୬
ଅଳପ ଜଳେ ଜନ୍ତୁ ଥାଇ
ରବିକିରଣେ ଭୟ ପାଇ
ଜୀବନ ଦିନୁଦିନେ କ୍ଷୀଣ
ଦରିଦ୍ର କୁଟୁମ୍ବ ଯେସନ
ଗଭୀରଜଳେ ମୀନ ଥିଲେ
ରବିକିରଣ ନ ଜାଣିଲେ
ଜଳେ କରନ୍ତି ତୋଷଚିତ୍ତେ
ଅଜ୍ଞାନ ଜନଙ୍କର ମତେ । ୩୭,୩୮
ଭୂମିରେ ପଙ୍କ ଧୀରେ ଧୀରେ
ଶୁଖିଲେ ଶରଦ ଶିଶିରେ
ଯେସନେ ଯୋଗଲୟ ପାଇ
ଅଜ୍ଞାନ ଭାବ କ୍ଷୟ ଯାଇ । ୩୯
ଶରଦ ଋତୁ ଗୁଣ ଭେଦ
ନିଶ୍ଚଳ ହୋଇଲା ବାରିଧି
ବେଦ ବେଦାନ୍ତେ ପାଇ ତତ୍ତ୍ୱ
ଯେସନେ ଯୋଗୀଙ୍କର ଚିତ୍ତ । ୪୦

କୃଷକମାନେ ଧାନ୍ୟ କ୍ଷେତେ
ଜଳ ବାନ୍ଧିଲେ ବୃତ୍ତମତେ
ଯୋଗୀଏ ପବନର ବଳେ
ଇନ୍ଦ୍ରି ରୁନ୍ଧନ୍ତି ଯେସ୍ନେ କାଳେ । ୪୧
ଶରଦ ରବି ତେଜ ଲାଗି
ଜନ୍ତୁଏ ହୋ'ନ୍ତି ଦୁଃଖଭାଗୀ
ରଜମାନାଥ ତାହା ହରି
ଯେସ୍ନେ ଗୋବିନ୍ଦ ବ୍ରଜନାରୀ । ୪୨
ନିର୍ମଳ ଦିଶେ ଶୂନ୍ୟପଥ
ଗ୍ରହ ନକ୍ଷତ୍ର ନିଶୀନାଳ
ଶବଦ ବ୍ରହ୍ମ ଜାଣି ଯେସ୍ନେ
ସାଧୁପୁରୁଷଙ୍କର ମନେ । ୪୩
ନକ୍ଷତ୍ରଗଣ ମଧ୍ୟେ ଶଶୀ
ଅଖଣ୍ଡ ମଣ୍ଡଳ ପ୍ରକାଶି
ଯାଦବ ଭୋଜ ବଂଶ ମଧ୍ୟେ
ଗୋବିନ୍ଦ ଯେସନେ ଆନନ୍ଦେ । ୪୪
ଚନ୍ଦ୍ର କୁମୁଦ ଜଳରାଶି
ପବନ ପ୍ରସରନ୍ତେ ନିଶି
ଗାଈ ହରଣୀ ପକ୍ଷୀ ନାରୀ
ଶରଦ ଋତୁ ଯୋଗେ କରି
ଇଚ୍ଛା କରନ୍ତି ସ୍ୱାମୀସଙ୍ଗ
ମାୟା ଭିଆଣ ଶିଶ୍ୱରଙ୍ଗ । ୪୫,୪୬
କୁମୁଦ ବନ। ଜଳଫୁଲେ
ଆନନ୍ଦ ଦିବାକର ଭୁଲେ
ରାଜାର ତେଜେ ପ୍ରଜା ଯେସ୍ନେ
ଆନନ୍ଦ ହୋନ୍ତି ସ୍ୱେର ମନେ । ୪୭
ପୁର ପାଟଣା ଗ୍ରାମ ଭୂଇଁ
ଚନ୍ଦ୍ର ଉଲ୍ଲସିବ ବିରାଜଇ
କୃଷ୍ଣର ମାୟା ଶସ୍ୟରାଶି
ଦେଖି ମାନବେ ପରଶଂସି । ୪୮
ଋଷି ନୃପତି ବଣିଜରେ
ପ୍ରବାସ କଲେ ଯେ ଯାହାରେ
ଆୟୁଷ ଅନ୍ତେ ଯେସ୍ନେ ସିଦ୍ଧେ
କାଳେ ଭୁଞ୍ଜନ୍ତି ବ୍ରହ୍ମପଦେ । ୪୯
ମୁନି କହନ୍ତି ରାଜା ଆଗେ
ବାଳକ ଲୀଳାରସ ଭାବେ
ଶରଦ କାଳେ ବଦଗୃଷ୍ଣ
ଦାସବତ୍ସଳ ନରହରି
ସୁଜନେ ଭାବ କୃଷ୍ଣ ଚିତ୍ତେ
କହିଲା ବିପ୍ର ଜଗନ୍ନାଥେ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବର୍ଷ ଶରଦୃତୁବର୍ଣ୍ଣନଂ
ନାମ ଏକବିଂଶୋଽଧ୍ୟାୟଃ । ୨୧ ।

# ଦ୍ୱାବିଂଶ ଅଧ୍ୟାୟ

( ମୂଳାନୁସାରେ ୨୧ ଅଧ୍ୟାୟ )

ଏକବିଂଶେ ଶରଦ୍ରମ୍ୟ-ବୃନ୍ଦାବନଗତେ ହରୌ ।
ତଦ୍ ବେଣୁସ୍ୱନମାକର୍ଣ୍ଣ୍ୟ ଗୋପୀଭିର୍ଗୀତମୀର୍ଯ୍ୟତେ ॥ ୦ ॥

ଦ୍ୱାବିଂଶେ ଶୁଣି ବଂଶୀସ୍ୱନ । ଆଭନ୍ତି ଗୋପୀଗୀତ ତାନ ।

ଶ୍ରୀ ଶୁକ ଉବାଚ

ଶରଦ କାଳର ସ୍ୱଭାବେ
ଗୋବିନ୍ଦ ବୃନ୍ଦାବନଠାବେ
ନଦୀ ପୋଖରୀ ଜଳରାଶି
ସୁଗନ୍ଧ ପବନ ପ୍ରକାଶି
ବନ କୁସୁମ ତରୁଡାଳେ
ଶୁକ କୋକିଳ ଭୃଙ୍ଗମେଳେ
ବନ ଗହନ-ଗିରିତଳେ
ଗାଈ ଚରାନ୍ତି ଗୋପବାଳେ
ଆନନ୍ଦେ ବେଣୁନାଦ କରି
ଗୋପେ ଗୋବିନ୍ଦ ହଳଧାରୀ । ୧,୨
କୃଷ୍ଣମୁରଲୀ ନାଦ ଶୁଣି
ଗୋପୀଏ ଏକୁ ଆରେ ଭଣି
କୃଷ୍ଣଲୀଳାରେ ମନ ଦେଇ
ଅନଙ୍ଗବାଣେ ଚିତ୍ତ ଦହି
ମନ ନିବେଶି କୃଷ୍ଣପାଦେ
ଗୋପୀଏ କହନ୍ତି ଆନନ୍ଦେ
ଶୁଣ ଗୋ ସଖି ! କୃଷ୍ଣକଥା
କାନନେ ଯେମନ୍ତ ବ୍ୟବସ୍ଥା
ମୟୂରପୁଚ୍ଛ ମାଳଦେହେ
ତରୁଣୀ ଜନ ମନ ମୋହେ
କର୍ଣ୍ଣେ ଖଞ୍ଜିତ କନିଅର
ସୁନ୍ଦର ସୁରଙ୍ଗ ଅଧର
ପୀତ ବସନ କଟୀତଟେ
ଲମ୍ବିଇ ବନମାଳା କଣ୍ଠେ
ବିବିଧ ନଟବେଶ ହୋଇ
ମଧୁରେ ବେଣୁନାଦ ବାଇ
ଆନନ୍ଦେ ପଶୁଗଣ ସଙ୍ଗେ
କ୍ରୀଡନ୍ତି ବୃନ୍ଦାବନ ଲଗେ । ୩-୫
ମୁରଲୀନାଦ ଶୁଭେ ବନେ
ଗୋ ସଖି ! ଶୁଣ ସାବଧାନେ । ୬
ଗୋପାଳମେଳେ ନନ୍ଦସୁତ
ଗୋରୁ ଚରାନ୍ତି-ଗୋପୀନାଥ
ଚକ୍ଷୁ ବହନ୍ତି ଯେତେ ପ୍ରାଣୀ
କେ ପାରୁ ତାଙ୍କ ପୁଣ୍ୟ ଗଣି
ଗୋପାଳ ମେଳେ କୃଷ୍ଣ ଦେଖି
ନର୍ମଳ କଲେ ଚର୍ମ ଆଖି । ୭
ଚୂତ ପଲ୍ଲବ ଶିଖିପୁଚ୍ଛ
କଟୀରେ ମାଳ ପୀତ କାଛ
ହୃଦେ କଦମ୍ବ ପଦ୍ମମାଳ
ରଙ୍ଗ ମୃତ୍ତିକା ଶ୍ରମଜାଳ
ଗୋପାଳମେଳେ ବେଶ ଭାଇ
କି ପଟାନ୍ତର ଦେବ ମୁହିଁ

ରଙ୍ଗସଘର ଛଳେ ସାର
ଯେଣ୍ଡେ ଯୋଡ଼ଏ ନୃତ୍ୟକାର । ୮
ଦେଖ ଗୋ ମୁରଲୀର ଭାଗ୍ୟ
ଅଧିକେ କୃଷ୍ଣର ସୁହାଗ
ଅନେକ ଜନ୍ମେ ପୁଣ୍ୟ ଦାନ୍ତ
କୃଷ୍ଣର ଓଷ୍ଠପୁଟେ ଥାଇ
ସବୁ ଖାଇଲା ସୁଧାରସ
ଅଳପ ନ ରଖିଲା ଶେଷ
ଗୋପୀଙ୍କଠାରେ ଗର୍ବ ବଢ଼େ
ସୁହୃଦ ସପତ୍ନୀ ପ୍ରାୟେ
ନଦୀଏ ହୋଇ ସ୍ଥିରଗତି
ବୃକ୍ଷେ ଅଶ୍ରୁଜଳ ସ୍ରବନ୍ତି । ୯
ଭୂମି ଆନନ୍ଦ ବୃନ୍ଦାବନେ
ଗୋବିନ୍ଦ ପାଦପଦ୍ମ ଚିହ୍ନେ
ମୃଗ ମୟୂର ଜନ୍ତୁ ଯେତେ
ଗିରି କନ୍ଦରେ ଯୂଥେ ଯୂଥେ
କୃଷ୍ଣମୁରଳୀ ନାଦ ଶୁଣି
ଜନ୍ତୁଙ୍କ କଣ୍ଠୁ ନ ସ୍ଫୁରଇ । ୧୦
ଅନ୍ୟ ଏ ହରିଣ ଯୁବତୀ
ବେଣୁ ଶୁଣନ୍ତି କୃଷ୍ଣ କାନ୍ତି
ଆବୋରି କୃଷ୍ଣମୁଖ ସାର
ନୟନେ ଦ୍ୟନ୍ତି ଉପହାର ।
ଦେବକାମିନୀ ଶୂନ୍ୟ ଥାଇ
ମୁରଲୀ ନାଦେ ମନ ଦେଇ
ଅଖିଳ ଶ୍ରବଣ ଆନନ୍ଦ
ଶୁଣି ମୋହନ ବେଣୁ ନାଦ
ସମାନେ ଥାଇ ମୋହମାନ
ପିଟିଲା କଇଶ ବସନ । ୧୧ ୧୨
ଗୋରୁଏ କୃଷ୍ଣଗୀତ ଶୁଣି
ଚଳି ନ ପାରନ୍ତି ଧରଣୀ

ତୃଣେ କବଳ ସ୍ଥିର କରି
ବେଣୁ ଶୁଣନ୍ତି କର୍ଣ୍ଣ ଡେରି
ବତ୍ସଏ ସ୍ତନ ମୁଖେ ଦେଇ
ବେଣୁ ଶୁଣନ୍ତି ସ୍ଥିର ହୋଇ । ୧୩
କୃଷ୍ଣର ଶୁଣି ବେଣୁ ଗୀତ
ହୃଦେ ନିବାରି ଦୁଷ୍ଟଚିତ୍ତ
ମୁନିଏ ପକ୍ଷିଙ୍କର ଛଳେ
ଧ୍ୟାନ କରନ୍ତି ବୃକ୍ଷଡାଳେ ୧୪
ନଦୀଏ ଶୁଣି ବେଣୁଗୀତ
ଅନଙ୍ଗବାଣେ ମୋହଗତ
ଊର୍ମିର ଛଳେ ଭୁଜ ଟେକି
କୋଳ କରିବେ ବନମାଳୀ
କମଳ ଉପହାର ଦେଇ
ପୂଜା କରନ୍ତି ପାଦ ଦୁଇ । ୧୫
ଇନ୍ଦ୍ର ଯେ ଦେଖୁଥିଲା ରଙ୍ଗ
ମୁରଲୀନାଦେ ଚିତ୍ତ ଦେଇ
ରାମ ଗୋବିନ୍ଦ ଗୋପ ମେଳେ
ଫୁଟିଲେ ଶ୍ରମ ଘର୍ମଜାଳେ
ଦଇବେ ଗୋବିନ୍ଦର ମିତ୍ର
ଉପରେ କଲା ମେଘ ଛତ୍ର । ୧୬
ଶବର ନାରୀମାନେ ଧନ୍ୟ
ଶୁଣ ଗୋ ତାହାଙ୍କର ପୁଣ୍ୟ
ଲକ୍ଷ୍ମୀର ସ୍ତନମଧ୍ୟେ ଲୀନ
କୁଙ୍କୁମ ଅଗୁରୁ ଚନ୍ଦନ
କୃଷ୍ଣର ପାଦଯୁଗେ ଥିଲା
କୋମଳ ଘାସେ ସେ ଲଗିଲା
କୃଷ୍ଣର ଶୁଣି ବେଣୁସ୍ୱନ
ଅନଙ୍ଗେ ହୋଇଲେ ଅଜ୍ଞାନ
କୁଙ୍କୁମ ତୃଣ ମଧ୍ୟୁଁ ତୋଳି
ସ୍ତନ ବଦନେ ତାହାବୋଳି

କେବେ ଗ୍ଭହିଁଲେ ମନୋଦୁଃଖ
ଦେଖନ୍ତି ରାମ କୃଷ୍ଣ ମୁଖ । ୧୭
ଦେଖ ଗୋ ଗିରି ଗୋବର୍ଦ୍ଧନ
ପୂର୍ବେ ଅନେକ କଲା ପୁଣ୍ୟ
ହରି-ଭକ୍ତ ଶିରୋମଣି
କୋମଳ କନ୍ଦ ତୃଣ ପାଣି
ଏମାନେ ଧେନୁଣ ଆନନ୍ଦେ
ପୂଜିଲା ଗୋବିନ୍ଦର ପାଦେ । ୧୮
ଗୋରୁ ଗୋପାଳ ଧେନୁ ସଙ୍ଗେ
ବେଣୁ ବଜାନ୍ତି କୃଷ୍ଣ ରଙ୍ଗେ
ପ୍ରାଣିଙ୍କି କଲେ ବିପରୀତ
ମୋହିତ ହୋଇଲେ ସମସ୍ତ । ୧୯

ଶ୍ରୀ ଶୁକ ଉବାଚ

ଶୁଣ ରାଜନ ନଟେଶ୍ୱ ନୃତ୍ୟ
ଗୋପୀ କହନ୍ତି ଖେଦଚିତ୍ତେ
ଗୋବିନ୍ଦ ପାଦେ ଚିତ୍ତ ଦେଇ
ଦିନ ହରନ୍ତି ମୁଖ ଗ୍ଭହିଁ
ଗୋବିନ୍ଦ ମୁରଲୀର ନାଦ
ଶୁଣିଲେ ହରଇ ବିଷାଦ । ୨୦
ସୁଜନେ ଶୁଣ ବେଣୁ ଗୀତ
କହିଲା ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବେଣୁଗୀତ ବର୍ଣ୍ଣନଂ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥ ୨୨ ॥



(୧୯) ଶ୍ରୀକୃଷ୍ଣଙ୍କର ବଂଶୀନାଦ ଶ୍ରବଣ କରି ସ୍ଥାବର ଓ ଜଙ୍ଗମ ପ୍ରାଣୀମାନେ "ବିପରୀତ" ବରଣ କଲେ ଅର୍ଥାତ୍ ଚଳନ୍ତା ପ୍ରାଣୀମାନେ ସ୍ଥିର ହୋଇଗଲେ ଏବଂ ସ୍ଥାବର ବୃକ୍ଷାଦି ପୁଲକିତ ହେଲେ ।

## ତ୍ରୟୋବିଂଶ ଅଧ୍ୟାୟ

( ମୂଳାନୁସାରେ ୨୨ଶ ଅଧ୍ୟାୟ )

ଗୋପୀନାଂ କାମତଃ କୃଟେଷ୍ଟ ନିଃସୀମପ୍ରେମ ସଙ୍ଗମଃ ।
କାତ୍ୟାୟନ୍ୟର୍ଚ୍ଚନୋଦ୍ଭୂତ-ତତ୍ପ୍ରସାଦମହୋଦୟଃ । ୦ ।
ଦ୍ୱାବିଂଶେ ଗୋପକନ୍ୟାନାଂ ବସ୍ତ୍ରହାରଣଲୀଳୟା ।
ବରଂ ଦତ୍ତ୍ୱା ଗତଃ କୃଷ୍ଣୋ ଯଜ୍ଞଶାଲା ମିଷ୍ଟଯ୍ୟତେ । ୦ ।

ତେଇଶେ କତ୍ୟାୟନୀବ୍ରତ । ବସ୍ତ୍ରହରଣର ଚରିତ । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର
ଶୁଣ ରାଜନ ରସଭର
ଶରଦ ଋତୁ ବହିଗଲା
ହେମନ୍ତ ଋତୁ ପ୍ରକାଶିଲା
କୃଷ୍ଣ ଆନ୍ଦେଶ ଗୋପପୁରୀ
ଯେତେ ଉପୁଜିଲେ କୁମାରୀ
କୃଷ୍ଣ ଭଜନ ପୁଣ୍ୟଫଳେ
ରମିଲେ ବୃନ୍ଦାବନ ସ୍ଥଳେ
ତୁଲ୍ୟବୟସୀ ନବ ବେଶେ
ଖେଳନ୍ତି ନାନା ଖେଳ ରସେ
ହେମନ୍ତ ଦେଖିଣ ଉଷତ
ସକଳେ କଲେ ନବବ୍ରତ
ହବିଷ୍ୟ ଭୁଞ୍ଜି ଏକବାରେ
ଦୁର୍ଗା ପୂଜନ୍ତି ନଦୀଘାଟରେ । ୧
ଅଳପ ରାତ୍ର ଥାଉଁ ନିତ୍ୟେ
ଯମୁନା ଯାଆନ୍ତି ପ୍ରଭାତେ
ସ୍ନାନ କରଣ ଶୀତ ଜଳେ
ବାଲୁକା ସ୍ଥାପି ନଦୀକୂଳେ
ପୂଜନ୍ତି ନାନାଦ୍ରବ୍ୟ ଯେନ
ଜୟ ଶବଦେ ଗୀତଧ୍ୱନି
ହର ଗଉରୀ କରି ଧ୍ୟାନ
ମନେ ଚିନ୍ତନ୍ତି ଭଗବାନ
ଯେ ନର ଅନ୍ତେ ପାଦେ ପଡ଼ି
ଗୁପତେ କରନ୍ତି ଗୁହାରି । ୨,୩
ହେ କାତ୍ୟାୟିନୀ ! ମହାମାୟୀ
ପରମ ଯୋଗେଶ୍ୱରୀ ତୁହି
ହେ ମାତ ଶଙ୍କରଯୁବତି !
ନନ୍ଦରକୁମର ଦିଅ ପତି
ଅଧିକ ବରେ କାର୍ଯ୍ୟ ନାହିଁ
ପ୍ରସନ୍ନ ହୁଅ ମହାମାୟି !
ଷୋଳ ସହସ୍ର ଗୋପନାରୀ
ବର ଇଚ୍ଛିଲେ ନରହରି
ଏକ ଆରକେ ନ ଜାଣନ୍ତି
ମନେ କରିଲେ କୃଷ୍ଣ ପତି
ବୋଲନ୍ତି କୃଷ୍ଣ ବର ହେଉ
ତାର ଭକ୍ତିରେ ଦିନ ଯାଉ
କୃଷ୍ଣ-ଭକତି ଭାବ ଆଶେ
ତପ ସାଧିଲେ ଏକମାସେ । ୪,୫

ରାସହୁଁ ଉଠି ଗୀତ ଗାଇ
ଚଳନ୍ତି ଯୂଥ ଯୂଥ ହୋଇ
ଏକ ଆରକେ ଭୁଜ କନ୍ଧେ
ହରି ଘାବନ୍ତି ଗୀତନାଦେ
ବିବିଧ ରୂପ ରସୁ ହାସେ
ମିଳିଲେ ଯମୁନାର ପାଶେ
ବସ୍ତ୍ର ପାଲଟି କୂଳେ ଥୋଇ
ଜଳେ ପଶିଲେ ଗୀତ ଗାଇ
ଆନନ୍ଦଁକେ କରିବ ଅନ୍ତ
ଯହିଁ ରମିବେ ଗୋପୀନାଥ
ଏକ ଆରକେ ଜଳ ଫିଙ୍ଗି
ଜଳେ ବୁଡ଼ନ୍ତି ଗୋଡ଼ ଛନ୍ଦି
ବୁଡନ୍ତି ଏକୁ ଆରେ ଧରି
ମୁଖେ ସିଞ୍ଚନ୍ତି ଫୁ ଫୁ କରି
ଆନନ୍ଦେ ହାସ ପରିହାସ
ଜାଣି ତା ପ୍ରଭୁ ପୀତବାସ । ୭,୭
ଗୋପବାଳକ ଧେନୁ ସଙ୍ଗେ
ମିଳିଲେ ନଦୀଘାଟରେ ରଙ୍ଗେ
କୂଳେ ଦେଖିଲେ ବସ୍ତ୍ରରାଶି
ପବନେ କହନ୍ତି ବିଶ୍ୱାସି
ଶୁଣ ପବନ ମୋର ବାଣୀ
ବସ୍ତ୍ର ତୁ ଥୁଅ ବୃକ୍ଷେ ଆଣି
ତକ୍ଷଣେ ପ୍ରଭୁ ଦାମୋଦର
ଉଠିଲେ କଦମ୍ବ ବୃକ୍ଷର
ବସ୍ତ୍ର ଯେ ନଦୀକୂଳେ ଥିଲା
ପବନ ଯୋଗେ ଉଡ଼ିଗଲା
କଦମ୍ବ ବୃକ୍ଷେ ଯାଇଁ ପଡ଼ି
ଦେଖି ହସନ୍ତି ନରହରି
ଗୋପାଳେ ଉଠି ବୃକ୍ଷଡାଳେ
ବସ୍ତ୍ର ବାନ୍ଧିଲେ ମାଳେ ମାଳେ

ବାଳକେ ବୃକ୍ଷଡାଳେ ଥାଇ
ନାଚନ୍ତି କରତାଳି ଦେଇ
ମୁରଲୀ ନାଦ ଉଚ୍ଚସ୍ୱର
ମଧ୍ୟେ ବ୍ରଜପ୍ରୁ ଦାମୋଦର
ଗୋପୀ ଯେ ଥିଲେ ଜଳମଧ୍ୟେ
କର୍ଣ୍ଣେ ଶୁଣିଲେ ବେଣୁ ନାଦେ
ସନ୍ତ୍ରମେ ଛାଡ଼ି ଜଳକେଳି
ବୃକ୍ଷକୁ ଚାହାଁନ୍ତି ନିରେଳି
ବୋଲନ୍ତି ବୃକ୍ଷେ କିସ ହସ ?
ଦେଖ ଗୋ ! ଦଇବ ଭବିଷ୍ୟ
ଏଠ କୁ କେମନ୍ତ ଅଇଲା
ଦଇବ ଯୋଗେ ନନ୍ଦବଳା ?
କେ ବୋଲେ ଏ ବନେ ନ ଥାଇ
ଆଜ ଅଇଲା କିସ ପାଇଁ ?
କେ ବୋଲେ ଭଲହିଁ ହୋଇଲା
ବ୍ରତ ଗୋ ଆଜହୁଁ ସରିଲା
କେ ବୋଲେ ଦେଖ ବୃକ୍ଷଡାଳେ
ଅନେକ ଉଡ଼ନ୍ତି ଚୀରଲେ
କୂଳକୁ ଚାହିଁ କେ ବୋଲନ୍ତି
ମରଣ ହୋଇଲା ଏ ଧାନ୍ତି
ପାଲଟା ବସ୍ତ୍ର କୂଳେ ନାହିଁ
ଚକିତ ଚଉଦିଗେ ଚାହିଁ
ବୋଲନ୍ତି ବସ୍ତ୍ର କେଣେ ଗଲା ?
ଏଡ଼େ ଗୋ ପବନ ବହିଲା
ଉଡ଼ି କେବଣ ଦିଗେ ଗଲା
ଲଜ୍ଜାତ ମରଣୁଁ ବଳିଲା
କିସ କରିବୁଁ ଆଜ ଜଳେ
କନ୍ୟାଏ ଭାଳନ୍ତି ବିକଳେ
ଦାସବତ୍ସଳ ଭବଗ୍ରାହୀ
କହନ୍ତି ଗୋପୀଙ୍କି ଅନାଇଁ

ପବନ ଉଡ଼ାଇ ଆଣିଲା
ବସ୍ତ୍ର ଗୋ ବନେ ପଡ଼ିଥିଲା
ଆମ୍ଭେ ତା ରୁଣ୍ଡି ଆଇ ଆଣି
ବୃକ୍ଷେ ବାନ୍ଧିଲୁଁ ଏହିକ୍ଷଣି
ଏ ଯେବେ ତୁମ୍ଭର ହୋଇଲା
ଆମ୍ଭର ଯଶତ ରହିଲା
ଯେ ଯାହା ବସ୍ତ୍ର ଆସି ନଅ
ଶୀତଳ ଜଳେ ଗୋ ନ ଥାଅ ।୮-୧୧
ଶୁଣି ଚକିତ ଗୋପବାଳୀ
ବୋଲନ୍ତି ପଡ଼ିଲୁ ପଞ୍ଚାଳି
ଏକ ଆରକେ ମୁଖ ଚାହିଁ
ବୋଲନ୍ତି ଗାଲେ ହସ୍ତ ଦେଇ
କେମନ୍ତେ ଉଠି ଯିବୁଁ ଆଜ
ମରଣୁଁ ବଳାଇଲା ଲାଜ
ଶ୍ରୀକୃଷ୍ଣ ମୁଖକୁ ଅନାଇ
ବୋଲନ୍ତି କୋପଭର ହୋଇ ।୧୨,୧୩
ତୁ ଅଟୁ ଯଶୋଦାକୁମର
ନନ୍ଦ ମହାଗୁଡ଼ ପିଅର
ଜାଣିଲୁଁ ଚୋର ବଡ଼ପଣ
ଆମ୍ଭର ବସ୍ତ୍ର ବେଗେ ଆଣ
ପକାଇ ଦିଅ ବେଗେ କାଢ଼ି
ବୃକ୍ଷୁ ପାଲଟା ଆମ୍ଭ ଶାଢ଼ୀ
ଏଡ଼େ ନଷ୍ଟଙ୍କ ପଣ ଚୋର
କାହୁଁ ଶିଖିଲୁ ଦାମୋଦର ?
ଶୁଣି ବୋଲନ୍ତି ଚକ୍ରଧର
ଏ ବଡ଼ ଅମାନ୍ତ ବେଭାର
ଯେ ପୁଣି ପର ଉପକାରୀ
ତାହାକୁ ପଥେ ନେଇ ମାର
ପବନ ନେଉଥିଲା ବଳେ
ଆମ୍ଭେ ବାନ୍ଧିଲୁ ବୃକ୍ଷଡାଳେ

ତହିଁର ଫଳ ମୁଁ ପାଇଲି
ବସ୍ତ୍ର ଯେ ତୁମ୍ଭଙ୍କୁ ଯାଚିଲି
ମୁଁ ତ ନ କଲି ପରିହାସ
ତୁମ୍ଭେ ତ ମୋହର ବିଶ୍ୱାସ
ଏବେ ଗୋ ବସ୍ତ୍ର ଆସି ନିଅ
ନ ଜାଣି କିପାଁ ଗାଳି ଦିଅ
ମୋହର ଦେହେ ମିଥ୍ୟା ନାହିଁ
ହସି ବୋଲନ୍ତି ଭବଗ୍ରାହୀ । ୧୪
ଶୁଣି ସାନନ୍ଦ ମନ ହୋଇ
ଗୋପୀ ବୋଲନ୍ତି କୃଷ୍ଣ ଚାହିଁ
ତୁ ଅଟୁ ଗୋପପୁର ସାର
ବନ୍ଧୁ ବାନ୍ଧବ ଆମ୍ଭେ ତୋର
ବସ୍ତ୍ର ପକାଇ ଦିଅ ତଳେ
ପଡ଼ୁଁଛୁ ତୋର ପାଦତଳେ
ଶ୍ୟାମସୁନ୍ଦର ତୋ ଚରଣେ
ସେବା କରିବୁ ଦାସୀପଣେ
ତୁ ଯେବେ ନ ଦେବୁ ପକାଇ
କହିବୁଁ କଂସ ଆଗେ ଯାଇଁ । ୧୫
ଶୁଣି ବୋଲନ୍ତି ଚକ୍ରଧର
ତୁମ୍ଭେ ହୋ ଦାସୀ ଯେବେ ମୋର
ତେବେ କରିବ ମୋ ଉତ୍ତର
ନ ଜାଣି କୋପ କିମ୍ପା କର
ଯେ ଯାହା ବସ୍ତ୍ର ଚିହ୍ନି ନିଅ
ନ ଦେଲେ ରାଜା ଆଗେ କହ
କଂସକୁ କିମ୍ପା ଏଡ଼େ ଡର
ସୋଦର ମଉଳା ମୋହର
ତାହାଙ୍କୁ ମୋର ଭୟ ନାହିଁ
ଅନ୍ୟାୟ ନ କଲି ତ ମୁହିଁ
ବସ୍ତ୍ର ପବନ ନେଉଥିଲା
ଆଣିଲା ଦୋଷ ମୋ ହୋଇଲା

ଏ କଥା ତୁମ୍ଭଙ୍କୁ ଯୋଗାଇ
ଧର୍ମହିଁ ଅଛୁ ନା ଅନାଇଁ । ୧୬
କୃଷ୍ଣ ମୋହନ କଥା ଶୁଣି
କନ୍ୟାଏ ମନେ ମନେ ଗୁଣି
କଣ୍ଠ ପ୍ରମାଣ ଜଳେ ଥାଇ
କର୍ମନ୍ତ କୃଷ୍ଣ ମୁଖ ଚାହିଁ
ହରିଙ୍କି ଜିଣି ନ ପାରିଲେ
ନର୍ଭୟେ ଲଜ୍ଜା ଉପେକ୍ଷିଲେ
ଯୋନି ଆଚ୍ଛାଦି ବାମ କରେ
ତୀରେ ଉଠିଲେ ଲଜ୍ଜାଭରେ । ୧୭
ଦୟାସାଗର ଭାବଗ୍ରାହୀ
ବୃକ୍ଷର ଡାଳୁ ବସ୍ତ୍ରପେଇ
ପାଲଟା ବସ୍ତ୍ର ଘେନି କନ୍ଧେ
ବୃକ୍ଷୁ ଓହ୍ଲାଇଲେ ଆନନ୍ଦେ
ଗୋପୀଙ୍କ ଶୁଦ୍ଧ ଭାବ ଚାହିଁ
ହସି ବୋଲନ୍ତି ଭାବଗ୍ରାହୀ । ୧୮
ଏ ନୋହେ ତୁମ୍ଭର ଉଚିତ
ବିଶେଷେ କରିଅଛ ବ୍ରତ
ବିବସ୍ତ୍ର ହୋଇ ଜଳେ ପଶି
କୂଳେ ଉଠିଲ ଏବେ ଆସି
ଏ ବଡ଼ ଅପରାଧ ହୋଇ
ନରକେ ପଡ଼ିବଟି ଯାଇଁ
ଏ ଦୋଷ ନ ଥାଉ ତୁମ୍ଭର
ଦେବତା ନମସ୍କାର କର । ୧୯
ହସି ବୋଲନ୍ତେ ବନମାଳୀ
ଶୁଣି ଚକିତ ଗୋପବାଳୀ
କପାଳେ ଦେଇ ଏକ କର
ନମିଲେ ଦେବତା ପୟର
ଦେଖି ବୋଲନ୍ତି ଯଦୁପତି
ଏ ବଡ଼ ତୁମ୍ଭର ଅମତି

ଶାସ୍ତ୍ର ଶୁଣିଲ ତୁମ୍ଭ ନାହିଁ
ମୁଁ ତାହା ଅଳପ ଜାଣଇଁ
ଶୁଣ ଗୋ ନାରୀ ! ଏକ ଚିତ୍ତେ
ବିପ୍ରେ କହନ୍ତି ବେଦମତେ
ଯେ ଦେବଗୁରୁ ଏକାକରେ
ନମନ୍ତି ଅଜ୍ଞାନ ବେଭାରେ
ତାହାର ଛେଦି ଯେବେ କର
ସେ ଅପରାଧୁଁ ହୋଇ ପାର
ନୋହିଲେ ଯେତେ ଜନ୍ମ ହୋଇ
କର ଯୁଗଳ ତା ନ ଥାଇ । ୨୦
ଶୁଣି କୁମାରୀ ଉସନ୍ନରେ
କପାଳେ ଦେଲେ ବେନିକରେ
ଦେବତା ଓଳଗିଲେ ରହି
ଦେଖି ସାନନ୍ଦ ଭାବଗ୍ରାହୀ
ନିର୍ମଳ ଚିତ୍ତ ତାହାଙ୍କର
ଜାଣିଲେ କମଳାର ବର
ଗୋପୀଙ୍କ ଭାବେ ତୋଷ ହୋଇ
ଫେରାଇ ବସ୍ତ୍ରଦେଲେ ନେଇ । ୨୧,୨୨
ଗୋପୀଏ ପିନ୍ଧି ଯେଝା ବାସ
ଆନନ୍ଦ ମନେ ହସ,ହସ
ଦେବତା ପୂଜାର ବିଧାନେ
କୃଷ୍ଣଙ୍କୁ କରିଛନ୍ତି ମନେ
କୃଷ୍ଣଙ୍କୁ ଚାହିଁ ନ ପାରନ୍ତି
ଲାଜେ ରହିଲେ ମଥା ପୋତି । ୨୩
ଜାଣିଲେ ପ୍ରଭୁ ନାରାୟଣ
ଗୋପୀଙ୍କି ବୋଲନ୍ତି ବଚନ
ହସି ବୋଲନ୍ତି ଜନାର୍ଦ୍ଦନ
ମୁହିଁ ଜାଣିଲି ତୁମ୍ଭ ମନ
ଯାହା ମାଗିଲ ମୋତେ ପୂଜ
ସେ କଥା ଅଛଇଁ ମୁଁ ହେଜ

ମୁହିଁ କରିବି ତାହା ସତ୍ୟ
ହସି କହନ୍ତି ଗୋପୀନାଥ
ମୋର ଚରଣେ ଯାର ଚିତ୍ତ
ପୁଣି ବିଷୟେ ହେଲେ ରତ
ଜନ୍ମ ମରଣ ତାର ନାହିଁ
ଭଜିଲି ଧ୍ୟାନ ପ୍ରାପ୍ତ ହୋଇ
ଏ ବୃନ୍ଦାବନେ ରହି ଥାଇ
ତୁମ୍ଭଙ୍କୁ ରମିବଇଁ ମୁହିଁ
ସଂକଳ୍ପ କଲି ବ୍ରତ କରି
ହସି ବୋଲନ୍ତି ନରହରି । ୨୪-୨୭

ଶ୍ରୀ ଶୁକ ଉବାଚ

ଏମନ୍ତେ କୃଷ୍ଣ ଆଜ୍ଞା ପାଇ
କନ୍ୟାଏ ଗଲେ ତୋଷ ହୋଇ
ଗୋବିନ୍ଦ ପାଦେ ମନ ଥୋଇ
ମିଳିଲେ ନିଜ ଘରେ ଯାଇଁ । ୨।
ଗୋପାଳ ମେଳେ ଦାମୋଦର
ଗାଈ ଚରାଇ ଗଲେ ଦୂର
ନିଦାଘ ରବି ତେଜ ଲାଗି
ଯୋଏ ହୋଇଲେ ଦୁଃଖଭାଗୀ
ଚରନ୍ତି ଗୋରୁ ଗୋପ ମେଳେ
ଶୀତଳ ଛାୟା ବୃକ୍ଷ ତଳେ
ବୃକ୍ଷକୁ ଚାହିଁ ଦାମୋଦର
ବୋଲନ୍ତି ଗୋପଙ୍କ ଆଗର । ୨୯,୩୦
ହେ ସ୍ତୋକକୃଷ୍ଣ ମିତ ମୋର
ଶ୍ରୀଦାମ ଅର୍ଜୁନ ସୁବଳ
ଅଂଶୁ ବିଶାଳ ଦେବପ୍ରସ୍ଥ
ଦେଖ ଏ ବୃକ୍ଷଙ୍କ ମହତ୍ତ୍ୱ
ପରେ କରନ୍ତି ଉପକାର
ସୁଜନ ପ୍ରାଣିଙ୍କ ବେଭାର
ଶୀତ ବରଷା ଘର୍ମ ଦୁଃଖ
ସହି ଆମ୍ଭଙ୍କୁ ଦ୍ୟନ୍ତି ସୁଖ
ଧନ୍ୟ ଜୀବନ ଏହାଙ୍କର
ଜୀବିକା ହୋନ୍ତି ପ୍ରାଣିଙ୍କର । ୩୨-୩୩
ସୁଜନଘରେ ଯେହ୍ନେ ଯାଇ
ଅତିଥି ନିରାଶ ନୁହଇ
ପତ୍ର କୁସୁମ ଫଳ ଛାଇ
ମୂଳ ବକଳ ଦାରୁ ଦେଇ
କ୍ଷାର, ଅଙ୍ଗାର, ଭସ୍ମ, ଅଠା
ଗୃହକୁ ସାଜ ବାଡ କଣ୍ଟା
ଏତେ ପ୍ରକାରେ ସେବା କରି
ନିତ୍ୟେ ଏ ପର ଉପକାରୀ
ଏହାଙ୍କ ପ୍ରାୟେ ଯେବେ ହୋଇ
ସଂସାର ମଧ୍ୟେ ଦେହ ବହି
ମନ ବଚନ ଧନେ କରି
ଯେ ହୋଏ ପର ଉପକାରୀ
ହିନ ହରନ୍ତି ଦୁଃଖ ସୁଖେ
ସେ ଧନ୍ୟ ଇହ ପରଲୋକେ ।୩୪,୩୫
ପୁଷ୍ପ ପଲ୍ଲବ ଫଳ ଦଳେ
ତରୁର ଲମ୍ବ ଡାଳ ତଳେ
ଗୋରୁ ଗୋପାଳ ଧେନୁ ସଙ୍ଗେ
ମିଳିଲେ ଯମୁନାର କୂଳେ । ୩୬
ଶୀତଳ ଜଳ ପାନ କରି
ବୃକ୍ଷର ତଳେ ନରହରି
କୃଷ୍ଣଙ୍କୁ ଦେଖି ଗୋପବାଳେ
କହନ୍ତି କ୍ଷୁଧାର ବିକଳେ । ୩୭, ୩୮
ସେ ରାମ କୃଷ୍ଣର ଅଗ୍ରତ
ନମଇଁ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବସ୍ତ୍ର ହରଣଂ
ନାମ ତ୍ରୟୋବିଂଶୋଽଧ୍ୟାୟଃ ॥ ୨୩ ॥

## ଚତୁର୍ବିଂଶ ଅଧ୍ୟାୟ

( ମୂଳାନୁସାରେ ୨୩ ଶ ଅଧ୍ୟାୟ )

ତ୍ରୟୋବିଂଶେ ତତୋ ଗୋପୈ-ର୍ଯାନ୍ନ ଯାଚ୍ଞୋପଦେଶତଃ ।
ତତ୍ପତ୍ନ୍ୟନୁଗ୍ରହାତ୍ କୃଷ୍ଣୋ ହର୍ଷିତାନନକାପ୍ୟଭୂତ୍ । ୦ ।

ସଖାଙ୍କୁ ଅନ୍ନ ମାଗିବାରେ । ଶ୍ରୀକୃଷ୍ଣ ପେଷି ଯଜ୍ଞଶାଳେ ॥
ବିପ୍ରପତ୍ନୀଙ୍କୁ ଦୟା କଲେ । ଏହା ବର୍ଣ୍ଣନ ତବଶରେ ॥

ଶ୍ରୀ ଶୁକ ଉବାଚ

ପରୀକ୍ଷ ମୁଖ ଚାହିଁ ମୁନି
କହନ୍ତି ହରିଭାବ ଘେନି
ବାଳକେ କୃଷ୍ଣଙ୍କୁ ଅନାଇ
କହନ୍ତି ଶିରେ କର ଦେଇ
ହେ ରାମକୃଷ୍ଣ କର ଶାନ୍ତି
ଭୋକେ କମ୍ପାଇ ଆମ୍ଭ ଦେହି
ଆଣି ତ ନ ପାରିଲୁ ଅନ୍ନ
ରାହନ୍ତୁଁ କାଲ ବେଣୁ ସ୍ୱନ
ଘର ହୋଇଲା ଦୂରପଥ
ଆଜ ତ ହୋଇଲୁ ଅନାଥ । ୧
ବାଳକ ବୋଲ ଶୁଣି ହରି
ମନେ ଚିନ୍ତିଲେ ବିପ୍ରନାରୀ
ଅନେକ ଜନ୍ମେ ପୁଣ୍ୟ ଦାହି *
ବ୍ରାହ୍ମଣୀ ଛନ୍ତି ମୋତେ ଧ୍ୟାୟି
ତାହାଙ୍କୁ ନିସ୍ତାରିବି ଆଜ
ଏଣେ ମୋହର ବଡ କାର୍ଯ୍ୟ
ପୁଅଙ୍କ ମୁଖ ଚାହିଁ ହସି
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି । ୨
ଏ ଯେ ଦିଶଇ ଧୂମ୍ରବର୍ଣ୍ଣ
ନିକଟେ ଅଶୋକ ବିପିନ
ଯଜ୍ଞ କରନ୍ତି ବିପ୍ର ରହି
ତହିଁକି ଯାଅ ବେଗ ହୋଇ
ବିଶ୍ୱର ଦେବ ବ୍ରହ୍ମ ଦୀକ୍ଷା
ଯଜ୍ଞ କରନ୍ତି ସ୍ୱର୍ଗ ବାଞ୍ଛା
ଧନ ବସନ ଅନ୍ନ ଭୋଜା
ଅତିଥି କରୁଥାନ୍ତି ପୂଜା
ଅତିଥିମତେ ତୁମ୍ଭେ ଯାଅ
ମୋର ମାଗିଲା ବୋଲି କହ
ରାମ ଅଛନ୍ତି କୃଷ୍ଣ ସଙ୍ଗେ
ଅନ୍ନ ଯୁଡ଼ାଏ ଦିଅ ବେଗେ । ୩,୪
ଶୁଣି ସାନନ୍ଦ ମନ ହୋଇ
ଯଜ୍ଞେ ମିଳିଲେ ପୋଏ ଯାଇଁ
କପାଳେ ଦେଇ ବେନିକର
ନମିଲେ ବିପ୍ରଙ୍କ ପୟର

* ଦାହି—କରି

ଉଠିଲେ ଶିରେ କର ଦେଇ
କହନ୍ତି ବିପ୍ରଙ୍କୁ ଅନାଇଁ
ଶୁଣିମା ସାବଧାନ ହୋଇ
ବନେ ଅଛନ୍ତି ବେନଭାଇ
ରାମ ଗୋବିନ୍ଦ ଗୋପମେଳେ
ଫୁଟିଲେ କ୍ଷୁଧାର ବକଳେ
ଅଶୋକ ବୃକ୍ଷତଳେ ରହି
ଆମ୍ଭଙ୍କୁ ଦେଲେ ପଠାଇ
ଅନ୍ନ ପୂଡ଼ାଏ ସ୍ୱାମୀ ! ଦେବ
ଭୁଞ୍ଜିବେ ଶ୍ରୀରାମ ମାଧବ
ଘରୁ ଆଣନ୍ତି ପ୍ରତିଦିନେ
ବନେ ଭୁଞ୍ଜନ୍ତି ତୋଷ ମନେ
ରାସହୁଁ ବନେ ଆଗପର
ଆଜ ସେ ଅଇଲେ ପାସୋର
ଏଠାକୁ ଦୂର ଗୋପପୁର
ଯିବାକୁ ହୋଇବ ଉଚ୍ଛୁର
ଆମ୍ଭଙ୍କୁ କୃଷ୍ଣ ଏଥେ ପେଷି
ବୃକ୍ଷର ମୂଳେ ଛନ୍ତି ବସି
ତାହାଙ୍କୁ ଯେବେ କରୁ ସ୍ନେହ
ଅନ୍ନ ପୂଡ଼ାଏ ‘ତୁମ୍ଭେ ଦିଅ
ଯଜ୍ଞର ସ୍ୱଭାବ ଏମନ୍ତ
ଅତିଥି ପୂଜିବା ଯୁକତ । ୫-୮
ବ୍ରାହ୍ମଣେ ଶୁଣି ନ ଶୁଣିଲେ
ମନ ଚଞ୍ଚଳ ଯଜ୍ଞକାଳେ
ହରିର ମାୟା ଚକ୍ରେ ପଡ଼ି
ଅଳପ କର୍ମେ ପୁଣ୍ୟ ଲୋଡ଼ି
ମନ ବୁଡ଼ାଇଛନ୍ତି ଯଜ୍ଞେ
ବ୍ରାହ୍ମଣ ଜନର ସ୍ୱଭାବେ । ୯
ଯେ ହରି ଦେଶ କାଳ ପାତ୍ର
ଦ୍ୱିଜାଦି ଧର୍ମ ଦଇବତ
ଯଜ୍ଞ ଭୋକ ତା ଆଦି କରି
ସର୍ବ ସମ୍ପଦ ନରହରି
ପରମବ୍ରହ୍ମ ନ ଚିହ୍ନିଲେ
ମନୁଷ୍ୟ ବୁଦ୍ଧି ଆଚରିଲେ । ୧୦,୧୧
ଦେବା ନ ଦେବା ନ ବୋଇଲେ
ଗୋପାଳେ ନିରାଶ ହୋଇଲେ
ଘଡ଼ିଏ ଥାଇ ଦୁଃଖ ସୁଖେ
ପୁଣି ମିଳିଲେ କୃଷ୍ଣପାଖେ
ବୋଲନ୍ତି ଶିରେ କର ଦେଇ
ଅନ୍ନ ମାଗିଲୁ ଆମ୍ଭେ ଯାଇ
ତୋ କଥା ପୁଣି ନ ଶୁଣିଲେ
ଦେବା ନ ଦେବା ନ ବୋଇଲେ ।୧୨
ଆମ୍ଭେ ଅଇଲୁଁ ଦୁଃଖ ପାଇ
ଶୁଣି ହସନ୍ତି ବେନିଭାଇ
ବୋଲନ୍ତି ଶୁଣ ଗୋପପୋଏ
ଯାଅ ବ୍ରାହ୍ମଣ ଘରଯାଏ
ବ୍ରାହ୍ମଣୀମାନେ ଛନ୍ତି ଘରେ
ସେ ମୋତେ ଜାଣନ୍ତି ଅନ୍ତରେ
ମୋ ଭାବ ନିତ୍ୟେ ସେ ଚିନ୍ତନ୍ତି
ମୋହର ଦର୍ଶନ ଇଛନ୍ତି
ତାହାଙ୍କୁ ଅନ୍ନ ମାଗ ଯାଇଁ
ଭୁଞ୍ଜିବା ଉଦର ପୂରାଇ
ବାଳକେ ଦୟା ସେ କରନ୍ତି
ଅତିଥି ପୂଜା ସେ ଜାଣନ୍ତି
ନାନା ବ୍ୟଞ୍ଜନ ଆଣି ଦେବେ
ବାହୁଡ଼ି ଯାଅ ତୁମ୍ଭେ ଏବେ ।୧୩,୧୪
ଗୋବିନ୍ଦ ଆଜ୍ଞା ଘେନି ଶିରେ
ପୋଏ ମିଳିଲେ ବିପ୍ରଘରେ
ବ୍ରାହ୍ମଣୀମାନେ ଛନ୍ତି ବସି
ଅଳକ ତିଳକ ପ୍ରକାଶି

ସ୍ତୁତି ସ୍ତବେ ଅଳଙ୍କାର
ମଙ୍ଗଳ ନାଦେ ଗୀତ ସ୍ୱର
କୃଷ୍ଣର ନାମ ତୁଣ୍ଡେ ଗାଇ
ଗୋପ ମିଳିଲେ ଆଗେ ଯାଇଁ
ଚରଣେ ଗଡ଼ଘାଲି ଶୋଇ
ବୋଲନ୍ତି ଶିରେ କର ଦେଇ । ୧୫
ଶୁଣିମା ସାବଧାନ ମାଏ !
ଆମ୍ଭେ ସକଳ ଗୋପପୋଏ
ବମଗୋ'ବନ୍ଧ ଆମ୍ଭ ଭୁଲେ
ବନରେ ଗାଈ ରଖିଥିଲେ
କ୍ଷୁଧାଅନଳ ଦୁଃଖ ଶ୍ରମେ
ବିଜୟ ଅଶୋକ ବିପିନେ
ଆମ୍ଭଙ୍କୁ ଘଇ ବେନଭାଇ
ଏଥକୁ ଦେଲେ ପଠିଆଇ
ଅନ୍ନ ପୃଣ୍ଡାଏ ମାଏ ଦେବ
ଭୁଞ୍ଜିବେ ଶ୍ରୀରାମ ମାଧବ
ବହନ ଦିଅ ମାଏ ! ଅନ୍ନ
ତେବେ ସେ ପାଇବୁଁ ଜୀବନ
ଆମ୍ଭର ଦେଖୁଅଛ ଦେହ
ଦେବା,ନଦେବା ବେଗେ କହ ।୧୬,୧୭
ଶୁଣି ହରଷ ବିପ୍ରନାରୀ
ସକଳ ଚରଷ୍ଠ ପାସୋରି
ଆନନ୍ଦେ ପୁଲକିତ ହୋଇ
ନୟନୁଁ ଅଶ୍ରୁଜଳ ବହି
କୃଷ୍ଣର ନାମ ଜପୁଛନ୍ତି
ଫିଟିଲା ଭବ ବନ୍ଧ ଭ୍ରାନ୍ତି
ତକ୍ଷଣେ ଶୁଚିବନ୍ତ ହୋଇ
ଘରେ ପଶିଲେ ନାରୀ ଯାଇଁ
ଅନ୍ନ ବ୍ୟଞ୍ଜନ ଷଡ଼ରସ
ଆନନ୍ଦେ ବାଢ଼ିଲେ ବିଶେଷ

ବିବିଧ ପାତେ ଅନ୍ନ ଘେନ
ବାହାର ହୋଇଲେ କାମିନୀ
ଆନନ୍ଦେ ଦେଲେ ହୁଳହୁଳି
ଯେସନେ ସମୁଦ୍ର ଉଚ୍ଛୁଳି । ୧୮,୧୯
ସମ୍ପଦ ତୁଚ୍ଛ ପ୍ରାୟ କରି
ଏକ ଆରକେ ଆଗସରି
ବିପ୍ର ଯେ ଯଜ୍ଞଶାଳେ ଥିଲେ
ଗୋଡ଼ାଇ ଆଗେ ଓଗାଳିଲେ
ବୋଲନ୍ତି କୋପଭର ହୋଇ
ତୁମ୍ଭଙ୍କୁ ବାଇ କେ କରଇ
ଗୋପାଳେ ବନେ ବେଣୁ ବାଇ
ବୁଲନ୍ତି ଗାଈଙ୍କି ଚରାଇ
ତାଙ୍କ ନିକଟେ ତୁମ୍ଭେ ଗଲେ
ଆଉ କି ଥିବ ଜାତି କୁଳେ
ଭଲେ ବାହୁଡ଼ ଯାଅ ଘର
ଗଉଡ଼େ ବନେ ବଳୀୟାର
ବ୍ରାହ୍ମଣୀ ନ ଶୁଣିଲେ ତାହା
କୃଷ୍ଣଙ୍କୁ ବଳନ୍ତି ଉତ୍ସାହା
ଗହଳେ ଗଲେ ପେଲି ପେଲି
ସ୍ୱାମୀଙ୍କି ଫିକାଇଲେ ଠେଲି
ସମୁଦ୍ରେ ଆସନ୍ତେ ଲହରୀ
ତା ବାଳିବନ୍ଧ କି ନିବାରି
ବ୍ରାହ୍ମଣେ ଧରି ନ ପାରିଲେ
ଯଜ୍ଞଶାଳାକୁ ବାହୁଡ଼ିଲେ । ୨୦
ଏକ ବ୍ରାହ୍ମଣୀ କ୍ଷୀଣଦେହୀ
ଗହଳେ ନ ପାରିଲା ଯାଇ
ଦରିଦ୍ରପଣେ ଦୁଃଖ ପାଇ
ଅନ୍ନ ବସନ ନ ମିଳଇ
କୃଷ୍ଣହିଁ ନ ଜାଣଇ ଆନ
ମନ ବଚନେ ନିତ୍ୟ ଧ୍ୟାନ

ଅନେକ ଜନ୍ମେ ଦୁଃଖ ପାଇ
ତ ହା ଜାଣନ୍ତି ଭବଗ୍ରାହୀ
ତାହାର ସ୍ୱାମୀ ଧରି କରେ
ନେଇ ବାନ୍ଧିଲ ନିଜଘରେ
ଦ୍ୱାରେ କବାଟ ଗଲା କଳି
ଯନ୍ତ୍ରର ସ୍ଥାନେ ଯାଇ ମିଳି
ବ୍ରାହ୍ମଣୀ ହୋଇଲା ମୂର୍ଚ୍ଛିତ
କୃଷ୍ଣଚରଣେ ଦେଇ ଚିତ୍ତ
ପୁଣି କ୍ଷଣକେ ଜ୍ଞାନ ପାଇ
କାନ୍ଦଇ "କୃଷ୍ଣ ହାହା ହାହା"
ଗଲେ ଯେ ବିପ୍ର ନାରୀମାନେ
ମିଳିଲେ ଅଶୋକ ବିପିନେ
ବୃକ୍ଷର ତଳେ ଗୋପମେଳେ
କୃଷ୍ଣ ଦେଖିଲେ ଚର୍ମଡୋଳେ । ୨୧
ଶ୍ୟାମସୁନ୍ଦର ଦେହ ବର୍ଣ୍ଣ
କଟୀରେ ପୀତ ଯେ ବସନ
କଙ୍କଣ କୁଣ୍ଡଳ ବାହୁଟେ
ରୂପେ କୋଟିଏ କାମ ଗଞ୍ଜେ
ରଙ୍ଗ ମୃତ୍ତିକା ଦେହେ ବୋଳା
ମୟୂରପୁଚ୍ଛ ଗୁଞ୍ଜମାଳୀ
ଆମ୍ବ ବଉଳ ରଙ୍ଗଡାଳ
ହୃଦେ ଲମ୍ବାଇ ବନମାଳ
ପାଦେ କଠାଉ ରଙ୍ଗ ସାର
ସୁଦାମକାନ୍ଧେ ଦେଇ କର
ଦକ୍ଷିଣ କରେ ପଦ୍ମ ଘେନ
ଧୀରେ ବୁଲନ୍ତି ଅନ୍ତର୍ଯ୍ୟାମୀ
କର୍ଣ୍ଣରେ ମାଳ ଯେ ଉତ୍ପଳ
ସୁନ୍ଦର ଅଳକା କପୋଳ
ଯେସନେ ନଟବର ବେଶ
ରଙ୍ଗ ଅଧରେ ମନ୍ଦହାସ । ୨୨

ବ୍ରାହ୍ମଣ ନାରୀ କୃଷ୍ଣ ଦେଖି
ପିଛୁଡ଼ି ନ ପାରନ୍ତି ଆଖି
ଦେହ ତିନ୍ତିଲା ଅଶ୍ରୁଜଳେ
ଅନ୍ନ ଥୋଇଲେ କାଖୁଁ ତଳେ
ତତ୍‌କ୍ଷଣେ ଶିରେ କର ଦେଇ
ବୋଲନ୍ତି "କୃଷ୍ଣ ହାହା ହାହିଁ"
ଅନଳ ଦେଖିଣ ପତଙ୍ଗ
ଯେସନେ ହୋନ୍ତି ଉଦବେଗ
ବୋଲନ୍ତି କରିବା ଗୋ କୋଳ
ଜୀବନ ହୋଇବ ସୁଫଳ
ଥୋକେ ବୋଲନ୍ତି ଏ ନୁହଇ
ବ୍ରାହ୍ମଣେ ନ ଦେବେଟି ଯାଇ
ପର ପୁରୁଷ କୋଳ କଲେ
ବିପ୍ରେ ଦଣ୍ଡିବେ ଘରେ ଗଲେ
ଏମନ୍ତ ବିଚାରନ୍ତି ରହି
କୃଷ୍ଣ ବଦନେ ଚକ୍ଷୁ ଦେଇ
ଆତ୍ମା ହୋଇଲା ମୋହଗତ
ପଞ୍ଚ ପରାଣ କଣ୍ଠାଗତ
ଚକ୍ଷୁ ବୁଜିଲେ ଭାବଭରେ
କୃଷ୍ଣଙ୍କୁ ଦେଖିଲେ ଭିତରେ
ହୃଦୟେ ଦେଖି ନାରାୟଣ
ନିବିଡ଼େ କଲେ ଆଲିଙ୍ଗନ
ତାପ ଛାଡ଼ିଲେ ବିପ୍ରନାରୀ
ଜନ୍ମ ମରଣ ଆଦି କରି
ଜ୍ଞାନକୁ ପାଇ ଦିନେ ଦିନେ
ତାପ ଛାଡ଼ନ୍ତି ଯେହ୍ନେ ଜନେ । ୨୩
ପୁଣି କ୍ଷଣକେ ଚକ୍ଷୁ ଫେଇ
ଦେଖିଲେ ପ୍ରଭୁ ଭବଗ୍ରାହୀ
ତହୁଁ ପ୍ରତିମା ପ୍ରାପ୍ତ ହୋଇ
ମନ ବୁଡ଼ିଲା କୃଷ୍ଣ ତହିଁ

ଜାଣିଲେ ପ୍ରଭୁ ଭଗବାନ
ବୋଲନ୍ତି ମଧୁର ବଚନ । ୨୪
ଭଲେ ଅଇଲଟିକି ପଥେ
ମୋ ରୂପ ଦେଖିବା ନିମନ୍ତେ ?
ତୁମ୍ଭର ପାଦ ରେଣୁ ଶିରେ
ଘେନି ସଂସାରୁ ପ୍ରାଣୀ ତରେ
ବସ ଏ ବୃକ୍ଷତଳେ ଆଈ
ମୋତେ ଅଇଲ ଅନ୍ନ ଦେଇ
ଆଜ ପବିତ୍ର ମୋର ଦେହି
ହୋଇବ ଯଜ୍ଞ ଅନ୍ନ ଖାଇ
ତୁମ୍ଭଙ୍କୁ କି କରିବୁ ସେବା ?
ବିଚାରି ମୋତେ ଆଜ୍ଞା ଦେବା । ୨୫
ପଣ୍ଡିତେ ଆତ୍ମଜ୍ଞାନ ପାଇ
ଧ୍ୟାନେ ଚିନ୍ତନ୍ତି ମୋର ଦେହି
ତୁମ୍ଭର ସ୍ୱାମୀସେବା ପ୍ରାୟେ
କ୍ଷମା କରନ୍ତି ମୋତେ ଲୟେ
ଏବେ ଦେଖିଲ ମୋ ଶରୀର
ନିଜ ମନ୍ଦିରେ ବିଜେ କର
ତୁମ୍ଭର ସ୍ୱାମୀପାଦେ ସେବ
ତେବେ ସେ ସଂସାରୁ ତରିବ
ବେଗେ ଘରକୁ ଯାଅ ଆଈ !
ପୂର୍ଣ୍ଣଆହୁତି ବେଳ ହୋଇ
ତୁମ୍ଭଙ୍କୁ ଘେନି ବିପ୍ରବରେ
ପୁଣ୍ୟ ସାଧିବେ ନିଜ ଘରେ । ୨୬-୨୮
ଶୁଣି ଗୋବିନ୍ଦମୁଖୁ ବାଣୀ
ବିକଳେ ବୋଲନ୍ତି ବ୍ରାହ୍ମଣୀ
ହେ ନାଥ କମଳଲୋଚନ !
ଅଶେଷ ଦୁଃଖ ବିମୋଚନ
ତୋହର ଆଦି ଅନ୍ତ ନାହିଁ
ଏମନ୍ତ ବୋଲ କିସପାଇଁ ?
ଆମ୍ଭେ ଛେଦିଲୁଁ ମୋହ ପାଶି
ଅଭୟ ପାଦତଳେ ଆସି
ତୋହର ଚରଣ ତୁଳସୀ
କବରୀରେ ଥିବୁଁ ଖୋସି
ଖଟିବୁଁ ପାଦପଦ୍ମ ତଳେ
ଅନେକ ଜନ୍ମ ପୁଣ୍ୟ ଥିଲେ
ସ୍ୱାମୀ ତନୟ ବନ୍ଧୁ ଗୁରୁ
ତେଜିଲୁଁ ତୋହର କୃପାରୁ
ଅଷ୍ଟାଙ୍ଗ ଯୋଗ ଲୟେ ବସି
ତୋ ରୂପ ଚିନ୍ତନ୍ତି ସନ୍ନ୍ୟାସୀ
ତାହା ପାଇଲୁଁ ପୁଣ୍ୟବଳେ
ହେ ନାଥ ! ରଖ ପାଦତଳେ
ଇଷ୍ଟ କୁଟୁମ୍ବେ କାର୍ଯ୍ୟ ନାହିଁ
ବଞ୍ଚିବୁଁ ତୋ ମୁଖ ଅନାଇଁ । ୨୯
ଏଠାରୁ ଯେବେ ଆମ୍ଭେ ଯିବୁଁ
ଘରେ ତ ପଶି ନ ପାରିବୁଁ
ବନ୍ଧୁ ପିଅର ପୁତ୍ର ପତି
ଏମାନେ ବୋଲିବେ ଅମାତି
ସଂସାରେ ନ ବୋଲିବେ ଭଲ
ବିଚାରି କହ ଆଦିମୂଳ
ଉଭୟ କୁଳ ନ ପାଇଲୁଁ
ଆମ୍ଭେ ନିଷ୍ଟୟ ନାଶ ଗଲୁଁ
କିସ କରିବୁଁ ଘରେ ଯାଇଁ ?
ତୋ ତହୁଁ ଅନ୍ୟ ଗତି ନାହିଁ । ୩୦
ହସି ବୋଲନ୍ତି ଭଗବାନ
ଏମନ୍ତ ନ ବିଚାର ମନ
ମୋର ଚରଣେ ଚିତ୍ତ ଦେଇ
ଚଣ୍ଡାଳ ଘରେ ଯେବେ ଥାଇ
ସଂସାର ତାର ପାଦ ପୂଜେ
ଯେ ମୋର ନାମ ନିତ୍ୟେ ଭଜେ

ତୁମ୍ଭଙ୍କୁ ଦେଖି ସ୍ୱାମୀଗଣେ
ଖଟିବେ ତୁମ୍ଭଙ୍କ ଚରଣେ
ତୁମ୍ଭଙ୍କୁ ଲୋଚନେ ଯେ ଚାହିଁ
ଜନ୍ମମରଣ ତାଙ୍କ ନାହିଁ । ୩୧
ମୋର ମହିମା ଶୁଣ ନାରୀ
ଯେ ମୋର ନିକଟେ ଆଚାରି
ମୋତେ ପାଇବା ଆଶେ ଜଗି
ବିଘ୍ନ ହୁଅନ୍ତି ଦୁଃଖ ଭାଗୀ
ମୋହର ଆଦ୍ୟ ଅନ୍ତ ନାହିଁ
ପ୍ରାଣୀ ପାଇବେ ମୋତେ କାହିଁ
ଯେ ମୋତେ ଦୂରେ ଥାଇ ଚିନ୍ତି
ସେ ମୋତେ ନିକଟେ ଦେଖନ୍ତି
ମନ ବଚନ ଦ୍ୟନ୍ତି ମୋତେ
ମୁଁ ଥାଇ ତାଙ୍କ ହୃଦଗତେ
ଯାଅ ମନ୍ଦିରେ ବେଗେ ମାଏ
ଚିତ୍ତ ନିବେଶି ମୋର ପାଏ
ସଂସାରେ ସୁଖ ଭୋଗ କରି
ଅନ୍ତେ ପାଇବ ମୋର ପୁରୀ
ମୋହର ପାଦେ ଚିତ୍ତ ଥାଉ
ମୋ ନାମ ଧରି ଦିନ ଯାଉ । ୩୨,୩୩
ଏ କଥା ଶୁଣି ବିପ୍ରନାରୀ
କୃଷ୍ଣବଚନେ ଚିତ୍ତେ ଧରି
ହରଷ ବିସ୍ମୟେ ଆରତ
ଏବେ ହୋ ଶୁଣ ନରନାଥ
କୃଷ୍ଣବଚନ ଛାଡ଼ି ଭ୍ରାନ୍ତି
ପାଦେ ପଡ଼ିଲେ ବିପ୍ରସତୀ
ଚରଣ ରେଣୁ ଘେନି ଶିରେ
ବ୍ରାହ୍ମଣୀ ଗଲେ ନିଜ ପୁରେ
କୃଷ୍ଣର ପାଦେ ମନ ଦେଇ
ଆନନ୍ଦ କେ ପାରିବ କହି

ମଙ୍ଗଳ ହୁଳହୁଳି ନାଦେ
କରି ନିବେଶି କାନ୍ଧେ କାନ୍ଧେ
ମଙ୍ଗଳ ନାଦେ ଗୀତ ଗାଇ
ନାଚନ୍ତି କୃଷ୍ଣ ଭାବ ବହି । ୩୪
ରାଜନ ଶୁଣ ପରମାଣି
ମନ୍ଦିରେ ଥିଲା ଯେ ବ୍ରାହ୍ମଣୀ
ଶୁଣିଲା ହୁଳହୁଳି ନାଦ
ବ୍ରାହ୍ମଣ ନାରୀଙ୍କ ଆନନ୍ଦ
ଆମ୍ଭାକୁ କହେ ରୋଷ ବହି
ନିର୍ଲଜ ଅଛୁ କାହିଁପାଇଁ
ତୁ ଛାର ଅତ୍ୟନ୍ତ ପାତକୀ
ଗୋବିନ୍ଦ ନ ପାରିଲୁ ଦେଖି
ଯାହାର ନାମ ହୃଦେ ଧରି
ଶଙ୍କର ନିତ୍ୟ ବ୍ରହ୍ମଚାରୀ
ତୁ ଛାର ଅଟୁ ବଡ଼ ହୀନ
ବ୍ରାହ୍ମଣୀମାନେ ବଡ଼ ଧନ୍ୟ
କୃଷ୍ଣଙ୍କୁ ଦେଖିଲେ ନୟନେ
ଆଜ୍ଞା ଶୁଣିଲେ ଘେନି କର୍ଣ୍ଣେ
କିସ ପାଇବୁ ମୋ ଶରୀରେ ?
ଦରିଦ୍ର ଦୁଃଖୀ ନିରନ୍ତରେ
ହା କୃଷ୍ଣ ପରମ ମଙ୍ଗଳ
ଦାସବତ୍ସଳ ଦାମୋଦର
ମୁଁ ଛାର କୋଟିକେ ଅନ୍ତର
କାହିଁ ପାଇବ ତୋ ପୟର
ମୁଣ୍ଡ ମାଇଲା ସ୍ତମ୍ଭେ ନେଇ
ପ୍ରାଣ ଛାଡ଼ିଲା ନିଜ ଦେହୀ
କୃଷ୍ଣର ପାଦେ ମନ ଦେଲା
ତୁଣ୍ଡରେ ନାମ ଉଚ୍ଚାରିଲା
ତତକ୍ଷଣେ ଦିବ୍ୟ ରୂପ ହୋଇ
ପଶିଲା କୃଷ୍ଣ ଦେହେ ଯାଇଁ । ୩୫

ଭକତ ବନ୍ଧୁ ଭାବଗ୍ରାହୀ
ବୋଲନ୍ତି ଗୋପାଳଙ୍କୁ ଚାହିଁ
ଅନ୍ନ ଭୋଜନ କର ବସି
ଆନନ୍ଦେ ନିଜ ଆତ୍ମା ତୋଷି
ଶୁଣି ସାନନ୍ଦ ଗୋପପୋଏ
ସଙ୍ଗେ ଭୁଞ୍ଜିଲେ ଦେବରାୟେ । ୩୬
ବ୍ରାହ୍ମଣେ ନିଜ ନାରୀ ଚାହିଁ
ତୋଷ ହୋଇଲେ ଯଜ୍ଞ ଦାହି
ଏମନ୍ତ ଲୀଳା ବନମାଳୀ
ଗୋପୀ ଗୋପାଳ ମଧ୍ୟେ କେଳି
ଅନନ୍ତ ପ୍ରଭୁ ଆଦିମୂଳ
ଗୋପେ ମିଳିଲେ ବାଳମେଳ । ୩୭
ବ୍ରାହ୍ମଣେ ନିଜ ନାରୀ ଦେଖି
କୃଷ୍ଣର ଭାବ ଉପଲକ୍ଷି
ବେଦ ପୁରାଣେ ପରମାଣି
ନିଶ୍ଚେ ଜାଣିଲେ ଚକ୍ରପାଣି
ଭକତ ଦେଖି ନାରୀଙ୍କର
ଚିତ୍ତେ ହୋଇଲେ ଖେଦଭର
ବୋଲନ୍ତି ଆତ୍ମାନିନ୍ଦା କରି
ଜଣ ଜଣକେ ନାମ ଧରି
ହରିଙ୍କି କଲୁଁ ଅପରାଧ
ଧିକ ଆମ୍ଭର ବ୍ରହ୍ମପଦ । ୩୮,୩୯
ବେଦପୁରାଣ ଯେତେ ପଢ଼ି
ଧିକ ଆମ୍ଭର ଆତ୍ମା ପୋଡ଼ି
ବେଦ ପୁରାଣ କ୍ରିୟା ଲଇଁ
ଯେ ହରିଭାବ ନ ଜାଣଇଁ
ଧିକ ତାହାର ଜନ୍ମ କର୍ମ
ଅନେକ ମତେ ହୋଏ ଭ୍ରମ । ୪୦
କୃଷ୍ଣର ମାୟା ଅଗୋଚରି
ଭ୍ରମନ୍ତି ବ୍ରହ୍ମା ଶିବ ସୁର

ଜଗତ-ଗୁରୁପଣେ ଥାଇଁ
ବ୍ରାହ୍ମଣ ନାମ ଆମ୍ଭେ କହି
ନାରୀଙ୍କି ନୋହିଲୁ ଭାଜନ
ଏହାଙ୍କ ନାହିଁ ନିତ୍ୟକର୍ମ
କେମନ୍ତେ କୃଷ୍ଣଙ୍କୁ ଜାଣିଲେ
ପୂର୍ବେ ଏ କେତେ ତପ କଲେ
ଦେଖ ଆମ୍ଭର କର୍ମଫଳ
ଅନ୍ନ ମାଗିଲେ ଆଦିମୂଳ
ଯଜ୍ଞେ ପୂଜିବୁଁ ଯାର ପାଦ
ପ୍ରତ୍ୟକ୍ଷେ ମିଳିଲେ ଗୋବିନ୍ଦ
ତାହାଙ୍କୁ ନ ଜାଣିଲୁଁ ମୋହେ
ଜୀବନ ଅଛୁ କିପାଁ ଦେହେ
ସେ ହରି ଦେଶ କାଳ ପାତ୍ର
ଦ୍ୱିଜାଦି ଧର୍ମ ଦଇବତ
ବିପ୍ର ଅନଳ ଦେବଗଣ
ଯଜ୍ଞ କରତା ଯଜମାନ
ସକଳ ପ୍ରଭୁ ଭଗବାନ
ନ ଜାଣି ହୋଇଲୁଁ ଅଜ୍ଞାନ
କମଳା ଥାଇ ପାଦତଳେ
ବଦନ ନିରେଖି ନିଶ୍ଚଳେ
ଚଞ୍ଚଳା ଦୋଷ ଛାଡ଼ି ସେବି
ଭାବ ନ ପାରିଲା ସାଧବୀ
ଅନାଦି ପ୍ରଭୁ ଯୋଗେଶ୍ୱର
ଗୁପତେ ଅଛି ନନ୍ଦଘରି
ଜାଣି ନ ପାରିଲୁଁ ସକଳେ
କୃଷ୍ଣର ମାୟା ଯୋଗବଳେ
ତାହାର ମାୟାତନ୍ତେ ଭ୍ରମି
ଆମ୍ଭେ ହୋଇଲୁଁ ନିତ୍ୟକର୍ମୀ ।
ଅନେକ କଲୁଁ ଅପରାଧ
କ୍ଷମି କରିବା ପଦ୍ମନାଭ

ଏମନ୍ତ ବୋଲି ଗୋଡ଼ାଇଲେ
ବନେ ଅନେକ ଦୂର ଗଲେ
କୃଷ୍ଣ ନ ଦେଖି ବୃନ୍ଦାବନେ
ବ୍ରାହ୍ମଣ ବିଚାରନ୍ତି ମନେ
ଗୋବିନ୍ଦ ଛନ୍ତି ନନ୍ଦ ଘରେ .
ଜାତ ହୋଇଲେ ମଧୁପୁରେ
ଆମ୍ଭେ ନ ଯିବା ଗୋପପୁର
ନ ପୁଣ ଜାଣେ କଂସାସୁର
ମଥୁରା ଯେତେବେଳେ ଯିବେ
କୃଷ୍ଣ କଂସକୁ ସଂହାରିବେ
କୃଷ୍ଣ ଦେଖିବା ରାମ ଭୁଲେ
ଏମନ୍ତ ବୋଲି ବାହୁଡ଼ିଲେ । ୪୧-୫୩

କହିଲି ବିପ୍ର ଜଗନ୍ନାଥ
କୃଷ୍ଣ ଚରିତ ଭାଗବତ
ସୁଜନେ ଶୁଣ ଶ୍ରୁତି ଦ୍ୱାରେ
ନ ବୁଡ଼ ସଂସାର ସାଗରେ
ସକଳ ଜୀବ ଦେହେ ଥାଇଁ
ଭ୍ରମ କରନ୍ତି ଭବଗ୍ରାହୀ
ତାହାର ନାମ ଉଚ୍ଚାରିଲେ
ଭ୍ରମ ନ ଥାଇ ଆତ୍ମାକୁଳେ
କହିଲି ଏ ପରମ ତତ୍ତ୍ୱ
କୃଷ୍ଣ ସେବକ ବଳବନ୍ତ ।
ରେ ମନ କୃଷ୍ଣ ଆଶ୍ରେ କର
ସର୍ବ ଆପଦ ହେବ ଦୂର ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଯଜ୍ଞପତ୍ନୀ ମୋକ୍ଷଣଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥ ୨୪ ॥

—ః * ః—

## ପଞ୍ଚବିଂଶ ଅଧ୍ୟାୟ

( ମୂଳାନୁସାରେ ୨୪ ଶ ଅଧ୍ୟାୟ )

ଚତୁର୍ବିଂଶେ ମହେନ୍ଦ୍ରସ୍ୟ ମଖଂ ବ୍ୟାବର୍ତ୍ତି ହେତୁଭିଃ ।
କୃଷ୍ଣଃ ପ୍ରବର୍ତ୍ତୟାମାସ ଗୋବର୍ଦ୍ଧନମଖୋତ୍ସବଂ । ୦ ।

ପଚିଶେ ଏଡ଼ି ଇନ୍ଦ୍ରପୂଜା । ଗିରି ପୂଜିଲେ ନନ୍ଦରାଜା । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଚୂଡ଼ାମଣି
ଗୋପନଗରେ ଚକ୍ରପାଣି
ରୋହିଣୀନନ୍ଦନର ତୁଲେ
ଧନ ହରନ୍ତି ଗୋପମେଳେ
ଗୋପାଳେ ମିଳି ଏକାଧନେ
ଇନ୍ଦ୍ରର ଉତ୍ସବ ବିଧାନେ

ସକଳେ ବସୁରନ୍ତ ବସି
ମଧ୍ୟେ ବିଜୟ ବ୍ରହ୍ମରାଶି
ସ୍ୱଭାବେ ବ୍ରହ୍ମାଣ୍ଡ-ଠାକୁର
ଜାଣନ୍ତ ଗୋପଙ୍କ ବିଚାର
ଲୋକ ବେଭାର ଭାବଗ୍ରାହୀ
କହନ୍ତ ନନ୍ଦମୁଖ ଚାହିଁ
ବୃଦ୍ଧ ଗୋପାଳେ ଛନ୍ତ ଯେତେ
ବିଶ୍ୱାସ କରି ଯେଷ୍ଠାମତେ ।୧,୨
ହେ ତାତ ! କପାଁ ଉଦବେଗ
କହ ଏ କାହାର ଉତ୍ସବ
ତୁମ୍ଭେ ବିଚାର ଯଜ୍ଞମତେ
ଉଦ୍ଦେଶ୍ୟ ଜାଣିବି କେମନ୍ତେ
କେବଣ ମତେ ସାଧ କରି
ଯଜ୍ଞ କରନ୍ତ ନରନାରୀ
ଏ ଯଜ୍ଞ କଲେ କିସ ଫଳ ?
ହସି କହନ୍ତ ନନ୍ଦବାଳ । ୩
ଏଣେ ସଂଶୟ ମୋର ମନ
କହ ତୁ ପୂଜାର ବିଧାନ
ଗୁପତ ନ କର ପିଅର
ଏ ସାଧୁଜନଙ୍କ ବେଭାର
ଭାବ ସେବକେ ଗୁହ୍ୟ କହି
ବିଶେଷେ ତୋର ପୁତ୍ର ମୁହିଁ । ୪
ସମଦରଶୀ ଯାର ଚିତ୍ତ
ନାହିଁ ତାହାର ରିପୁ ମିତ୍ର । ୫
ସଂସାର ଧର୍ମେ ଥାଇ ଜନ୍ତୁ
ଇଚ୍ଛନ୍ତ ନାନାକର୍ମ ହେତୁ
ଜାଣି ନ ଜାଣି ଫଳ ଆଶେ
କର୍ମ ସାଧନ୍ତ ମନ ତୋଷେ
ଦଇବ ମତେ ଫଳ ହୋଇ
ଯେ ଯାହା କର୍ମବଳେ ପାଇ । ୬
ବେଦ ପୁରାଣ କର୍ମ ଯେନ
କର୍ମ ସାଧନ୍ତ ବିପ୍ର ମୁନି
ତୁମ୍ଭେ ସାଧିବ କେଉଁ ମତେ ?
ବିସ୍ତରି କହ ତାତ ମୋତେ । ୭
କୃଷ୍ଣ ବଚନ ନନ୍ଦ ଶୁଣି
କୋଳେ ବସାଇ ଚକ୍ରପାଣି
ବୋଲଇ ଶୁଣ ଦାମୋଦର
ପୂଜା କରିବୁଁ ସୁରେଶ୍ୱର
ତାର ଆଜ୍ଞାରେ ମେଘମାଳ
ସଂସାରେ ବରଷନ୍ତ ଜଳ
ମେଦିନୀ ଜଳଯୋଗ ପାଇ
ଅନେକ ଶସ୍ୟ ଉପୁଜାଇ
ଜୀବିକା ହୋନ୍ତ ପ୍ରାଣୀଙ୍କର
ତେବେ ସେ ଜୀଅନ୍ତ ସଂସାର । ୮
ଶସ୍ୟସମ୍ପଦ ଯେନ ଜନେ
ଯଜ୍ଞ କରନ୍ତ ତୋଷମନେ
ନାନା ଦେବତା ଯଜ୍ଞେ ଦାହି
ପୂଜି ଅନେକ ଫଳ ପାଇ
ଏମନ୍ତେ ସେ ଯାହାର ମତେ
ଇନ୍ଦ୍ରଙ୍କୁ ପୂଜନ୍ତ ଜଗତେ । ୯
ଯେ ଯାହାମତେ ନାନା ଯାଗ
କରି ଲଭନ୍ତ ତିନ ବର୍ଗ
ଇଷ୍ଟ ଦେବତା ଶୁଭ କାଳେ
ପୂଜା କରନ୍ତ ମହୀତଳେ । ୧୦
ଯେ ନର ଲୋଭେ ବଶ ହୋଇ
ଇଷ୍ଟ ଦେବତା ନ ପୂଜଇ
ତାହାର ନାହିଁ ସୁଖ ଲେଶ
ଆପଦ ହୋଏ ପରବେଶ । ୧୧

### ଶ୍ରୀ ଶୁକ ଉବାଚ

ନନ୍ଦବଚନ କୃଷ୍ଣ ଶୁଣି
ବୃଦ୍ଧ ଗୋପାଳେ ତାହା ଭଣି
ଇନ୍ଦ୍ର ବିଷୟେ କୋପ କରି
ନନ୍ଦଙ୍କୁ ବୋଲନ୍ତି ମୁରାରି । ୧୨
କୃଷ୍ଣ ବୋଲନ୍ତି ଶୁଣ ତାତ
ସଂସାର କର୍ମେ ଆତଯାତ
ଏ ଜୀବଆତ୍ମା କର୍ମ ଘେନି
ଗତ ଆଗତ ପଥଶ୍ରମୀ
କର୍ମର ମତେ ଦୁଃଖ ସୁଖ
ଜନ୍ମ ମରଣ ହୋଏ ଦେଖ । ୧୩
କର୍ମଟି ଦୁଃଖ ସୁଖ ଦାତା
ବିଶ୍ୱ ସଂସାରେ ବଳବନ୍ତା
ହେ ତାତ ! କର୍ମପାଦେ ସେବ
କର୍ମହୁଁ ନାହିଁ ଅନ୍ୟ ଦେବ
କର୍ମ ଭୁଞ୍ଜନ୍ତା ପ୍ରାଣିଙ୍କର
ଇନ୍ଦ୍ରତ ନୁହଇ ଠାକୁର । ୧୪,୧୫
ସ୍ୱଭାବେ ଜୀବ ଆତଯାତ
ସ୍ୱଭାବେ ସଞ୍ଚରେ ଜଗତ
କର୍ମର ବଳେ ଦେହ ଘେନି
ଜୀବ ଭ୍ରମଇ ନାନା ଯୋନି
କର୍ମ ଯେ ଶତ୍ରୁ ମିତ୍ର ହୋଇ
ଗୁରୁଙ୍କ ପ୍ରାୟେ ଶିକ୍ଷା ଦେଇ
ସକଳେ କର୍ମ ସେବା କର
କହନ୍ତି ପ୍ରଭୁ ଦାମୋଦର । ୧୬-୧୮
ଯେ ପ୍ରାଣୀ ନିଜ କର୍ମ ଛାଡ଼ି
ଅନ୍ୟ ଜୀବିକା ଲୋଭେ ଲୋଡ଼ି
ଦୁର୍ଗତି ପଥ ଆବୋରନ୍ତି
ଯେସନେ କୁଟପ ଯୁବତୀ । ୧୯

ହେ ତାତ ! ଶୁଣ କର୍ମ କଥା
ବେଦ ପୁରାଣେ ଯେ ବ୍ୟବସ୍ଥା
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ
ଯେ ଯାହାମତେ ବୃତ୍ତି ଭିନ୍ନ
ଯଜନ ଆଦି ଷଟ କର୍ମ
ବ୍ରାହ୍ମଣ ଜନର ଏ ଧର୍ମ ।
ଭୂମିପାଳନ ଶୂରବନ୍ତ
ଦାନ ପୌରୁଷ କ୍ଷତ୍ରି ବୃତ୍ତି
କୃଷି ବାଣିଜ୍ୟ ଗୋରୁ ବୃତ୍ତି
ବୈଶ୍ୟ ଜନଙ୍କର ଏ ଗତି
ବ୍ରାହ୍ମଣପାଦେ ସେବା କରି
ଶୂଦ୍ରେ ହୋଇବେ ସୁଖାଗାରୀ ।
ଏ ଚାରି ବର୍ଣ୍ଣର ଭିତର
ବୈଶ୍ୟଙ୍କ ମତଟି ଆମ୍ଭର । ୨୦,୨୧
ହେ ତାତ ! ଶୁଣ ଆଦି ଅନ୍ତ
ଯେମନ୍ତ କହଇ ବେଦାନ୍ତ
ସୃଷ୍ଟିର କାଳେ ନାରାୟଣ
ଆଗେ ସର୍ଜିଲେ ତିନି ଗୁଣ
ରଜ ଗୁଣରୁ ବ୍ରହ୍ମା ହୋଇ
ସତ୍ତ୍ୱ ଗୁଣକୁ ବିଷ୍ଣୁ ପାଇ
ରୁଦ୍ରକୁ ଦେଲେ ତମ ଗୁଣ
ସୃଷ୍ଟି ପାଳନ ସଂହାରଣ
ବ୍ରହ୍ମା ଭିଆଣେ ମେଘମାଳ
ସଂସାରେ ବରଷନ୍ତି ଜଳ
ଜନ୍ତୁ ଜୀବିକା ତେଣେ ହୋଇ
ଇନ୍ଦ୍ରେତ ପ୍ରୟୋଜନ ନାହିଁ
ଇନ୍ଦ୍ରତ ତପେ ବଡ଼ପଣ
ଜଗତ ବିଷ୍ଣୁର ଭିଆଣ । ୨୨,୨୩
ଗ୍ରାମ ପାଟଣା ଦେଶପୁରେ
ଇନ୍ଦ୍ରକୁ ପୂଜିବେ କେଉଁରେ

ବନ ଗହନେ ଆମ୍ଭ ଘର
ଗୋରୁ ଚରାଉ ନଗାଗ୍ରର
ନର୍ଝର ଜଳ ପାନ କରି
ଆମ୍ଭ ଦେବତା ବନଗିରି । ୨୪
ତୁମ୍ଭର ଯଜ୍ଞ ଯେବେ ସତ୍ୟ
କହଇ ଶୁଣ ଏକଚିତ୍ତ
ଗୋରୁ ବ୍ରାହ୍ମଣ ପ୍ରୀତି ଫଳେ
ଯଜ୍ଞ କରିବା ଗିରିତଳେ
ପୂଜିବା ଗୋବର୍ଦ୍ଧନ ଶିରେ
ଯେ ଇନ୍ଦ୍ର ଯଜ୍ଞର ସମ୍ଭାରେ । ୨୫
ଦ୍ୱିଗୁଣ କରି ବଳି ଭୋଜା
ସୁଖେ କରିବା ଗିରିପୂଜା
ନାନା ବ୍ୟଞ୍ଜନ ଷଡ଼ରସ
ପିଷ୍ଟକ ପ୍ରଧାନ ପାୟସ
ଗୋରସ ଘୃତ ରସପୁଳୀ
ନାନା ପିଷ୍ଟକେ ଖଣ୍ଡ ବୋଳି
ଅନଳ ପୂଜା ହୋମ କରି
ଋତ୍ୱିକ ବ୍ରତି ବେଦୁଁ ବରି
ପୂର୍ଣ୍ଣ ଆହୁତି ଯଜ୍ଞ ଅନ୍ତେ
ଦକ୍ଷିଣା ଦିଅ ଯଥୋଚିତେ
ଗୋରୁ କାଞ୍ଚନ ତିଳ ଅନ୍ନ
ଅତିଥି ପୂଜାର ବିଧାନ
ଯେ ଯାହା ମତେ ତୋଷ କରି
ସୁଖେ ଭୁଞ୍ଜିବେ ନରନାରୀ । ୨୬,୨୭
କୋମଳ ତୃଣ ଅନ୍ନ ସଙ୍ଗେ
ଗୋରୁଙ୍କୁ ଭୁଞ୍ଜାଇବା ରଙ୍ଗେ
ପର୍ବତେ ବଳି ଭୋଜା ଦେଇ
ସକଳେ ଅଳଙ୍କାର ଲଇ
କରିବା ଗିରି ପ୍ରଦକ୍ଷିଣ
ଆରାଧି ଅନଳ ବ୍ରାହ୍ମଣ

ମୋହର ମତେ ଏ ଯୋଗାଇ
କୃଷ୍ଣ ବୋଲନ୍ତି ନନ୍ଦ ଛୁଇଁ । ୨୮-୩୦
ମୁନି କହନ୍ତି ରାଜା ଆଗେ
ଶୁଣି ଗୋପାଳେ ଉଦବେଗେ
କୃଷ୍ଣବଚନ ପ୍ରତିପାଳି
ନନ୍ଦଙ୍କୁ ଘେନି ମଧ୍ୟେ ଭାଳି
କୃଷ୍ଣବଚନ ପରଶଂସି
ମିଳିଲେ ଯେଝାଘରେ ଆସି । ୩୧
ଦ୍ୱିଗୁଣ ସମ୍ଭାରନ୍ତି ଘେନି
କରନ୍ତି ନାନା ବାଦ୍ୟଧ୍ୱନି
ପର୍ବତ ତଳେ ଯାଇ ମିଳି
କାମିନୀ ଦିଅନ୍ତି ହୁଳହୁଳି
ଯଜ୍ଞ ଆରମ୍ଭି ଗିରି ତଳେ
ପୂଜିଲେ ଗୋ ବିପ୍ର ଅନଳେ
ଯେ ଯାହା ମତେ ଦେଲେ ଦାନ
ସୁବର୍ଣ୍ଣ ବସ୍ତ୍ର ଗୋରୁ ଅନ୍ନ
ଦେବ ଅତିଥି ପୂଜା କରି
ଭୋଜନ କଲେ ନରନାରୀ । ୩୨,୩୩
ବିବିଧ ଅଳଙ୍କାର ଲଇ
ଗୋରୁ ବ୍ରାହ୍ମଣ ମଧ୍ୟେ ଥାଇ
ପର୍ବତ କଲେ ପ୍ରଦକ୍ଷିଣ
ଗୋରୁଙ୍କୁ ଦେଲେ ଜଳ ତୃଣ
ଶକଟ ମଣ୍ଡିଲେ ଗୋପାଳେ
ଦିବ୍ୟ ବସନ ରତ୍ନମାଳେ
ବାଳକ କୋଳେ ଘେନି ନାରୀ
ନନ୍ଦ ଯଶୋଦା ଆଦି କରି
ରୋହିଣୀ ଯଶୋଦାର ମେଳେ
ରାମ ଗୋବିନ୍ଦ ଘେନି କୋଳେ
ଶଙ୍ଖ ମହୁରି ନାଦ କରି
ମୁରଲୀ ନାଦେ ଗୀତ ସ୍ତୁତି

ବୁଲନ୍ତି ସର୍ବେ ଗ୍ବର ବଗେ
କୃଷ୍ଣ ଆନନ୍ଦ ବଳ ଯୋଗେ
ଗୋବନ୍ଦ ଯୋଗମାୟା ବଳେ
ପର୍ବତ ଶିଖେ ବଜେ କଲେ
ଯଶୋଦା କୋଳେ ଛନ୍ତି ବସି
ଗୋପ ଗୋପାଳଙ୍କୁ ଆଶ୍ୱାସି
ପର୍ବତେ ପୁଣି ବିଶ୍ୱରୂପୀ
ଟେକ ଗୃହାନ୍ତି ଗୋପ ଗୋପୀ
ବେଦ ଯୋଜନ ଲମ୍ବେ ଭୁଜ
ଶିରେ ଲଗଇ ଗ୍ରହବଜ
ଶ୍ୟାମସୁନ୍ଦର ତନୁ ବର୍ଣ୍ଣି
ଗୋପଙ୍କୁ ଗ୍ବହିଁ ସାବଧାନ
ବୋଲନ୍ତି ହୋଇଲ ମୁଁ ତୋଷ
ଆନନ୍ଦେ ପୂରୁ ତୁମ୍ଭ ଆଶ
ହ୍ୱସ୍ତି ନ୍ତି ହୋଇଥାଅ ବନେ
ମୋହର ପୂଜାର ବିଧାନେ
ସକଳ ଖଣ୍ଡି ବ ପ୍ରସାଦ
ଗୋକୁଳ ହୋଇବ ଆନନ୍ଦ
ତଳେ ଲମ୍ବିଇ ବେଦ ଭୁଜ
ବଳ ଭୁଞ୍ଜନ୍ତି ଗିରିରାଜ ୩୪,୩୫
ଗୋପୀ ଗୋପାଳଙ୍କୁ ଅନାଇଁ
ବୋଲନ୍ତି ପ୍ରଭୁ ଭାବଗ୍ରାହୀ
ଦେଖ ହୋ ପର୍ବତ ମହିମା
ଯଜ୍ଞର ବଳ ପୁଣ୍ୟକର୍ମା
ପ୍ରସନ୍ନ ହୋଇଲେ ସେ ଆଜ
କିସ କରିବ ଦେବରାଜ ?
ଏତେହେଁ କାଳ କଲେ ପୂଜା
ଦେବତା ନ ଖାଇଲା ଭୋଜା
ଏମନ୍ତ ହିଅଁ ଅଛୁ କାହିଁ
ହସ୍ତପ୍ରସାରି ବଳଖାଇ
ଇନ୍ଦ୍ରର ବର୍ଣ୍ଣି ଚିହ୍ନ ନାହିଁ
ନ ଜାଣି ପୂଜ ବାଇ ହୋଇ
ଏମନ୍ତ ନ ଦେଖିବା ହନେ
ବଳ ଭୁଞ୍ଜଇ ତୋଷମନେ
ଏବେ ତୁମ୍ଭର ଚିନ୍ତା ନାହିଁ
ନିଶ୍ଚିନ୍ତେ ଥିବ ଏହା ଧ୍ୟାୟି
ଏ ଆମ୍ଭ ପୂରାଇବ ଆଶା
ଏଣେ ସେ ଆମ୍ଭର ଭରସା
ଏହାକୁ କର ନମସ୍କାର
ଏ ଆମ୍ଭ ଜୀବନ ଠାକୁର
ଏହାଙ୍କୁ ଅବଜ୍ଞା ଯେ କରି
ପଡ଼ିବେ ନରକ ଆବୋରି
ଏ ଆମ୍ଭ ରଖିବ ଗୋକୁଳ
ବୋଲନ୍ତି ପ୍ରଭୁ ଆଦ୍ୟମୂଳ
ଏମନ୍ତ ବୋଲି ବନମାଳୀ
ଆପଣେ କଲେ ନଉସ୍ଥଳି
ଦେଖି ଆନନ୍ଦ ଗୋପ ଗୋପୀ
କୃଷ୍ଣଙ୍କୁ ଗୃହାଁନ୍ତି ନରେପି
ବୋଲନ୍ତି ଆମ୍ଭେ ଭାଗ୍ୟବନ୍ତ
ପ୍ରତ୍ୟକ୍ଷେ ଦେଖିଲୁ ପର୍ବତ
କଲ୍ୟାଣ ହେଉ ନନ୍ଦବାଳ
ଆମ୍ଭର ରଖିବ ଗୋକୁଳ
ଏମନ୍ତ ପୂଜା ବିଧି କଲେ
ଗୋପେମିଳିଲେସନ୍ଧ୍ୟାକାଳେ ।୩୬୩୭
କୃଷ୍ଣ ଚରିତ ପରଶଂସି
ମିଳିଲେ ନନ୍ଦଘରେ ଆସି
ସେ ହରି ଚରଣେ ବିଶ୍ୱାସ
କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଇନ୍ଦ୍ରପୂଜା ଭଞ୍ଜନଂ
ନାମ ପଞ୍ଚବିଂଶୋଽଧ୍ୟାୟଃ । ୨୫ ।

## ଷଡ଼ବିଂଶ ଅଧ୍ୟାୟ

( ମୂଳାନୁସାରେ ୨୫ଶ ଅଧ୍ୟାୟ )

ପଞ୍ଚବିଂଶେ ରୁଷା ଶକ୍ରେ ବ୍ରଜନାଶାୟ ବର୍ଷତି ।
ଉଦ୍ଧୃତ୍ୟ ଗିରିମାସାର୍ବ ଦରକ୍ଷଦ୍ ଗୋକୁଳଂ ବିଭୁଃ । ୦ ।

ଷଡ଼ବିଂଶରେ ଇନ୍ଦ୍ର କ୍ରୋଧେ । ବରଷା କରନ୍ତି ବ୍ରଜେ ବାଦେ ।
ଶ୍ରୀକୃଷ୍ଣ ଟେକିଲେ ଗିରି କରେ । ଗୋରୁ ଗୋପାଳ ରକ୍ଷା କଲେ ।୦।

ଶ୍ରୀ ଶୁକ ଉବାଚ

ପରୀକ୍ଷ ମୁଖକୁ ଅନାଇଁ
ମୁନି କହନ୍ତି ତୋଷ ହୋଇ
ରାଜନ ଶୁଣ ପରମାଣି
ସ୍ୱର୍ଗେ ଜାଣିଲା ବଜ୍ରପାଣି
କୃଷ୍ଣର ଦେଖି ଦୁଷ୍ଟ ପଣ
କୋପେ କମ୍ପିଲା ସୁରରାଣ । ୧ ।
କହଇ ଦେବଙ୍କୁ ବସାଇ
ମେଘ ପବନକୁ ଅଣାଇ
ପ୍ରଳୟକାଳ ମେଘଗଣ
ଅନାଇ କହେ ମଘବାନ । ୨ ।
ଶୁଣ ବଚନ ମେଘମାନେ !
ମୋ ପୂଜା ଭାଙ୍ଗିଲେ ଗୋପାଳେ
ଯଶୋଦାସୁତ କୃଷ୍ଣ ବୋଲି
ଗୋପାଳେ ମୋତେ ନ ମାନିଲେ
ବାଳକ କୃଷ୍ଣ ବୋଲି ନାମ
ତାହାର ବୋଲେ ଏଡ଼େ କର୍ମ
ମନୁଷ୍ୟ ହୋଇ ବଳୀୟାର
ପୂଜା ଭାଙ୍ଗିଲା ଗୋପେ ମୋର

ଗଉଡ଼େ କୃଷ୍ଣ ସଙ୍ଗେ ଖେଳ
ମୁଁ ଆଜ ପୁରାଇବି କାଳ
ଏ ଅପମାନ କେବା ସହି
ସ୍ୱର୍ଗରେ ଇନ୍ଦ୍ର ପଦ ବହି । ୩ ।
ସମ୍ପଦ ମତ୍ତ ଗର୍ବ ଅନ୍ଧେ
ସିନ୍ଧୁ ତରିବେ ବାଳି ବନ୍ଧେ
ଦଦରା ନାବେ ଯେହ୍ନେ ବସି
ସମୁଦ୍ର ତରଣେ ସାହସୀ
ଭବତରଣେ ପଥ ଲୋଡ଼ି
ପଣ୍ଡିତ ଧର୍ମଶାସ୍ତ୍ର ଛାଡ଼ି
ଏମନ୍ତ ମଣିଲେ ଗୋପାଳେ
ନନ୍ଦଗୋପାଳ-ପୁତ୍ର ବୋଲେ
ବାଳକ ସପତବରଷ
ତା ବୋଲେ କରିଲେ ବିଶ୍ୱାସ
ବାତୁଳ ପ୍ରାୟ ଖେଳୁ ଥାଇ
ପାଠ ପଠନ ନ ଜାଣଇ
ଗାଈ ଚରାଇ ବନେ ବନ
ଗୋପଙ୍କ ସଙ୍ଗେ ବେଣୁସ୍ୱନ
ପଣ୍ଡିତ ପ୍ରାୟ ତାକୁ ମଣି
ମୋହର ମହିମା ନ ଜାଣି

ଏଡ଼େ ଅମାନ୍ତ ଆଚରିଲେ
ଆଜ ସଂଗ୍ରାମ କୃଷ୍ଣ ଭୁଲେ । ୪,୫
ଜାଣିବା କୃଷ୍ଣ ଆଶ୍ରେ କରି
କେମନ୍ତେ ଥିବେ ଗୋପପୁରୀ
ଗୋରୁ ଗୋପାଳ କୃଷ୍ଣ ଆଦି
ଏ ମୋର ଯଜ୍ଞଭଙ୍ଗେ ବାଧି
ଏହାଙ୍କୁ କର ବେଗେ ନାଶ
ଆବୋରି ବୃନ୍ଦାବନ ଦେଶ
ତୁମ୍ଭେ ପ୍ରଳୟ ଗୃହ ମେଘେ
ଗୋପେ ବରଷ ଯାଇଁ ବେଗେ
ଶୁଣ ପବନ ଅଣଞ୍ଚାଶ
ଅଠର ଖଣ୍ଡ ମେଘେ ମିଶି
ବିଜୁଳି ଘୋର ନାଦ ସେନ
ଶବଦେ କମ୍ପାଅ ମେଦିନୀ
ବଜ୍ର ପାଷାଣ ସଙ୍ଗେ ବାରି
ବରିଷ ଘୋର ନାଦ କରି । ୬
ମୁଁ ପୁଣ ତୁମ୍ଭ ପଛେ ଥାଇ
ଅଇରାବତକୁ ଆରୋହି
ବଜ୍ର ମାରିବି ନରନ୍ତରେ
ଅନଳ ଜ୍ୟୋତି ପରଖରେ
ନନ୍ଦସମ୍ପଦ କରି ନାଶ
ତେବେ ଯେ ମୋର ମନ ତୋଷ
ରିପୁ ନ ସାଧନ୍ତି ଯେ ପ୍ରାଣୀ
ତାହାଙ୍କୁ ମନୁଷ୍ୟ ନା ଗଣି । ୭
ଶୁକ କହନ୍ତି ରାଜା ଆଗେ
ଇନ୍ଦ୍ରର ବୋଲେ ଗୃହ ମେଘେ
ପ୍ରଚଣ୍ଡ ଶୀତ ବାତ ଭୁଲେ
ପବନ ବେଗେ ଚଳିଗଲେ
ଗୋପନଗର ସୀମା ଯେତେ
ରୁନ୍ଧିଲେ ଦିଗ ଶୂନ୍ୟପଥେ
ବିଜୁଳି ନାଦ ଖରତର
ଦିବସେ କଲେ ଅନ୍ଧକାର
ପବନ ଘୋର ନାଦ କରି
ଶବଦେ କମ୍ପେ ବସୁନ୍ଧରୀ
ହସ୍ତୀର ଶୁଣ୍ଢ ପ୍ରାୟ ଜଳ
ଧାରା ବରଷନ୍ତି ଗହଳ
ଜଳର ସଙ୍ଗେ ଶିଳା ପଡ଼ି
ଶବଦ ମେଘ ଘଡ଼ଘଡ଼ି
ଦଣ୍ଡକ ଉଚ୍ଛୁଳିଲା ମହୀ
ସ୍ଥଳ ଗଭିର ନ ଦିଶଇ । ୮-୧୦
ଶୀତ ପବନ ସଙ୍ଗେ ବାରି
କମ୍ପନ୍ତି ଗୋପ ନରନାରୀ
ଗୋପାଳେ ଦେଖି ବିପରୀତ
ବୋଇଲେ ହୋଇଲୁ ଅନାଥ
ଯଶୋଦାନନ୍ଦନର ବୋଲେ
ବିବାଦ କଲୁ ଇନ୍ଦ୍ର ଭୁଲେ
ବାଳବଚନ ସତ୍ୟ କରି
ଅନାଥ ହେଲୁ ଗୋପପୁରୀ
କାହାରେ ପଶିବୁଁ ଶରଣ
ଅକାଳେ ହୋଇଲା ମରଣ
ଅନାଥ ହୋଇଲୁ ଗୋକୁଳ
ଡାକନ୍ତି ରଖ ଆଦିମୂଳ । ୧୧,୧୨
ହେ କୃଷ୍ଣ ତୋର ବୋଲ କରି
ନଷ୍ଟେ ବୁଡ଼ିଲା ଗୋପପୁରୀ
ଗୋରୁ ଏ ଶିଳାଜଳେ କମ୍ପି
କୃଷ୍ଣଙ୍କୁ ଗୁହାନ୍ତି ନିରେପି
ଲାଞ୍ଜ ଆଚ୍ଛାଦ ଅଧୋମୁଖେ
ମିଳିଲେ ଗୋବର୍ଦ୍ଧନ ପାଶେ
ବୃଦ୍ଧ ବାଳକେ ଥରହର
ଡାକନ୍ତି ରଖ ଦାମୋଦର !

ତୋତେ ଶରଣ ଗୋପପୁର
ତୁ ନାଥ ଆମ୍ଭ ବଳୀୟାର
ଥୋକେ ବୋଲନ୍ତି, କୃଷ୍ଣ ବୋଲେ
ବିବାଦ କଲୁଁ ଇନ୍ଦ୍ର ଭୁଲେ
ଏ କାହିଁ ରଖିବ ଗୋକୁଳ
ବାଇ ପଣିଯେ ନନ୍ଦବାଳ
ସକଳେ ହୋଇଲୁଁ ନିରେଖ
ଡାକନ୍ତି ରଖ ପଦ୍ମମୁଖ
ମଧୁସୂଦନ ଚକ୍ରଧର
ଅନାଦ୍ଧ ଧର୍ମ ନିରାକାର
ତୋର ଶରଣୁ ଅନ୍ୟ ନାହିଁ
ରଖ ଗୋକୁଳ ଭବଗ୍ରାହୀ !
ଇନ୍ଦ୍ରର ହୋଇଲୁ ବଇରୀ
ବୁଡ଼ିଲା ଗୋପପୁର ଶିରୀ
ସକଳେ ହୋଇଲୁଁ ନିରାଶ
ଗୁଡ଼ିଲୁଁ ଜୀବନର ଆଶ । ୧୩
ଗୋପର ଦେଖିଣ ବିକଳ
ହସି ବୋଲନ୍ତି ଆଦ୍ୟମୂଳ
ଏ ଅପରୂପ ବରଷଣ
ପ୍ରଚଣ୍ଡ ପବନ ପାଷାଣ
ବରଷା ଋତୁ ଏ ନୁହଇ
ଇନ୍ଦ୍ର ବରଷେ କୋପ ବହି
ବାସବ ମୋତେ ନ ଜାଣଇ
ମନୁଷ୍ୟ ପ୍ରାୟେକ ମଣଇ
ମୋହର ଜୀବନ ଗୋକୁଳ
ଏହାଙ୍କୁ କରଇ ଆକୁଳ
ମୋତେ ସେ କଲା ଏଡ଼େ କର୍ମ
ଭୋଳେ ହୋଇଲା ମତିଭ୍ରମ
ପୂର୍ବେ ଏ ଅଛି ତପ ଦାହି
ମୋହର ପାଦେ ଶତ୍ର ଦେଇ
କେମନ୍ତେ ନାଶିବ ସମ୍ପଦ
ମୋହର ଦେଲା ଇନ୍ଦ୍ରପଦ
ଏହାର ଗର୍ବ ଆଜ ନାଶି
ପୁଣି ମୁଁ ସ୍ଥାପିବି ବିଶ୍ୱାସୀ । ୧୪-୧୬
ମୋହର ଭାବ ଯେ ଜାଣଇ
ତାହାର ଦେହେ ଗର୍ବ ନାହିଁ
ଗର୍ବଗଞ୍ଜନ ବାନା ମୋର
ଦୁଷ୍ଟ ଦଳନେ ଅବତାର
ମୋର ସମ୍ପଦ ଗୋପପୁରୀ
ମୁହିଁ ସେ ଗୋପପୁର ଶିରୀ
ମୋତେ ମାରିବ ବୋଲି କୋପେ
ଇନ୍ଦ୍ର ହିଁ ଆସିଅଛି ଗୋପେ
ହସ୍ତୀର କନ୍ଧେ ଇନ୍ଦ୍ର ଥାଇ
ବଜ୍ର ମାରଇ ମୋତେ ଗୃହିଁ
ଆଜ ମୁଁ ରଖିବ ଗୋକୁଳ
କେ ସହୁ ଗୋରୁଙ୍କ ବିକଳ । ୧୭-୧୮
ଏତେ ବିଚାରି ଗୋପୀନାଥ
ବଢ଼ାଇ ଦେଲେ ବାମ ହସ୍ତ
ପର୍ବତ ଥିଲା ନିଘାଟରେ
ଗୋବିନ୍ଦ ଉଠାଇଲେ କରେ
ଛତ୍ର ପ୍ରାୟେକ ଗିରି ତୋଳି
ଡାକନ୍ତି ପ୍ରଭୁ ବନମାଳୀ
ହେ ତାତ ମାତ ଗୋପବାଳେ !
ବହନ ପଶ ଗିରିତଳେ
ଗୋରୁ ଗୋପାଳ ଆଦି କରି
ସର୍ବସମ୍ପଦ ନରନାରୀ
ନିର୍ଭୟ ହୋଇ ସର୍ବେ ପଶ
ମନେ ନ କର କିଛି ତ୍ରାସ
ହସି ବୋଲନ୍ତି ପୀତବାସ
ତୁମ୍ଭେ ଯେ ମୋହର ବିଶ୍ୱାସ ।୧୯-୨୦

ମୋହର କରେ ଗିରି ଥିବ
ତୁମ୍ଭ ଉପରେ ନ ପଡ଼ିବ
ପୃଷ୍ଠହୁଁ ଉଶ୍ୱାସଟି ମୋତେ
ତୁମ୍ଭେ ନ ଯାଅ ଅପରତେ
ତୁମ୍ଭର ହିତେ ଗିରିବର
ଦେଖ ତୋଳିଲି ବାମକର
ତୁମ୍ଭର ମଲେ ହତ୍ୟା ମୋର
କହନ୍ତି ପ୍ରଭୁ ଦାମୋଦର
ମୋହର ବୋଲେ ଯଜ୍ଞ ଭାଙ୍ଗି
ଏବେ ହୋଇଲ ଇନ୍ଦ୍ର ରଙ୍ଗି
ଆଜ ମୁଁ ରଖିବି ତୁମ୍ଭଙ୍କୁ
କପାଇଁ ଡ଼ର ବାସବକୁ
ମନେ ନ କର କିଛି ତ୍ରାସ
ନିର୍ଭୟ ଚିତ୍ତେ ସର୍ବେ ପଶ । ୨୧
କୃଷ୍ଣବଚନ ସୁଖହୋଇ
ପଶିଲେ ପର୍ବତର ତଳେ
ଯାହାର ଘରେ ଯେତେ ଦ୍ରବ୍ୟ
ପଶିଲେ ସଙ୍ଗେ ଘେନ ସର୍ବ
ଗିରିଗର୍ଭରେ ଗଲେ ପଶି
ଗୋବିନ୍ଦ ବଚନେ ବିଶ୍ୱାସୀ
ଦାସବତ୍ସଳ ବନମାଳୀ
ପୃଷ୍ଠର ପ୍ରାୟେ ଗିରି ତୋଳି
ବାମ ଅଙ୍ଗୁଳି ଅଗ୍ରଭାଗେ
ଗୋବିନ୍ଦ ବସାଇଲେ ରଙ୍ଗେ
ଅଙ୍ଗୁଳି ଅଗ୍ରେ ଗିରି ଦେଖି
ଭୟେ ବୁଜିଲେ ସର୍ବେ ଆଖି
ଗୋପୀଏ ଗୋରୁଙ୍କର ମେଳେ
ଅନାଇଁ କାନ୍ଦନ୍ତି ବିକଳେ
ବୋଲନ୍ତି ଏବେ ନାଶ ଗଲୁଁ
ଗିରି ଗର୍ଭରେ ପ୍ରାଣ ଦେଲୁଁ
ସାତବରଷ ପୁଅ କରେ
ପର୍ବତ ଅଙ୍ଗୁଳି ଉପରେ
ଏ କେତେ ବେଳ ଧରି ଥିବ
ପବନ ବହିଲେ ପଡ଼ିବ
କୋପ କରିଛି ଇନ୍ଦ୍ର ରାଜା
ଆମ୍ଭେ ନ ଦେଲୁଁ ବଳି ପୂଜା
ନନ୍ଦର ସୁତ ଆମ୍ଭ କାଳ
ତା ବୋଲେ ନାଶିଲୁଁ ସକଳ
ଏମନ୍ତେ ପର୍ବତକୁ ଚାହିଁ
କୃଷ୍ଣର ଅଙ୍ଗୁଳିକି ଧ୍ୟାଇ
ସମସ୍ତେ ଚକ୍ଷୁ ଏକମେଳେ
ଥୋଇଲେ କୃଷ୍ଣକର ସ୍ଥଳେ
କ୍ଷୁଧା ପିପାସେ ନାହିଁ ମନ
ନିମେଷ କଲେ ସାତଦିନ
କୃଷ୍ଣର ମାୟା ଯୋଗବଳେ
ରାତ୍ରି ଦିବସ ନ ଜାଣିଲେ । ୨,୨୩
ଇନ୍ଦ୍ର ଯେ ଶୂନ୍ୟେ ରହିଥିଲା
ସପତ ଦିନ ବରଷିଲା
ପ୍ରଳୟକାରୀ ମେଘମାଳ,
ଫୁଟିଣ ହୋଇଲେ ନିର୍ଜ୍ଜଳ
ପବନ ଚଳି ନ ପାରିଲେ
ଅଳପ ଅଳପ ବହିଲେ
ବିଜୁଳି ମେଳେ ମ୍ଳାନ ହୋଇଲା
ଶବଦ ନିଷ୍ଫଳ ହୋଇଲା
ଶ୍ରମ ପାଇଲା ସୁରପତି
ଜାଣିଲା ନିଶ୍ଚେଁ ଶିରୀପତି
ଇନ୍ଦ୍ର ର କରେ ଶସ୍ତ୍ର ନାହିଁ
ବୋଲଇ ମେଘକୁ ଅନାଇ
ଆଉ କି ଗର୍ବ ଅଛି ମୋର
ଗିରି ତୋଳିଲେ ଦାମୋଦର

ରଖିଲେ ଗୋପପୁର ନିଶ୍ଚେ
ଆସ ହୋ ଯିବା ନିଜପୁରେ
ଏମନ୍ତ ବୋଲି ବାହୁଡ଼ିଲେ
ନିଜ ଭୁବନେ ବିଜେ କଲେ । ୨୪
କୃଷ୍ଣ ଯେ ଥିଲେ ଗିରି ତୋଳି
ଜାଣିଲେ ମେଘେ ଗଲେ ଚଳି
ବୋଲନ୍ତି ଗୋପାଳଙ୍କୁ ଗୁହାଁରି
ବାହାର ହୁଅ ବେଗ ହୋଇ
ଗଗନ ନିର୍ମଳ ଦିଶିଲା
ରବିକିରଣ ପ୍ରକାଶିଲା
ସକଳ ଜଳ ନଦୀମାର୍ଗେ
ପଶିଲେ ସମୁଦ୍ରର ଗର୍ଭେ
ପବନ ବହିଲା ଉଶ୍ୱାସ
ଦିଶିଲା ବନ ଦିଗ ଦେଶ
ଏବେ ବାହାର ହୁଅ ବେଗେ
ନିର୍ମଳ ବନ ଭୂମି ଭାଗେ
ପର୍ବତ ଧରି ନ ପାରଇ
ପଡ଼ିଲେ ମୋର ଦୋଷନାହିଁ । ୨୫,୨୬
ଶୁଣି ଗୋପାଳେ ଥରହର
ବାହାର ହୋଇଲେ ସଧୀର
ଯେ ଯାହା ଧନ ଦ୍ରବ୍ୟ ଲଇ
ବୃଦ୍ଧ ବାଳକ ବସ୍ତ୍ରା ଗାଈ
ବାହାର ହୋଇଲେ ସକଳେ
କୃଷ୍ଣ ଗୁହାଁରିଲେ ଗିରିତଳେ
ଦେଖିଲେ ଗର୍ଭେ କେହି ନାହିଁ
ଗୋପୀ ଗୋପାଳ ବସ୍ତ୍ରା ଗାଈ
ପରମାନନ୍ଦ ତୋଷ ମନେ
ଗିରି ସ୍ଥାପିଲେ ଯଥାସ୍ଥାନେ । ୨୭,୨୮

ଦେଖନ୍ତି ସର୍ବ ଦେବତାଏ
ଶୂନ୍ୟେ କରନ୍ତି ଜୟେ ଜୟେ
ସ୍ଥାନ ନିବେଶି ମହାଗିରି
ଗୋପେ ମିଳିଲେ ନରହରି
କୃଷ୍ଣଙ୍କୁ ଦେଖି ଗୋପବାଳେ
ଧରନ୍ତି ଜଣେ ଜଣେ କୋଳେ
ଦଧି ଅକ୍ଷତ ଜଳ ଘେନି
କୃଷ୍ଣଙ୍କୁ ସିଞ୍ଚନ୍ତି କାମିନୀ
ନନ୍ଦ ରୋହିଣୀ ଯଶୋବନ୍ତୀ
କୃଷ୍ଣଙ୍କୁ କୋଳ ଯେ କରନ୍ତି
ଆଶିଷ କର୍ଲେ ସ୍ନେହଭରେ
ଗୋରଜଲେପି କଳେବରେ । ୨୯,୩୦
ଆକାଶେ ଥାଇ ଦେବନାରୀ
ସିଦ୍ଧ ଚାରଣେ ସ୍ତୁତି କରି
ଦୁନ୍ଦୁଭି ବାଦ୍ୟ ଗୀତ ନାଦେ
ଗନ୍ଧର୍ବେ ମଙ୍ଗଳ ଶବ୍ଦେ
ପୁଷ୍ପ ବରଷି ସ୍ତୁତି କରି
ରଙ୍ଗେ ନାଚନ୍ତି ଅପସରୀ । ୩୧,୩୨
ଦିନକୁ ଦିନ ଅତିରସ
ଗୋକୁଳେ ରାମ ହୃଷୀକେଶ
କୃଷ୍ଣମହିମା ଦେଖି ଜନେ
ଆନନ୍ଦ ଗୋପାଳଙ୍କ ମନେ
ହରିମହିମା ହୃଦେ ଧରି
ଦିନ ବଞ୍ଚନ୍ତି ଗୋପନାରୀ । ୩୩
ସେ ଗିରିଧାରୀଙ୍କର ପଦେ
ମୋ ମନ ରମୁ ଅପ୍ରମାଦେ
ଚରଣ କମଳେ ମୋ ଆଶ
କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଗୋବର୍ଦ୍ଧନ ଗିରି ଧାରଣଂ
ନାମ ଷଡ଼ବିଂଶୋଽଧ୍ୟାୟଃ ॥ ୨୬ ॥

—ଃ * ଃ—

# ସପ୍ତବିଂଶ ଅଧ୍ୟାୟ

( ମୂଳାନୁସାରେ ୨୬ଶ ଅଧ୍ୟାୟ )

ଷଡ଼ବିଂଶେ ବସିତାନ୍ ଗୋପାନ୍ କୃଷ୍ଣସ୍ୟାଦ୍ଭୁତକର୍ମଭିଃ ।
ନନ୍ଦୋଗର୍ଗୋକ୍ତମାଶ୍ରାବ୍ୟ ତଦୈଶ୍ୱର୍ଯ୍ୟବର୍ଣ୍ଣୟତ୍ । ୦ ।

ଶ୍ରୀକୃଷ୍ଣ କର୍ମରେ ଚକିତ । ଗୋପୀଙ୍କୁ ନନ୍ଦ ଗର୍ଗଉକ୍ତ ॥
ଶୁଣାଇ କହେ କୃଷ୍ଣ ଗୁଣ । ସପ୍ତବିଂଶରେ ଏ ବର୍ଣ୍ଣନ ॥

ଶ୍ରୀ ଶୁକ ଉବାଚ

ଶୁଣ ପାଣ୍ଡବ ଚୂଡ଼ାମଣି !
ନନ୍ଦନନ୍ଦନ କର୍ମବାଣୀ
ଗୋପୀ ଗୋପାଳେ ରୁଣ୍ଡ ହୋଇ
କହନ୍ତି ନନ୍ଦଙ୍କୁ ବସାଇ । ୧
ମନୁଷ୍ୟ ନୁହେ ତୋ ବାଳକ
ଏହାର କର୍ମମାନ ଦେଖ
କେଉଁ ଦେବତା ଗୋପ୍ୟ ହୋଇ
ଜନ୍ମ ହୋଇଲା ତୋହ ବହ୍ନି
ଆମ୍ଭର ବଂଶେ ଜାତ ହୋଇ
ଏମନ୍ତ ଦେଖିଲୁ ତ ନାହିଁ । ୨
ସାତବରଷ ତୋର ବଳା
ହସ୍ତକେ ଗିରିଏ ତୋଳିଲା
ନଳିନୀ ଯେହ୍ନେ ଗଜ କରେ
ପର୍ବତ ତୋଳିଲା ସଧୀରେ । ୩
ତିନି ଦିନର ତୋର ସୁତ
ପୂତନାପ୍ରାଣ କଲା ହତ
ଅନୁଡ଼ ଉଠିଆସି ଦିନ
ଶକଟ ଭାଙ୍ଗିକଲା ଚୂର୍ଣ୍ଣି । ୪,୫

ଦିନେକ ଦ୍ୱାରେ ବସିଥିଲା
ତୃଣାବର୍ତ୍ତ ଯେ ହରି ନେଲା
ଗଗନେ ନେଇ ତା ମାଇଲା
ଶିଳାରେ ପଡ଼ି ଉବୁରିଲା । ୬
ଦଧିମନ୍ଥନ ବେଳେ ଧରି
ଡୋଳେ ବାନ୍ଧିଲା ତୋର ନାରୀ
ବାଳକ ମେଳେ ପଶିଗଲା
ଯାମଳା ଅର୍ଜ୍ଜୁନ ଭାଙ୍ଗିଲା । ୭
ବତ୍ସା ଦଇତ ବାଳକାଳେ
ମାଇଲା କୁମାରଙ୍କ ମେଳେ
ତାହାଙ୍କୁ ବକ ଗିଳିଥିଲା
ବେନି ଫାଳ କରି ଚିରିଲା
ଧେନୁକା ତାଳବନେ ନାଶି
ଫଳ ଆଣିଲା ମନ ତୋଷି । ୮,୧୦
ପ୍ରଲମ୍ବା ଯୁଦ୍ଧେ ମରାଇଲା
ଗୋକୁଳ ଅନଳୁଁ ତାରିଲା । ୧୧
ଜାଣୁ ନା କାଳିୟର କଥା
କେ ତାରେ ଅଛି ସାମରଥା
ହେଲେ ଗଞ୍ଜିଲା ତାର ବଳ
ଅମୃତ କଲା ବିଷଜଳ । ୧୨

ଲୋଚନେ ତାର ମୁଖ ଚୁମ୍ବି
ଗୋପୀ ଗୋପାଳ ହେଉଁ ବାଇ
ଆମ୍ଭର ବଡଇ ମୁହାଁସ
ବାଳକେ ନ ଛାଡ଼ନ୍ତ ପାଶ । ୧୩
ଏବେ ଟେକିଲା ଗିରିବର
ସାତବରଷି ତୋ କୁମର
ଆମ୍ଭେ ପାଇଲୁଁ ମନେ ଶଙ୍କା
ନନ୍ଦ ତୁ ଗୋପେ ଯାଅ ଏକା
କି ଏ ଅସୁର ତୋର କୋଳେ
ଆମ୍ଭଙ୍କୁ ଗିଳିବ ସେ ହେଲେ
ପଳାଇ ଯିବୁଁ ତୋର ପୁତ୍ର
ତୋର ପୁତ୍ରକୁ ଆମ୍ଭେ ଡ଼ରୁ । ୧୪
ନନ୍ଦ ବୋଇଲା ତାହା ଶୁଣି
ଗୋପ ବଚନ ପରମାଣି
ଶୁଣ ସକଳ ଗୋପଜନ
ଗର୍ଗ ଆଚାର୍ଯ୍ୟଙ୍କ ବଚନ
ପୁତ୍ରଙ୍କ ନାମକର୍ମ-କାଳେ
ମୋତେ କହିଲେ ଏକମେଳେ
ବୋଇଲେ "ତୋର ପୁତ୍ରକଥା—
ଜାଣଇଁ ଜନ୍ମର ବାରତା
ଏ ଚାରିଯୁଗେ ଚାରିବର୍ଣ୍ଣ
ଶୁକ୍ଳ ଶୋଣିତ ପୀତ ଶ୍ୟାମ । ୧୫,୧୬
ପୂର୍ବେ ଏ ବସୁଦେବ ଘରେ
ଜନ୍ମିଲା ଦେବକୀ ଉଦରେ
ଏହାର ନାମ ବାସୁଦେବ
ବଦନ୍ତି ବୋଲନ୍ତ ସାଧବ । ୧୭
ଏହାର ନାମ ଗୁଣ ଯେତେ
ମୁହିଁ ଜାଣଇ ଯୋଗମତେ । ୧୮
ଗୋକୁଳ ତାରିବ ଏ ଭଲେ
ସୁଖେ ବଞ୍ଚିବା ଏହା ତୁଲେ । ୧୯

ପୂର୍ବେ ସାଧବେ ଦୁଷ୍ଟ ଭୟେ
ତରିଲେ ଏହା ପାଦ ଧ୍ୟାୟେ
ଏହାର ପାଦେ ପ୍ରୀତି କରି
ହେଲେ ତରିଲେ ଭବବାରି । ୨୦
ହେ ନନ୍ଦ ! ଶୁଣ ସାବଧାନ
ମନୁଷ୍ୟ ନୋହେ ତୋ ନନ୍ଦନ
ଦେଖ ଏହାର ବର୍ଣ୍ଣ ଚିହ୍ନ
ପ୍ରତ୍ୟକ୍ଷେ ବିଷ୍ଣୁର ସମାନ"। ୨୧,୨୨
ଏମନ୍ତ କହିଗଲେ ମୁନି
ତାହାଙ୍କ ବାକ୍ୟ ଶିରେ ଘେନି
ମଣିଲି ନାରାୟଣ ପ୍ରାୟ
ତୁମ୍ଭେ ନ କର ମନେ ଭୟ । ୨୩
ଏମନ୍ତ ନନ୍ଦମୁଖଁ ଶୁଣି
ଗର୍ଗବଚନ ମନେ ଗୁଣି
ନନ୍ଦବଚନେ ମନ ଦେଇ
ଶଙ୍କା ଛାଡ଼ିଲେ କୃଷ୍ଣଚାହିଁ
ଆନନ୍ଦେ ଆଲିଙ୍ଗନ କରି
ମାୟାଃ ମୋହିଲେ ନରହରି
ଗୋପାଳେ ହୋଇଲେ ହରଷ
କୃଷ୍ଣଙ୍କ ଚାହିଁ ହସ ହସ
ଆନନ୍ଦେ ଶିରେ କର ଦେଇ
ବୋଲନ୍ତ କୃଷ୍ଣ ହାହି ହାହି
ବାସବ ହାସୁ ଯେ ତାରିଲା
ପର୍ବତ କରେ ଉପାଡ଼ିଲା
ସେ ଆମ୍ଭ ରଖୁ ସର୍ବକାଳେ
ଗୋରୁ ଗୋପାଳ ଏକମେଳେ
ଶରଣ ଗଲୁଁ ତାର ପାଦେ
ଗୋପାଳେ ବୋଲନ୍ତ ଆନନ୍ଦେ ।୨୪,୨୫
କହଇ ବିପ୍ର ଜଗନ୍ନାଥ
ଗୀତ ପ୍ରବନ୍ଧେ ଭାଗବତ

ହରିଚରିତ ସୁଧାବାରି
ଶ୍ରୁତି ଯୁଗଳେ ପାନ କରି
ଆନନ୍ଦ ମନେ କର ଲୟ
ହେଲେ ତାରିବେ ଦେବରାୟ
ସୁଜନ ଜନେ ଏଣେ ରମ୍ୟ
ହେଲେ ଖଣ୍ଡିବ ମୋହପାଶ
ହରିଚରଣ ଆଶ୍ରେକର
ଆଉ ନ ଥିବ ଦୁଃଖ ଘୋର ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଗୋପଶଙ୍କା ଖଣ୍ଡନଂ ନାମ ସପ୍ତବିଂଶୋଽଧ୍ୟାୟଃ । ୨୭ ।



## ଅଷ୍ଟାବିଂଶ ଅଧ୍ୟାୟ

( ମୂଳାନୁସାରେ ୨୭ଶ ଅଧ୍ୟାୟ )

ସପ୍ତବିଂଶେ ତଦାଲକ୍ଷ୍ୟ କୃଷ୍ଣସ୍ୟ ପ୍ରାଭବଂ ପରଂ
ବର୍ଣ୍ଣ୍ୟତେ ସୁରଖନ୍ଦ୍ରାଭ୍ୟାଂ ଅଭିଷେକମହୋତ୍ସବଃ । ୦ ।

ଅଷ୍ଟବିଂଶରେ କୃଷ୍ଣ ବଳ । ଦେଖି ସୁରଭି ସୁନାଶିର ॥
ତୁମ୍ଭଙ୍କୁ ଅଭିଷେକ କଲେ । ଗୋବିନ୍ଦ ନାମ ଦେଇ ଗଲେ ॥

ଶ୍ରୀ ଶୁକ ଉବାଚ

ବ୍ୟାସନନ୍ଦନ ହରଷିତ
ବୋଲନ୍ତି ଶୁଣ ନରନାଥ
କୃଷ୍ଣଙ୍କୁ କରି ଅପରାଧ
ଇନ୍ଦ୍ର ପାଇଲା ମନେ ଖେଦ
ଭାଳଇ ମନର ବିଷାଦେ
ଦ୍ରୋହ ଯେ କଲି ପଦ୍ମପାଦେ
ଅଜ୍ଞାନେ ହୋଇଲି ମୁଁ ବାଇ
ଆଉ ସମ୍ପଦ ମୋର କାହିଁ
ନିଶ୍ଚୟ ହୋଇଲା ମରଣ
କାହାର ପଶିବି ଶରଣ
ଯାହାର ମହିମା ଅନନ୍ତ
ଉଦରେ ଅଛଇ ଜଗତ
ତାରେ ବଇରିପଣ ହୋଇ
କେ ଅବା ରହେ ଦେହ ବହି
କି ବୁଦ୍ଧି କରିବଇଁ ଆଜ ?
ଭୟେ କମ୍ପଇ ସୁରରାଜ
ସୁରଭି ଇନ୍ଦ୍ରପୁରେ ଥିଲା
ଇନ୍ଦ୍ରର ବେଦନ ଶୁଣିଲା
ବୋଲଇ ଇନ୍ଦ୍ର ମୁଖ ଚାହିଁ
ବେଦନ କରୁ କାହିଁପାଇଁ ?
କୃଷ୍ଣରେ କଲୁ ଅପରାଧ
ଯେ ତୋତେ ଦେଇଛନ୍ତି ସମ୍ପଦ

ଅଜ୍ଞାନମତ୍ତ ବୁଦ୍ଧି ହୋଇଲେ
ଦ୍ରୋହ ଯେ କଲୁ ପାଦତଳେ
ମହିମା ନ ଜାଣୁ ତାହାର
ଅଶେଷ ବ୍ରହ୍ମାଣ୍ଡ ଠାକୁର
ଦାସବତ୍ସଳ ପାଦ ଯୁଗେ
ଶରଣ ପଶ ଯାଇଁ ବେଗେ
ତୋର ରକ୍ଷକ କେହି ନାହିଁ
ବିଶ୍ୱ ସଂସାରେ ଦେହ ବହି
ଶୋକ ସାଗର ନେବଗ୍ରାୟେ !
ଶରଣ ପଶ ଯାଇ ପାୟେ
ମୋହର ପଛେ ଯାଅ ତୁହି
କୃଷ୍ଣଙ୍କୁ ଭେଟାଇବି ନେଇ
ସ୍ତୁତି କରିବ ତୋର ପାଇଁ
ତାହାର ନାମ ଭାବଗ୍ରାହୀ
ଚରଣେ ପଶ ଯା ଶରଣ
ତୋତେ ରଖିବେ ନାରାୟଣ
ଏମନ୍ତ କହି ଲେକମାତ
ଘେନ ଚଳିଲେ ସୁରନାଥ
ମିଳିଲେ ବୃନ୍ଦାବନେ ଯାଇ
ଜାଣିଲେ ପ୍ରଭୁ ଭାବଗ୍ରାହୀ
ଗାଈ ଚରାଉ ଥିଲେ ବନେ
ଗୋପାଳମେଳେ ବେଣୁସ୍ୱନେ
ଘୋର ଗହନେ ପଶିଗଲେ
ଗୋପ ବାଳକେ ନ ଜାଣିଲେ
ଇନ୍ଦ୍ର ସୁରଭି ସନ୍ନିଧାନେ
କୃଷ୍ଣ ମିଳିଲେ ବିଦ୍ୟମାନେ
ସୁରଭି ଦେଖି ତୋଷ ଚିତ୍ତ
ନମିଲି କୃଷ୍ଣ ପାଦଗତ
ସ୍ତୁତି କରଇ କୃଷ୍ଣେ ଗୃହି
ନମଇଁ ପାଦେ ଶିର ଦେଇ

ହେ ନାଥ ! ଶୁଣ ନରହରି
ଇନ୍ଦ୍ର ଯେ ତୋହିତ ମାୟା କରି
ଘୋର ବରଷଣ ବିବାଦେ
ଦ୍ରୋହ ଯେ କଲା ପଦ୍ମପାଦେ
ସମ୍ପଦ ଦେଇଅଛୁ ତାରେ
ଏବେ ଶରଣ ତୋ ପୟରେ
ଲୁଚି ଯେ ଅଛି ମୋର ପଛେ
ହେ ନାଥ ! ଦେଖ ତୁ ପ୍ରତ୍ୟକ୍ଷେ । ୧
ଶୁଣି ଗୃହିଁଲେ ଗିରିଧର
ବାସବ ପଡ଼ିଲା ପୟର
ଭୟେ କମ୍ପଇ ତାର ଦେହ
ବଦନୁ ବାକ୍ୟ ନ ସ୍ଫୁରଇ
ପୁଣି ଉଠିଲା ଭୟ ଚିତ୍ତେ
କର ଅଞ୍ଜଳି ଦେଇ ମାଥେ
ଶିର ନବେଶି ପଦ୍ମପାଦେ
ବୋଲଇ ଶୋକ ଗଦଗଦେ ! ୨,୩

ଇନ୍ଦ୍ର ଉବାଚ

ହେ ନାଥ ! ଆଦ୍ୟ ନିରଞ୍ଜନ
ଜ୍ୟୋତିପ୍ରକାଶ ମହାଶୂନ୍ୟ
ଗୁଣେ ପ୍ରକାଶ ତୋର ନାହିଁ
ଭକତ ହିତେ ବହୁ ଦେହି
ମାୟାମୋହିତ ଭକତଲେ
ତୋର ବିହାର ଯୋଗବଳେ । ୪
ଲୋଭର ମୂଳେ ଷଡ଼ ଅରି
ତୋହର ମହିମା ଆବୋରି
ନରତେ ଭ୍ରମାନ୍ତି ଶୟଳେ
ତୋହର ମାୟାଚକ୍ରବଳେ
ଜଗତ ହୋଏ ଆତଯାତ
ତୋହର ମାୟାରେ ଅନନ୍ତ !

ତୁମ୍ଭେ ଯେ ମାୟାକୁ ଆଦରି
ଶରୀର ବହୁ ନରହରି
ଦୁଷ୍ଟଙ୍କୁ ଦଣ୍ଡିବାର ଆଶେ
ସାଧଙ୍କୁ ରଖିବ ବିଶ୍ୱାସେ । ୫
ଜଗତ ତାତ ମାତ ତୁମ୍ଭେ
ତୁ ଦଣ୍ଡଧର ଭବଗ୍ରାହୀ
ତୋହର ସମ୍ପଦ ଆଦୋର
ଯେ ବୋଲେ ମୋହର ମୋହର
ତାହାଙ୍କ ଗର୍ବ ନାଶିବାରେ
ଜନମ ହେଉ ଏ ସଂସାରେ । ୬
ମୋହର ପ୍ରାୟେ ଜ୍ଞାନ ହାର
ଯେ ତୋର ସମ୍ପଦ ଆଦୋର
ଗର୍ବ ବହନ୍ତି ଦୁଷ୍ଟ ଚଯ୍ୟେ
ତାହାଙ୍କୁ ଦଣ୍ଡ ତୁ ଉଚିତେ
ଗର୍ବ ଗଞ୍ଜନ ତୋର ଦେଖି
ଭୟେ ମୁଦ୍ରିତ ହେବ ଆଖି
ତକ୍ଷଣେ ଗର୍ବ ଦୂର କରି
ତୋହର ମହିମା ସୁମରି
ତୋତେ ଭଜନ୍ତି ସାଧୁ ଚଯ୍ୟେ
ଖଳନାଶନ ଦେଖି ତୋତେ । ୭
ଏବେ ମୁଁ କଲି ଅପରାଧ
ହେ ନାଥ ! ରଖ ପଦ୍ମପାଦ !
ଏ ଅପରାଧ କ୍ଷମାକରି
ହେ ନାଥ ! ଶରଣ ତୋହର
ଅଜ୍ଞାନ ମତେ ଭୋଗ ପାଇ
ହେଳ ହୋଇଲି ଭବଗ୍ରାହୀ । ୮
ଧରା ଦବାରେ ତୋର ଜାତ
ତୋହରେ ସମ୍ଭଲ ଜଗତ
ଅବନୀଭର ନାଶ କରି
ସାଧୁଙ୍କୁ ରଖୁ ନରହରି । ୯ ।

ନମଇଁ ପରମ ମଙ୍ଗଳ
ପରମ ଆତ୍ମା ଆଦିମୂଳ
ନମଇଁ ବସୁଦେବ ସୁତ
ଯାଦବ ବଂଶ ଦଇବତ । ୧୦
ଶୁଦ୍ଧ ମୂରତି ଦିବ୍ୟଜ୍ଞାନ
ଇଚ୍ଛାଏ ହେଉ ନାନା ବର୍ଣ୍ଣ
ସକଳ ଜୀବ ଆଦି ପିତା
ନମଇଁ କଇବଲ୍ୟ ଦାତା । ୧୧
ତୋ ଦେଲୁ ଇନ୍ଦ୍ରପଣ ମୋତେ
ଦ୍ରୋହ ଚିନ୍ତିଲି ମୁହିଁ ତୋତେ
ଅଳପ ଲୋକ ମୁଁ ସ୍ୱଭାବେ
ମୋତେ ଥୋଇଲେ ଇନ୍ଦ୍ରପଦେ
ମୁଁ ସ୍ଥିର ନୁହଇ ଭଜନ
ତୁ କି ନ ଜାଣୁ ଭଗବାନ
ଅଳପ ଲୋକେ ସୁଖ ଦେଲେ
ଆଦୋର ନ ପାରଇ ଭଲେ
ଏଣୁ ହୋଇଲି ଅପରାଧୀ
ତୁ ନାଥ କରୁଣାବାରିଧି !
ତୋର ଚରଣୁଁ ନାହିଁ ଆନ
ଶରଣ ରଖ ଭଗବାନ । ୧୨,୧୩
ଶୁକ ବୋଲନ୍ତି ଶୁଣ ରାୟେ !
କମ୍ପଇ ବାସବର କାୟେ
ଦାସବତ୍ସଳ ଭବଗ୍ରାହୀ
କହନ୍ତି ଇନ୍ଦ୍ରମୁଖ ଚାହିଁ
ମେଘ ଗମ୍ଭୀର ପ୍ରାୟ ବାଣୀ
ହସି କହନ୍ତି ଚକ୍ରପାଣି । ୧୪
ଶୁଣ ହେ ତ୍ରିଦଶର ନାଥ
ତୋର ଦେଖିଲୁ ଦୁଷ୍ଟଚିତ୍ତ
ମୋର ସମ୍ପଦେ ଅନ୍ଧ ହୋଇ
ମୋତେ ନ ଜାଣୁ ଗର୍ବ ବହି

ତୋତେଟି ଅଛୁ ମୋର ଦୟା
ତେଣୁଟି ଦେଖାଇଲି ମାୟା
ଭାଙ୍ଗିଲି ତୋର ଯଜ୍ଞ କର୍ମ
ତୁ ଯେଣୁ ହେଲୁ ମତ୍ତଭ୍ରମ
ଛାଡ଼ିଲୁ ମୋର ପାଦଚିନ୍ତା
ସମ୍ପଦେ ହୋଇଲୁ ଅଚେତା
ଯେ ମୋ ସମ୍ପଦେ ଅନ୍ଧ ହୋଇ
ଅଜ୍ଞାନେ ମୋତେ ନ ଜାଣଇ
ସେ ଅପରାଧ ଦଣ୍ଡ ପାଇ
ତାହାର ସୁଖଲେଶ ନାହିଁ
ଯାହାକୁ ହୁଅଇ ସଦୟେ
ସମ୍ପଦ ହରଇ ଥୋକାଏ
ପୁଣି ଜାଣଇ ଯେବେ ମୋତେ
ନାମ ଜପଇ ହୃଦଗତେ
ମୋହର ଭାବେ ଯେ ପଶଇ
ଜନ୍ମ ମରଣ ତାର ନାହିଁ । ୧୫,୧୬
ଏବେ ତୁ ନିଜ ଘରେ ଯାଅ
ମୋହର ପାଦେ ଚିତ୍ତ ଦିଅ
ମୋହର ଆଜ୍ଞା ଘେନି ଶିରେ
ଗର୍ବ ନ ଥାଉ ତୋ ଶରୀରେ । ୧୭
ଇନ୍ଦ୍ରକୁ ଦେଖି ତୋଷ ଚିତ୍ତ
ସୁରଭି ନମଇଁ ଅଚ୍ୟୁତ
ଲକ୍ଷ ସନ୍ତାନ ସଙ୍ଗେ ଲଇ
ସ୍ତୁତି କରଇ କୃଷ୍ଣ ଗୁହିଁ । ୧୮
ହେ କୃଷ୍ଣ ! ତୁ ପରମଯୋଗୀ
ବିଶ୍ୱ ସଂସାରେ ବିଶ୍ୱଭୋଗୀ
ତୁ ଆମ୍ଭ ପାଳକ ଗୋପାଳ
ନମସ୍ତେ ପ୍ରଭୁ ଆଦିମୂଳ
ଆମ୍ଭର ଇନ୍ଦ୍ରନାଥ ତୁହି
ତୋ ପାଦୁ ଅନ୍ୟ ଗତି ନାହିଁ । ୧୯,୨୦

ଗୋରୁ ସାଧବ ଦେବଙ୍କର
ତୁ ନାଥ ! ଶରଣସୋଦର
ବ୍ରହ୍ମାବଚନେ ମୁହିଁ ତୋତେ
ପୂଜିବି ଅଭିଷେକ ମତେ
ତୁ ନାଥ ! ଗୋକୁଳର ଇନ୍ଦ୍ର
ନାମ ମୁଁ ଦେବଇ 'ଗୋବିନ୍ଦ' ।୨୧
ତକ୍ଷଣେ ଇନ୍ଦ୍ର ଚଳିଗଲି
ମେଘମାନଙ୍କୁ ଆଜ୍ଞା ଦେଲି
ଅଇରାବତ ଦିଗପାଳେ
ପାରିଜାତକ ଗଙ୍ଗାଜଳେ । ୨୨
ବ୍ରାହ୍ମଣେ ମିଳି ବେଦନାଦେ
କୃଷ୍ଣ ସିଞ୍ଚିଲେ ଇନ୍ଦ୍ରପଦେ
ସୁରଭି କ୍ଷୀର ବରଷିଲି
'ଗୋବିନ୍ଦ' ବୋଲି ନାମଦେଲି । ୨୩
ନାରଦ ଋଷି ବାଦ୍ୟାଧରେ
ତୁମ୍ବୁରୁ ଗୁରଣ କାନ୍ନରେ
ଗୀତ ବିନୋଦେ ନୃତ୍ୟ ରଙ୍ଗେ
ସୁସ୍ୱରେ ବାଦ୍ୟ ନାଦ ସଙ୍ଗେ
ପୁଷ୍ପ ବରଷି ସ୍ତୁତି ଭଣି
ସୁନ୍ଦର ଦିଶଇ ଧରଣୀ
ସୁରଭିପୟେ ଇନ୍ଦ୍ରଜଳେ
ଆନନ୍ଦ ହୋଇଲେ ସକଳେ
ମେଦିନୀ କ୍ଷୀର ନୀର ପାଇ
ବରଷାକାଳ ପ୍ରାୟେ ହୋଇ
ସରସ ହୋଇ ମହୀରୁହେ
ମଧୁ ବରଷିଲେ ଥୋକାଏ
ଶସ୍ୟ ହୋଇଲେ ଅକର୍ଷଣେ
ମଣିଏ ଉପୁଜିଲେ ବଣେ
ଗୋବିନ୍ଦ ନାମ ଶୁଣି କର୍ଣ୍ଣେ
ହିଂସା ଛାଡ଼ିଲେ ପଶୁଗଣେ । ୨୪-୨୭

ଗୋବିନ୍ଦ ଆଜ୍ଞା ଘେନି ଶିରେ
ବେଗେ ମିଳିଲେ ନିଜ ପୁରେ
ସୁରଭି ଗଲା ତୋଷ ହୋଇ
ହୃଦେ ଗୋବିନ୍ଦପାଦ ଧ୍ୟାୟି । ୨୮
ସଜନେ ଗୋବିନ୍ଦର ପାଦେ
ଚିତ୍ତକୁ ମଜ୍ଜାଅ ଆନନ୍ଦେ
ବୋଲଇ ଦାସ ଜଗନ୍ନାଥ
ଗୋବିନ୍ଦ ପାଦେ ଦେଇ ଚିତ୍ତ
ଗୋବିନ୍ଦ ନାମ ଭେଳା କରି
ହେଲେ ତରିବ ଭବବାରି
ସେ ହରି କରୁଣାସାଗର
ନିନ୍ଦ ସ୍ୱଭାବ ନାହିଁ ତାର ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଇନ୍ଦ୍ରସ୍ତୁତି
ନାମ ଅଷ୍ଟାବିଂଶୋଽଧ୍ୟାୟଃ ॥ ୨୮ ॥

---

## ଊନତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୨୮ଶ ଅଧ୍ୟାୟ )

ଅଷ୍ଟାବିଂଶେ ତତୋନନ୍ଦା-ନୟନଂ ବରୁଣାଳୟାତ୍
ବୈକୁଣ୍ଠଦର୍ଶନଂ ଗୃଥ ଗୋପାନାମନୁବର୍ଣ୍ଣ୍ୟତେ । ୦ ।

ବରୁଣପୁରୁ ନନ୍ଦ ଆଣି । ଶ୍ରୀକୃଷ୍ଣ ଗୋପାଳଙ୍କୁ ପୁଣି
ବୈକୁଣ୍ଠପୁର ଦେଖାଇଲେ । ବର୍ଣ୍ଣନ ଊନତ୍ରିଂଶତରେ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ରାଜଋଷି
ନନ୍ଦ ଯେ କଲା ଏକାଦଶୀ
ପୂଜା କରିଲା ଚକ୍ରଧର
ରାତ୍ରେ ହୋଇଲା ଉଜାଗର
ଉଛୁର ପାରଣାର ବେଳା
ଯମୁନା ଗାଧି ଥାଉଁ ଗଲା
ବରୁଣ ରାଜା ତାହା ଜାଣି
ଦୂତ ପେଷିଲା ପରମାଣି
ବୋଇଲା ଆଣ ହୋ ନନ୍ଦଙ୍କୁ
ଏଠାରେ ଦେଖିବା କୃଷ୍ଣଙ୍କୁ
ଆଜ୍ଞା ପ୍ରମାଣେ ଦୂତେ ଗଲେ
କାଳନ୍ଦୀଜଳେ ଲୁଚି ଥିଲେ
ନନ୍ଦ ପଶିଲା ଯାଇଁ ଜଳେ
ବିଷ୍ଣୁ ସୁମରି ସ୍ନାନକାଳେ
ନନ୍ଦଙ୍କୁ ଧରି ବେଗ କରେ
ମିଳିଲେ ବରୁଣନଗରେ
ଦେଖି ବରୁଣ ତୋଷ ହୋଇ
ନନ୍ଦଙ୍କୁ ଆସନେ ବସାଇ

ବୋଲଇ ନସ୍ତରଲ ଆଜ
ଏବେ ଦେଖିବି ଦେବରାଜ । ୧,୨
ନନ୍ଦଙ୍କୁ ନ ଦେଖି ଗୋପାଳେ
କାଳିନ୍ଦୀ ନିକଟେ ମିଳିଲେ
ସ୍ନାନଶଙ୍କୁନ ଦେଖି କୂଳେ
ଖୋଜନ୍ତି ରହି ଜଳସ୍ଥଳେ
ନ ଦେଖି ଅତି ଶୋକଭରେ
କହିଲେ ଗୋବିନ୍ଦ ଛାମୁରେ
ଶୁଣି ଚକିତ ଭବଗ୍ରାହୀ
ବୋଲନ୍ତି ରାମଙ୍କୁ ଅନାଇ
ପିତାଙ୍କୁ ନେଇଛି ବରୁଣ
ପୂଜିବ ମୋହର ଚରଣ
ତୁ ସ୍ୱାମି ! ଥାଅ ନିଜ ପୁରେ
କହି ଚଳିଲେ କୃଷ୍ଣ ଖରେ । ୩
ବରୁଣପୁରେ ଦଇତାରି
ମିଳିଲେ ନିଜ ରୂପ ଧରି
ଦେଖି ସାନନ୍ଦ ଜଳରାଜା
କୃଷ୍ଣଚରଣେ କଲା ପୂଜା
ବିବିଧ ନାନା ଉପହାର
ଜାଣଇ ପୂଜାର ବେଭାର
ପୁଣି ପଡ଼ିଲା କୃଷ୍ଣପାଦେ
ବୋଲଇ ଶୋକ ଗଦଗଦେ
ଆଜ ଜୀବନ ମୋର ଧନ୍ୟ
ଦେଖିଲି ପ୍ରଭୁ ନିରଞ୍ଜନ
ସୁତ କୁଟୁମ୍ବ ଘର ଦ୍ୱାର,
ପବିତ୍ର ହୋଇଲା ମୋହର
ଯାହାର ପାଦରଜ ପାଇ
ଜନ୍ମ ମରଣ ଭୟ ନାହିଁ
ବ୍ରହ୍ମା ଶଙ୍କର ଯାର ନିତ୍ୟେ
ନାମ ଜପନ୍ତି ହୃଦଗତେ
ତୋହର ପାଦେ ଧ୍ୟାନ କରି
ସୁଖେ ତରନ୍ତି ଭବବାରି ୪,୭
ହେ ନାଥ ! ଟିକି ବହି ମୁହିଁ
ତୋହର ପିତାଙ୍କୁ ଅଣାଇ
ତୋତେ ଦେଖିବା ମୋର ସଧ
ହେ ନାଥ ! କଲି ଅପରାଧ
କ୍ଷମା ସାଗର ନରହରି
ଶରଣପଞ୍ଜର ମୁରାରି
ଏମନ୍ତ କହି ଜଳପତି
ନନ୍ଦଙ୍କୁ ଆଣିଲା ତଡ଼ିତି
ବୋଲଇ ଶିରେ ଦେଇ କର
ହେ ନାଥ ! ନିଅ ତୋ ପିଅର

ଶ୍ରୀ ଶୁକ ଉବାଚ

ବରୁଣଭାବ ହୃଦେ ଘେନି
ଦାସବତ୍ସଳ ଅନ୍ତର୍ଯ୍ୟାମୀ
ନନ୍ଦର କରେ ଦେଇ ହସ୍ତ
ଗୋପେ ମିଳିଲେ ଗୋପୀନାଥ
ଗୋପାଳେ ହୋଇଲେ ହରଷ
ଆସି ମିଳିଲେ ନନ୍ଦ ପାଶ
ବୋଲନ୍ତି ବରୁଣ ଯେ ନେଲା
କୃଷ୍ଣଙ୍କୁ ଦେଖି ଛାଡ଼ିଦେଲା
ନୋହିଲେ ମରନ୍ତା ପିଅର
ଭାଗ୍ୟ ହଜିଲା ଗୋପପୁର । ୮,୯
ନନ୍ଦ ଆନନ୍ଦମନ ହୋଇ
ବୋଲଇ ଗୋପାଳଙ୍କୁ ଚାହିଁ
ଦେଖିଲି ବରୁଣଭୁବନ
ନିର୍ମଳ ହୋଇଲା ନୟନ । ୧୦
ଗୋପାଳେ ବୋଲନ୍ତି ତା ଶୁଣି
ନନ୍ଦବଚନ ମନେ ଗୁଣି ।

ତୁ ଭାଗ୍ୟବନ୍ତ ଗୋପଗଣ !
ଯାର କୁମର ଦାମୋଦର
ଆମ୍ଭେ ଦେଖିବୁଁ ତାହା କାହିଁ
ମର୍ତ୍ତ୍ୟ ମାନବଦେହ ବହି
ଆମ୍ଭର ଗତି ତୋ କୁମର
ଗୋକୁଳ ଶରଣ ତାହାର । ୧୧
ଗୋପଙ୍କ ମନ କୃଷ୍ଣ ଜାଣି
ମାୟା ମୋହିଲେ ଚକ୍ରପାଣି
ବୋଲନ୍ତି ଜୀବର ବେଭାର
ଭ୍ରମନ୍ତି ମାୟା ଜଡ଼ ଘୋର
ଆପଣା ଗତି ନ ଜାଣଇ
ନାନା ଯୋନିରେ ଦେହ ବହି
ଗୋପେ ମୋ ସଙ୍ଗେ ଭାବ କଲେ
ଏହାଙ୍କୁ ଦେଖାଇବି ବେଳେ
ତକ୍ଷଣେ ଦେଖାଇଲେ ନେଇ
ବରୁଣପୁର ଭାବଗ୍ରାହୀ । ୧୨-୧୪
ପୁଣି ଦେଖାଇ ନିଜପୁର
ଯେ ବଇକୁଣ୍ଠର ବେଭାର
ଅନନ୍ତ ସତ୍ୟ ଜ୍ଞାନ ଜ୍ୟୋତି
ବ୍ରହ୍ମା ଶଙ୍କର ଯାହା ଚିନ୍ତି
ଗୋପୀ ଗୋପାଳେ ହରି ଦୟା
ମାୟାରେ ଦେଖାଇଲେ ତାହା
ମାୟା ଗୁଡ଼ିଲେ ଭଗବାନ
ଗୋପାଳେ ପାଇଲେ ଚୈତନ
ଶୁଣ ପରୀକ୍ଷ ପୁଣ୍ୟଦେହା !
ଅକ୍ରୂର ଦେଖିବଟି ତାହା ! ୧୫,୧୬
ଚେତନା ପାଇଲେ ଗୋପାଳେ
ଆନନ୍ଦେ କୃଷ୍ଣ କରି କୋଳେ
ହରି ମହିମା ଗୋପେ ଦେଖି
ଆନନ୍ଦେ ନୟନେ ନିରେଖି
ରଙ୍କେତ ନିଜ ପୁରେ ଯାଇଁ
କହନ୍ତି ଗୋପୀଙ୍କି ବସାଇ । ୧୭
ସେ ଗୋପୀ ଗୋପାଳଙ୍କ ପାୟେ
ସ୍ୱଜନେ ମନେ କରି ଲୟେ
କୃଷ୍ଣଚରଣେ ଅଚରତ
ନମଇଁ ଦାସ ଜଗନ୍ନାଥ ।।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ନନ୍ଦମୋକ୍ଷଣଂ
ନାମ ଉନବିଂଶୋଽଧ୍ୟାୟଃ । ୨୯ ।



# ତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୨୯ଶ ଅଧ୍ୟାୟ )

ଊନତ୍ରିଂଶେ ତୁ ରାସାର୍ଥମୁକ୍ତପ୍ରତ୍ୟୁକ୍ତସ୍ୟୋହରେଃ ।
ଗୋପୀଭିରାସସଂରମ୍ଭେ ତସ୍ୟ ତ୍ୱନ୍ତର୍ଦ୍ଧି କୌତୁକଂ ।୦।
ବ୍ରହ୍ମାଦିଜୟସଂରୂଢ଼—ଦର୍ପ କନ୍ଦର୍ପଦର୍ପହା ।
ଜୟତି ଶ୍ରୀପତିର୍ଗୋପୀ-ରାସମଣ୍ଡଳମଣ୍ଡନଃ ।୦।

ଶ୍ରୀକୃଷ୍ଣ ସଙ୍ଗେ ଗୋପୀବୃନ୍ଦେ । ରାସ ଆରମ୍ଭନ୍ତେ ଆନନ୍ଦେ ॥
ତହୁଁ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ । ତିରିଶ ଅଧ୍ୟାୟେ ବର୍ଣ୍ଣନ ।।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ !
କୃଷ୍ଣ ଚରିତ ଭାଗବତ
ଗୋବିନ୍ଦ ବିଚାରନ୍ତି ମନେ
ଆଜ ରମିବା ବୃନ୍ଦାବନେ.
ଷୋଳ ସହସ୍ର ଗୋପନାରୀ
ମୋତେ ବରିଲେ ତପ କରି
ମୁଁ ତାଙ୍କ ପୂରାଇବି ଆଶ
ସେ ମୋର ଭକତ ବିଶ୍ୱାସ
ଅନେକ ଜନ୍ମ ତପ କରି
ଏବେ ହୋଇଲେ ଗୋପନାରୀ
ରମିଣ ଦେବି ନିଜ ପୁରି
ଆଜ ମୁଁ କରିବି ନିସ୍ତାର
ଏବେ ବିଚାରି ବନମାଳି
ଧେନଲେ ବିରହ ମୁରଲି
ସ୍ୱଭାବେ ଶରଦର କାଳ
ପବନ ବହେ ପରିମଳ
ଫୁଟିଲେ ଜଳସ୍ଥଳେ ଫୁଲ
ସୁଗନ୍ଧ ଶୀତଳ ଅମୂଲ୍ୟ । ୧
ଗଗନେ ପ୍ରକାଶିଲା ଶଶୀ
ନିର୍ମଳ ବିରାଜଇ ନିଶୀ
ଚନ୍ଦ୍ର ମଣ୍ଡଳ ଅଖଣ୍ଡିତ
ଦେଖି ଉଷତ ଗୋପୀନାଥ
ଲକ୍ଷ୍ମୀର ମୁଖ ପ୍ରାୟ ଦିଶି
କିରଣେ ଦିଶଦିଗ ତୋଷି
କାଳିନ୍ଦୀକୂଳେ ବ୍ରହ୍ମରାଶି
ବଦମ୍ବତରୁ ମୂଳେ ବସି
ରଜନୀ ଚିରକାଳ କଲେ
ମାୟା ପଟଳ ପ୍ରକାଶିଲେ
ବୋଇଲେ ହୁଅ ବ୍ରହ୍ମନିଶି
ସହସ୍ର ଯୁଗ ଯାହା ଘୋଷି
ତ୍ରିଭଙ୍ଗ ଛନ୍ଦେ ଉଭାହୋଇ
ମୁରଲି ଅଧରେ ଲଗାଇ
ଗୋପିଙ୍କ ନାମ ଧରି ଧୀରେ
ମରଲି ଡକାଇ ସୁସ୍ୱରେ । ୨,୩
ଗୋପୀ ଯେ ଥିଲେ ଗୋପପୁରେ
ନାଦ ଶୁଣିଲେ ଯେଝା ଘରେ

ଦଣ୍ଡେ ଶୁଣିଲେ ସ୍ଥିର କରି
ବେଣୁ ଡାକଇ ନାମ ଧରି
ଶୁଣି ହୋଇଲେ ଛନ୍ନ ଛନ୍ନ
ବ୍ୟାପାରେ ନ ଲାଗିଲା ମନ
କର ଚରଣ ନ ଚଳଇ
ମଦନେ କମ୍ପ ଅଛି ଦେହ
ନାଦେ ମୋହିଲେ ବନମାଳୀ
ଷୋଳସହସ୍ର ଗୋପବାଳୀ
ଏକକୁ ଆରେକ ଲୁଚାଇ
ଧାଇଁଲେ ଅସମ୍ଭାଳ ହୋଇ
ବୋଲନ୍ତି ଏ ପୁଣ ଏ ଜାଣି
ମୋତେ ହୋଇବ ସପତଣୀ
ଆଗେ ମୁଁ ଯିବି ବୃନ୍ଦାବନ
ରମିବି ନନ୍ଦର ନନ୍ଦନ
ଦେଖିବି ନୟନ ପୂରାଇ
ମୋହର ନାମେ ବେଣୁ ବାଇ
କୃଷ୍ଣ ଡାକଇ ରସକାଳେ
ଜଘର କଦମ୍ବର ମୂଳେ
ଜଳକ୍ରୀଡ଼ାର ବେଳେ ଗଲା
ଆମ୍ଭର ବସ୍ତ୍ର ଘେନିକଲା
କଦମ୍ବବୃକ୍ଷେ ନେଇ ଥୋଇ
ମାଗିଲେ ବସ୍ତ୍ର ନ ଦଅନ୍ତି
ଉଲଗ୍ନ ଜଳମଧ୍ୟେ ଥାଇ
ଶୀତେ କମ୍ପଇ ଆମ୍ଭ ଦେହୀ
ବହୁତ ବିନୟ ହୋଇଲୁଁ
ଦନ୍ତରେ ତୃଣ ଧରିଲୁଁ
ବୋଇଲା "ଉଠିଆସ ଜଳୁଁ
ବସ୍ତ୍ର ଯେ ଯାର ନିଅ ଡାଳୁଁ
ଯେ ଯାହା ବସ୍ତ୍ର ଚିହ୍ନି ନିଅ
ଶୀତଳ ଜଳେ ଗୋ ନ ଥାଅ
ତାର ବଚନେ ଲଜ୍ଜା ଗୁଡ଼ି
ଆଣି ପିନ୍ଧିଲୁ ଯେଝା ଶାଢ଼ୀ
ଆମ୍ଭର ଶୁଦ୍ଧମନ ଜାଣି
ହସି ବୋଇଲେ ଚକ୍ରପାଣି
ଦେବତା ପୂଜ ନଘାଷରେ
ମନେ ଯେ ବରିଅଛ ବରେ
ସେ କଥା କରିବଇଁ ମୁହିଁ
ନିୟମ କଲ ବେଣୁ ଛୁଇଁ"
ସେ କଥା ସୁମରିଲେ ଆଜ
ଆମ୍ଭର ଛଡ଼ାଇବେ ଲାଜ
ଏତେ ତନୟ ନନ୍ତ କୋଳେ
କେମନ୍ତେ ଯିବୁଁ ରାସକାଳେ
ନଗଲେ ନ ରହେ ଜୀବନ
କାଳ ହୋଇଲା ବେଣୁସ୍ୱନ । ୪
ଏମନ୍ତେ ହୋଇଲେ ବାହାର
ମଦନେ କମ୍ପଇ ଶରୀର
କେ ଗୋପୀ ଦୁହୁଁଥିଲା ଗାଈ
ବାଛୁରି ବାନ୍ଧି ଛାନ୍ଦ ଦେଇ
ମୁରଲୀ ଶୁଣି କର୍ଣ୍ଣମୂଳେ
ଦୁହିଁଣୀ ପକାଇଲା ତଳେ
ମୁରଲୀଧ୍ୱନି ଶୁଣି ବେଗେ
ଧାଇଁଲା ବୃନ୍ଦାବନ ଲାଗେ
କେ ବସି କାଟୁଥିଲା ସୂତ
ମୁରଲୀ ଶୁଣିଲା ସୁସ୍ୱର
ଡାକଇ ତାର ନାମ ଧରି
ବେଗେ ଧାଇଲା ଗୋପନାରୀ
କେ କରୁଥିଲା ଦଧିଯୋଗ
ଶୁଣି ଧାଇଁଲା ବେଗ ବେଗ
କେ ଦୁଧ ଚୁଲିରେ ବସାଇ
ମୁରଲୀ ଶୁଣି ଗଲା ଧାଇଁ । ୫

କେ କୋଳେ ବାଳକ ବସାଇ
ଦୁଧ ପିଆଉଁ ଗୀତ ଗାଇ
କର୍ଣ୍ଣେ ଶୁଣିଲା ବେଣୁଧ୍ୱନି
ଓ୍ଲକଇ ତାର ନାମ ଘେନି
ବାଳକ ପୁକାଇଲା ତଳେ
ଧାଇଁଲା ମଦନ ବଳକେ
ସ୍ୱାମୀ ଶୟନସ୍ଥାନେ ଥାଇ
କେ ଗୋପୀ ଚରଣ ଚୃପଇ
ମୁରଲୀ ତାର ନାମ ଧରି
ଡାକଇ ଆସ ବେଗ କରି
ପତିଚରଣ ଥୋଇ ତଳେ
ବେଗେ ଧାଇଁଲା କାମଭୋଳେ
କେ ବସି ଭୁଞ୍ଜୁଥିଲା ଅନ୍ନ
କର୍ଣ୍ଣେ ଶୁଣିଲା ବେଣୁସ୍ୱନ
ବୋଲଇ ଆସ ତୁମ୍ଭ ବେଗେ
କୃଷ୍ଣଙ୍କୁ ଦେଖ ବନ ଭାଗେ
ଶୁଣି ଭୋଜନ ଉପେକ୍ଷିଲା
ହସ୍ତ ପଖାଳି ନ ପାରିଲା
ବେଗେ ଧାଇଁଲା ବୃନ୍ଦାବନ
ଯେଣେ ଶୁଭଇ ବେଣୁସ୍ୱନ । ୬
କେ ବସି ଲିପୁଥିଲା ଘର
ମୁରଲୀ ଶୁଣିଲା ସୁସ୍ୱର
ବୋଲଇ ଆସ ଘୋର ବନେ
ହରିଙ୍କି ରମ ବୃନ୍ଦାବନେ
ଶୁଣି ବ୍ୟାପର ଉପେକ୍ଷିଲା
ବେଗେ ସେ ବୃନ୍ଦାବନେ ଗଲା
କେ ବସିଥିଲା ନିଜ ଘରେ
କଜ୍ଜଳପାତ୍ର ଘେନି କରେ
ଏକ ଲୋଚନେ ରଞ୍ଜି ଥିଲା
ତା ନାମେ ମୁରଲୀ ଡାକିଲା

ଧାମଇଁ ଅସମ୍ଭାଳ ହୋଇ
କଜ୍ଜଳପାତ୍ର କରେ ଲଇ
କେ ଗୋପୀ ବସ୍ତ୍ର ତଳେ ଥୋଇ
କୁଙ୍କୁମ ଶରୀରେ ଲେପଇ
କର୍ଣ୍ଣେ ଶୁଣିଲା ବେଣୁଧ୍ୱନି
ଉଠିଲା କରେ ବସ୍ତ୍ର ଘେନି
ଜ୍ଞାନ ହରିଲା କାମଭୋଳେ
ପିନ୍ଧିଲା କନ୍ଧରୁ ଅଞ୍ଚଳେ
କେ ଗୋପୀ କୃଷ୍ଣନାମ ଧରି
ଗୃହବ୍ୟାପାର ଗୃହେ କରି
ଶୁଣିଲା କୃଷ୍ଣ ବେଣୁ ନାଦ
ମଦନବାଣେ ତନୁ ଖେଦ
ଏମନ୍ତେ କହିବଇଁ କେତେ
ଷୋଳସହସ୍ର ଯେଝାମତେ । ୭
କାହାର ସ୍ୱାମୀ ବଳବନ୍ତ
ଆଗରେ ଉଗାଳିଲେ ପଥ
କାହାର ପୁତ୍ର ଗୋଡ଼ାଇଲା
ଶ୍ୱଶୁର ଖଡ଼ୁତା ମଉଳା
ଭାଇ ଭଣଜା ଇଷ୍ଟ ମିତ୍ର
ଆଗରେ ଉଗାଳିଲେ ପଥ
ବୋଲନ୍ତି ଗୋପୀଙ୍କି ଅନାଇଁ
ଏ କଥା ଉଚିତ ନୁହଇଁ
ରଜନୀ କାଳେ ଯାଅ ବନ
ଲଜ୍ଜା କି ଛାଡ଼ିଲ ବଦନ ?
ଶୁଣି ବୋଲନ୍ତି ଗୋପବାଳା ।
ବନେ ବିଜୟେ ବନମାଳୀ
ଶୁଣ ତ ଶୁଭୁଅଛି ନାଦ
ମୁରଲୀ ବଢ଼ଇ ଆନନ୍ଦ
କ୍ଷଣେ ମୁରଲୀନାଦ ଶୁଣି
ଆମ୍ଭେ ଆସିବୁ ଏହିକ୍ଷଣି

ଦାସବତ୍ସଳ ଭଗବାନ
ମୋହିଲେ ଗୋପାଳଙ୍କ ମନ
ଭୁଣ୍ଡରୁ ନଇଲା ଉତ୍ତର
ବାହୁଡ଼ି ଗଲେ ଯେଝା ଘର । ୮
ଏକ ଗୋପୀକା କ୍ଷୀଣ ହୋଇ
ଗହଳେ ନ ପାରିଲା ଯାଇ
ତାହାର ସ୍ୱାମୀ କର ଧରି
ଘରେ ଅଣିଲା ନିଜ ନାରୀ
ଗମ୍ଭୀର ଭିତରେ ବାନ୍ଧିଲା
ଅନେକ ମାଡ଼ନ୍ତି ମାଇଲା
ଦ୍ୱାରେ କବାଟ ଗଲା କିଳି
ବିକଳେ କାନ୍ଦଇ ଗୁଆଳୀ
ମୁରଲୀ ତାର ନାମ ଧରି
ଡ଼ାକଇ ଆସ ବେଗ କରି
ସେ ଗୋପୀ ବନ୍ଧନରେ ପଡ଼ି
କାନ୍ଦଇ ତ୍ରୁଟିନ୍ତେ ମୁଣ୍ଡ କୋଡ଼ି
କୃଷ୍ଣର ଦେହେ ଦେଇ ମନ
କ୍ଷଣ କ୍ଷଣକେ ଅଚେତନ
ସହି ନ ପାରି ତାପଭାର
ବେନି ଲୋଚନେ କଲା ସ୍ଥିର
ଧ୍ୟାନେ ଦେଖିଲା ଭଗବାନ
ନିର୍ଭୟେ କଲା ଆଲିଙ୍ଗନ
ଡ଼ାକିଲା "କୃଷ୍ଣ ! ରାହି ରାହି"
ପ୍ରାଣ ଛାଡ଼ିଲା ଚୁମ୍ବ ଦେଇ
ସହି ନ ପାରି ତାପଭରେ
ପଶିଲା ଗୋବିନ୍ଦ ଶରୀରେ । ୯-୧୧
ଶୁଣି ପରୀକ୍ଷ ଦଣ୍ଡଧାରୀ
ମୁନିଚରଣ ତଳେ ପଡ଼ି
ବୋଲଇ ହେଲି କୃତକୃତ୍ୟ
ଶୁଣି ଚରିତ୍ର ଭାଗବତ

ହେ ମୁନି ! ହୋଇଲି ଚକିତ
ତୁମ୍ଭେ କହିଲ ବିପରୀତ
ପର ପୁରୁଷେ ମନ ଦେଇ
ଯେ ନାରୀ ଏକାନ୍ତେ ରମଇ
ବିଟପବାଦ ହୋଇ ତାରେ
ନରକେ ପଡ଼ଇ ନିର୍ଭରେ
ଏ କଥା ଗୋବିନ୍ଦେ ପଶିଲା ?
ମୋତେତ ସନ୍ଦେହ ଲାଗିଲା
ସ୍ୱଭାବେ ସ୍ତିରୀ ଜନ୍ମ ହୋଇ
ଧର୍ମ ଅଧର୍ମ ନ ଜାଣଇ
ପର ପୁରୁଷେ ମନ ଦେଲା
ସେ କଥା ଗୋବିନ୍ଦେ ପଶିଲା ? ।୧୨
ଶୁଣି ହସିଲେ ମୁନିବର
ବୋଲନ୍ତି ଶୁଣ ଦଣ୍ଡଧର
ପୂର୍ବେ ମୁଁ କହିଅଛୁ ତୋତେ
ପୁରାଣ ଶିରୀ ଭାଗବତେ
କୃଷ୍ଣଙ୍କୁ କରି ଶତ୍ରୁ ବଳ
ମୋକ୍ଷ ହୋଇଲା ଶିଶୁପାଳ
ତାହାଙ୍କୁ ପ୍ରିୟପଣେ ସେବି
କଥା ନୋହିବେ ମୋକ୍ଷଭାଗୀ । ୧୩
ଭକତ ତାରିବାର ଆଶେ
ବ୍ରହ୍ମ ପ୍ରକାଶି ଅଛି ଅଂଶେ
ନିର୍ଗୁଣ ହୋଇ ଗୁଣବନ୍ତ
ଦାସବତ୍ସଳ ଗୋପୀନାଥ । ୧୪
ତାହାର ନାହିଁ କାମ କ୍ରୋଧ
ଏମନ୍ତ ସ୍ୱଭାବ ସୁହୃଦ
ଯାହାର ମନ ହୋଏ ଲୟେ
ସେ ପ୍ରାଣୀ ପଶେ କୃଷ୍ଣଦେହେ । ୧୫
ଏଣେ ତୁ ସନ୍ଦେହ ନ କର
ମହାମହିମା ଯୋଗେଶ୍ୱର

ଏଣେ ନ କର ଖେଦ ଚିତ୍ତ
କହଇ ଶୁଣ ଭାଗବତ । ୧୬
ଗୋପୀ ଯେ ଗଲେ ରାତ୍ରିକାଳେ
ମିଳିଲେ କଦମ୍ବର ମୂଳେ
ଷୋଳସହସ୍ର ଗୋପବାଳୀ
ଦେଖିଲେ ପ୍ରଭୁ ବନମାଳୀ
ନାନା କୁସୁମେ ପରିମଳ
ହୃଦେ ଲମ୍ବାଇ ବନମାଳ
ଗୁଞ୍ଜାରାପାଟି ଚାରୁମୂଳ
ଶ୍ରବଣେ ମକର କୁଣ୍ଡଳ
ନୂପୁର କଙ୍କଣ ବିରାଜେ
ରତ୍ନମେଖଳା କଟି ମାଝେ
ପୀତବସନ ବେଣୁଧର
ନାବଡ଼ ସୁରଙ୍ଗ ଅଧର
କୋଟିଏ କାମ ନୋହେ ସରି
ଦେଖି ଚକିତ ବ୍ରଜନାରୀ
ଅନଳ ଦେଖିଣ ପତଙ୍ଗ
ଯେହ୍ନେ ଧାଆନ୍ତି ଉଦବେଗ
ବେଢିଲେ ଶତେ ପୁର ହୋଇ
କମ୍ପନ୍ତି କୃଷ୍ଣଙ୍କୁ ଅନାଇଁ
ଗୋପୀଙ୍କି ଦେଖି ବନମାଳୀ
ବଦନୁଁ ଥୋଇଲେ ମୁରଲୀ
କୋମଳ ଗମ୍ଭୀର ବଚନ
କହନ୍ତି ପ୍ରଭୁ ଭଗବାନ । ୧୭
ଶୁଣ ଗୋ ବ୍ରଜବଧୂଜନେ !
ତୁମ୍ଭେ ଅଇଲ କିମ୍ପା ବନେ ?
ଗୋପର କହ ଭଲ କଥା
ମୋ ନନ୍ଦ ଯଶୋଦା ବାରତା
ଗୋପେ କି ଆପଦ ପଡ଼ିଲା ?
ମୋତେ ତ ସନ୍ଦେହ ଲାଗିଲା
ଗୋରୁ ଗୋପାଳ ନେଲେ ବାନ୍ଧି
ତୁମ୍ଭେ ଅଇଲ ବନେ କାନ୍ଦି
ସଙ୍ଗ ସମ୍ପଦ କଲେଜୂର
କି ଅବା ମିଳିଲେ ଅସୁର ?
ଏମନ୍ତ ପ୍ରାୟେ ମୁଁ ମଣଇ
କିମ୍ପା ଅଇଲ ବନେ ଧାଇଁ ?
ଭଲେ ଅଇଲ ମୋ ନିକଟେ
ବଣା ନୋହିଲ ବଣବାଟେ ?
ଭାବେ ମୁଁ ବାଉଥିଲି ବେଣୁ
ମୋତେ ଭେଟିଲ ଆସି ତେଣୁ । ୧୮
ରଜନୀ ହେଉଛି ଉଚ୍ଛୁର
ବନ ଗହନ କୁଞ୍ଜ ଘୋର
ବ୍ୟାଘ୍ର ଭଲ୍ଲୁକ ବନଜୀବେ
ତୁମ୍ଭଙ୍କୁ ଦେଖିଲେ ଖାଇବେ
ସ୍ୱଭାବେ ସ୍ତିରୀ ଜନ୍ମ ହୋଇ
ବନେ ତୁମ୍ଭର ଭୟ ନାହିଁ
ନିଶ୍ଚେ ହୋଇବ ଆଜ ନାଶ
ମରଣ କଲଟି ବିଶ୍ୱାସ । ୧୯
ଯାଅ ନି ଥାଅ ବନ ଘୋରେ
ତୁମ୍ଭଙ୍କୁ ଲୋଡ଼ୁଥିବେ ଘରେ
ମାତା ପିଅର ପୁତ୍ର ଭାଇ
ଲୋଡ଼ୁ ଅଛନ୍ତି ନାମଧଇ
ଯେ ଯାହା ସ୍ୱାମୀ କୋପଚିତ୍ତେ
ଖୋଜନ୍ତି ଘର ଦ୍ୱାର ପଥେ
ନ ପାଇ କରିବେଟି ରୋଷ
ତୁମ୍ଭେ ହୋଇବ ଜାତି ନାଶ
ବନ୍ଧୁ ବାନ୍ଧବ ତୁମ୍ଭ ଘର
ଅନ୍ନ ନ କରିବେ ଆହାର
ଜଳହିଁ ନ କରିବେ ପାନ
ତୁମ୍ଭେ ହୋଇବ ଜାତିହୀନ । ୨୦

ନ ଜାଣି ଯେବେ ଗୋ ଅଜ୍ଞାନ
ବନ୍ଦନ କର ମୋର ବୋଲ
ଦେଖିଲ ବନ ପରିମଳ
ନାନା କୁସୁମେ ନଦୀଜଳ
ମଳୟ ପବନ ଶୀତଳ
ତରୁ ପଲ୍ଲବେ ଭୃଙ୍ଗ ମେଳ
ବନ୍ଦନ ଏବେ ଗୋପପୁର
ଯାଇ ପତିଙ୍କି ସେବା କର
ଗାଈଙ୍କ ଗୋଡ଼େ ବତ୍ସା ବାନ୍ଧି
ତୁମ୍ଭେ ଯେ ଦୁହୁଁ ଥିଲ ଛନ୍ଦି
ସ୍ତନ ନ ପାଇଣ ବାଛୁରି
କାନ୍ଦନ୍ତି ହମ୍ବାରବ କରି
ବାଳକ ଧରିଥିଲ କୋଳେ
ପକାଇ ଅଇଲ ଯେ ତଳେ
ଛୁଡ଼ିଲ ଓଷ୍ଠ ଦନ୍ତ ଫାଟି
କାନ୍ଦନ୍ତି ତୁଣ୍ଡେ ଭରି ମାଟି
ବନ୍ଦନ ନିଜ ପୁର ଯାଅ
ସ୍ତନ ପିଆଇ ଗାଈ ଦୁହଁ । ୨୧ ୨୨
ଯେବେ ଅଇଲ ବେଣୁ ନାଦେ
ମୋ ରୂପ ଦେଖିବାର ସଧେ
ଏବେ ଦେଖିଲ ମୋର ଦେହି
ଯାଅ ଗୋ ! ଏଣ୍ଡେହେଁ ନ ରହି । ୨୩
ସ୍ୱାମୀଙ୍କ ସଙ୍ଗେ ପ୍ରୀତି କର
ଉଚିତ ଧର୍ମ ଗୋ ତୁମ୍ଭର
ସ୍ୱାମୀର ଯେତେ ଇଷ୍ଟଜନ
ବାଳ ତନୟଙ୍କ ପୋଷଣ
ଏ ନିତ୍ୟ କର୍ମ ଗୋ ତୁମ୍ଭର
ପୁଣି ବୋଲନ୍ତି ବେଣୁଧର । ୨୪
ପୂର୍ବ ଅର୍ଜିଲ କର୍ମଫଳ
ଯେ ଯାହା ସ୍ୱାମୀ ଗୋ ମିଳଇ
ସେ ଯେବେ ହୋଏ ଅସୁନ୍ଦର
ଦୁଃଖୀ ଦରିଦ୍ର ବ୍ୟାଧିକର
ତାହାଙ୍କୁ ନ କରିବ ଆନ
ସେ ବିଷ୍ଣୁ ଦେବଙ୍କ ସମାନ
ତାହାଙ୍କ ପାଦେ ଏକ ଚିତ୍ତେ
ସେବା କରିବ ଅବିରତେ
ଏ ମାୟା ସଂସାରେ ବେଭାର
ଯାହା ସୃଜିଲ ବେଦବର
ଏହା ଯେ ନ କରନ୍ତି ଭଲେ
ନରକେ ଯାନ୍ତି ଅନ୍ତକାଳେ । ୨୫
ପର ପୁରୁଷେ ଚିତ୍ତ ଦେଇ
ଯେ ନାରୀ ରମେ ଦେହ ବଳି
ତାହାଙ୍କ ନାହିଁ ସୁଖ ଲେଶ
ନରକେ ହୋନ୍ତି ପରବେଶ
ନିନ୍ଦିତ ହୋନ୍ତି ବେନି ଲୋକେ
ନିରାଶ ହୋନ୍ତି ସ୍ୱାମୀସୁଖେ
ବିଧବା ହୋନ୍ତି ଜନ୍ମ ସାତ
ଯେ ନାରୀ ସ୍ୱାମୀ ଅଭକତ । ୨୬
ମୋତେ ଅଇଲ ଯେବେ ଦେଖି
ଏତେକେ ପ୍ରୀତି ମାନ ଆଖି
ଯେ ମୋତେ ଦୂରେ ଥାନ୍ତି ଚିନ୍ତି
ମନ ବଚନ ମୋତେ ଦିଅନ୍ତି
ବେଗେ ହୁଅନ୍ତି ଭବୁଁ ପାର
ଖଣ୍ଡଇ ଭ୍ରମ ତାହାଙ୍କର
ଯେ ମୋର ନିକଟେ ରୁହନ୍ତି
କେସ ପ୍ରାଣୀ ମୋତେ ନା ଭଜନ୍ତି
ମାୟାରେ ହୋଇ ଛନ ଛନ
ବିଷୟା ଜଡ଼େ ଥାଇ ମନ
ସେ ମୋତେ ପାଇବ କେମନ୍ତ
ହସି ବୋଲନ୍ତି ଗୋପୀନାଥ । ୨୭

ମୁନି ବୋଲନ୍ତି ରାୟେ ! ଶୁଣ
ଯାହା କହିଲେ ନାରାୟଣ
ଗୋପିଏ କୃଷ୍ଣକଥା ଶୁଣି
ଚିନ୍ତା ବକଲେ ମନେ ଗୁଣି
ବଜ୍ର ପଡ଼ିଲା ଯେହ୍ନେ ଶିର
ବଦନୁଁ ନିଇଁଲ ଉତ୍ତର । ୨୮
ନିଃଶ୍ୱାସ ବହେ ଖରତର
ଶୁଖିଲା ସୁରଙ୍ଗ ଅଧର
ଦର୍ଶନେ ଅଧର କାମୋଡ଼ି
କର ଯୁଗଳ ଶିରେ ନାଡି
ଚରଣ ଅଙ୍ଗୁଳିର ଅଗ୍ରେ
ଭୂମି ଚରନ୍ତି କାମ ବ୍ୟଗ୍ରେ
କମ୍ପଇ ବକଳେ ଶରୀର
ବେନି ଲୋଚନୁ ବହେ ନୀର
ଅଞ୍ଜନ କୁଙ୍କୁମର ସଙ୍ଗେ
ଲୁହ ପଡ଼ଇ କୁଚଯୁଗେ
ଦୁଃଖ ସାଗରେ ନିମଜ୍ଜିଲେ
ସମସ୍ତେ ଲୋଚନ ବୁଜିଲେ
ହୋଇଲେ ମୃତ ପିଣ୍ଡ ପ୍ରାୟେ
ଦେଖନ୍ତି ପ୍ରଭୁ ଦେବରାୟେ । ୨୯
କୃଷ୍ଣ ନିଷ୍ଠୁର ବୋଲ ଶୁଣି
ଧର୍ମ ଅଧର୍ମ ମନେ ଗୁଣି
ଯାହାର ପାଇଁ ଗୃହବାସ
ଛାଡ଼ିଲୁଁ ଜୀବନର ଆଶ
ତାର ନିଷ୍ଠୁର କଥା ପାଇ
ଜୀବନ ଦଣ୍ଡେ ନ ରହଇ
ବେନି ଲୋଚନ ଘଷି କରେ
କୃଷ୍ଣଙ୍କୁ ଚାହିଁଲେ ସଧୀରେ
ପାଦେ ପଡ଼ିଲେ ଏକାବେଳେ
କହନ୍ତି ଜୀବନ ବିକଳେ

ଶିର ଲଗାଇ ପଦ୍ମପାଦେ
କହନ୍ତି ଶୋକ ଗଦଗଦେ । ୩୦
ହେ ନାଥ ! ପ୍ରଭୁ ଭାବଗ୍ରାହୀ !
ଏମନ୍ତ ବୋଲୁ କାହିଁପାଇଁ ?
ତୁ ନୋହୁଁ ଯଶୋଦାନନ୍ଦନ
ଅନାଦି ପ୍ରଭୁ ନିରଞ୍ଜନ
ଆମ୍ଭେ ଅଭାଗୀ ଦୁଃଖୀ ନାରୀ
ଆଉ କି ଯିବୁଁ ଗୋପପୁରୀ
ଛାଡ଼ିଲୁ ବିଷୟ ବିଷାଦ
ପାଇ ତୋହର ପଦ୍ମପାଦ
ଆମ୍ଭଙ୍କୁ ତେଜୁ କାହିଁପାଇଁ ?
ତୋ ତହୁଁ ଅନ୍ୟ ଗତି ନାହିଁ
ତୋ ପାଦ ପଙ୍କଜର ମୂଳେ
ଜ୍ଞାନୀ ଚିନ୍ତନ୍ତି ଅନ୍ତକାଳେ
ସେ ପାଦପଦ୍ମ ଆମ୍ଭେ ପାଇ
କାହିଁକି ଯିବୁ ଭାବଗ୍ରାହୀ । ୩୨
ତୋହର ପାଇଁ ଦାମୋଦର
ଛାଡ଼ିଲୁଁ ପତି ସୁତ ଘର
ଭଜନ୍ତି ଯେ ତୋହର ନାମ
ତାହାଙ୍କୁ ନାହିଁ ଦୁଃଖ-ଶ୍ରମ
ଆମ୍ଭେ ତୋ ପାଦେ ଚିତ୍ତ ଦେଇ
ନିରାଶ ହୋଇଲୁଁ ଗୋସାଇଁ
ଉଭୟେ ନ ପାଇଲୁଁ କୂଳ
ତୁ ଯେ ବୋଲାଉ ଆଦିମୂଳ
ଧର୍ମ ଦେବତାଙ୍କର ଗୁରୁ
ତୋର ମହିମା ମହାମେରୁ
ଯାହା ବୋଇଲୁ ବେଦମତେ
ହେ ନାଥ ! ଶୁଣ ଏକଚିତ୍ତେ
ଏ ଯେ ଆମ୍ଭର ସାଧୁପଣ
ସେବିବୁଁ ସ୍ୱାମୀଙ୍କ ଚରଣ

ଏ ଧର୍ମ ଉଚିତ ଆମ୍ଭର
ହେ ନାଥ ! ଶୁଣ ବେଦସାର
ତୁ ଯେ ସକଳ ପ୍ରାଣୀଙ୍କର
ଦେହ ଜୀବନର ଠାକୁର । ୩୨
ଯେ ପ୍ରାଣୀ ତୋହର ଭଜଇ
ତାହାର ଜନ୍ମ ବନ୍ଧ ନାହିଁ
ଅନେକ ପୁଣ୍ୟ କରିଥିଲେ
ତୋ ନାମ ଧରି ଅନ୍ତଃକାଳେ
ଅଭୟ ବ୍ରହ୍ମେ ସେ ପଶନ୍ତି
ଆମ୍ଭର ନାହିଁ ମନୋଭ୍ରାନ୍ତି
ଆଜ କି ଗୋପପୁର ଯିବୁଁ
ପତି ତନୟ ଆବୋରିବୁଁ
ଆମ୍ଭର ତେଣେ ନାହିଁ ଆଶା
ତୋ ନାମ କରିଛୁଁ ଭରସା
ମନ କି ନ ଜାଣୁ ଆମ୍ଭର ?
ଆଶାବିଶ୍ରାମ ବାନା ତୋର
କାଳନ୍ଦୀତଟରେ ବ୍ରତ କରି
ପୂଜିଲୁ ଶଙ୍କର ଗଉରୀ
ବର ମାଗିଲୁ ଆମ୍ଭେ ଯାହା
ହେ ନାଥ ! ନ ଜାଣୁ କି ତାହା ?
ଆମ୍ଭର ବସ୍ତ୍ର ଚୋରି କରି
ତୁ ଯେ ବୋଇଲୁ ନରହରି
ରମିବା ବୃନ୍ଦାବନେ ନେଇ
ନିୟମ କଲୁ ବେଣୁ ଛୁଇଁ
ଆମ୍ଭର ସାକ୍ଷୀ ଏ ମୁରଲୀ
କମ୍ପା ପାସୋରୁ ବନମାଳୀ !
ତୋହର ଯେବେ ଦୟା ନାହିଁ
କମ୍ପା ଗାଇଲୁ ବେଣୁ ବାଇ । ୩୩
ଆମ୍ଭର ମନ ନିଜ ଘରେ
ବୁଡ଼ାଇ ଥିଲୁ ମୁହାଁସରେ
ଶ୍ରବଣେ ମୁରଲୀ ଶୁଭିଲା
କର ଚରଣ ନ ଚଳିଲା
ଜୀବନ ହରିଲୁ ଆମ୍ଭର
ଏବେ ତ କହିଲୁ ନିଷ୍ଠୁର
ହେ ନାଥ ! କର ପ୍ରାଣରକ୍ଷା
ଆମ୍ଭେ ପାଇଲୁ ବେଣୁଦୀକ୍ଷା
ତୋର ଅଧରୁ ସୁଧାରସ
ଆମ୍ଭର ମୁଖରେ ବରଷ
ଜୀବନ ରଖ ନନ୍ଦବାଳ
ଆମ୍ଭର ପୂରିଲାଣି କାଳ
କ୍ରୋଧ ଅନଳ ପ୍ରାୟ ହୋଇ
କାମଅନଳ ହୃଦ ଦହି
ଲିଭାଅ ମୁଖ ରସ ଦେଇ
ଦାସବତ୍ସଳ ଭବଗ୍ରାହୀ !
ଯେବେ ନ ରଖୁ ବନମାଳୀ !
ମରିବୁଁ ସକଳ ଗୁଆଳୀ
ହତ୍ୟା ହୋଇବ ତୋର କନ୍ଧେ
ଧ୍ୟାନେ ପଶିବୁ ତୋର ପାଦେ
ଗୋପୀ ବୋଲନ୍ତି କୃଷ୍ଣେ ଗୁହାଁ
ପୂତନା ପ୍ରାଣ ଅଛୁ ଖାଇ
ତୁ କାହିଁ ରଖିବୁ ଆମ୍ଭନ୍ତ
ନିଷ୍ଠୁର ହୋଇଲୁ କୃତାନ୍ତ
ମରିବୁ ତୋହର ଉପରେ
ଜୀବନ ନ ରହେ ଶରୀରେ । ୩୫
ହେ ନାଥ ! ତୋହର ପୟରେ
କମଳା ସେବେ ନିରନ୍ତରେ
ଆମ୍ଭର ପ୍ରିୟ ଅଟୁ ତୁହି
ଆଶା ନ ଛେଦ ଭବଗ୍ରାହୀ । ୩୬
ତୋହର ପାଦର ତୁଳସୀ
ମାଳା କରଣ ବ୍ରହ୍ମଋଷି !

କବରୀଭର ସଜ କରି
ତୋ ପାଦେ ସେବବୁଁ ମୁରାରି । ୩୭
ତୋର ପାଦ ହୃଦଗତେ
ମୁନିଏ ଭାବୁଥାନ୍ତି ନିତ୍ୟେ
ସେ ପାଦେ ପଶିଲୁଁ ଶରଣ
ଜୀବନ ରଖ ନାରାୟଣ । ୩୮
ତୋର ସମ୍ପଦ ଭୋଗ କରି
ତୋ ମୁଖ ଚୁମ୍ବି ଦିନ ହରି
ତୋର ସୁନ୍ଦର ରୂପ ଦେଖି
ପିଚ୍ଛୁଡ଼ି ନ ପାରୁ ସେ ଆଖି
ତୋହର ବେଣୁନାଦ ଶୁଣି
ବ୍ରହ୍ମାଣ୍ଡେ ଯେତେକ ତରୁଣୀ
କେ ଦେହ ଧରିବ ନିର୍ଭରେ
ଶୁଣିଲା ନାହିଁ ତିନିପୁରେ । ୩୯,୪୦
ତୋ ରୂପ ଦେଖି ପଶୁବନେ
ପୁଲକ ହୋନ୍ତି ତରୁଗଣେ
ତୋର ଚରଣ ନରହରି
ସ୍ତନ ବଦନ ଶିରେ ଧରି
ଆମ୍ଭର ତାପ ହୃଦୁ ଯିବ
ଶରଣ ରଖ ପଦ୍ମନାଭ । ୪୧
ବୋଲନ୍ତି ଶୁକ ମୁନିବର
ଶୁଣ ହେ କୃଷ୍ଣରସସାର
ଗୋପୀଙ୍କ ଦେଖିଣ ବିକଳ
ଦୟା ବସିଲ ଆଦିମୂଳ
ଆନନ୍ଦେ ବେନି ଭୁଜ ତୋଳି
ଆସ ବୋଇଲେ ବନମାଳୀ
ତକ୍ଷଣେ ପାଇଲେ ଜୀବନ
ହରଷ ଗୋପୀଙ୍କର ମନ । ୪୨

କୃଷ୍ଣଙ୍କୁ ବେଢ଼ିଲେ ଯୁବତୀ
ଗଗନେ ଯେହ୍ନେ ତାରାପନ୍ତି
ଗୋପୀଏ ତୋଷମନ ହୋଇ
ପୁଷ୍ପ ତୋଳନ୍ତି ବନେ ଯାଇଁ
ମାଳା ଗୁନ୍ଥିଲେ ଯତ୍ନ କରି
ବର ବରିଲେ ନରହରି
କାଳନ୍ଦୀ ବାଳିକୁଦେ ଯାଇଁ
ଗୋପୀଙ୍କ ମଧ୍ୟେ ଭାବଗ୍ରାହୀ
ମାୟାର ଯୋଗବଳେ ହରି
ଷୋଳ ସହସ୍ର ରୂପ ଧରି
ହୋଇଲେ ବେନି ବେନି ଜନ
ଗୋପୀ ରମିଲେ ଭଗବାନ
ରତିପଣ୍ଡିତ ବଳବନ୍ତ
ତୋଷିଲେ ଗୋପୀଙ୍କର ଚିତ୍ତ ।୪୩,୪୬
କୃଷ୍ଣ ରମଣ ରସ ପାଇ
ଗୋପୀ ବୋଲନ୍ତି ଗର୍ବ ବହି
ଆମ୍ଭରୁ ପ୍ରାୟ ଭାଗ୍ୟବନ୍ତ
ନାହିଁ ହୋଇବ ଏ ଜଗତ
ରମିଲୁଁ ଅନାଦି ପୁରୁଷ
ଆମ୍ଭର ହୋଇଲେ ସେ ବଶ
କୃଷ୍ଣଭକତ ଆମ୍ଭ ପ୍ରାୟେ
ସ୍ୱର୍ଗେ ନୋହିବେ ଦେବତାଏ । ୪୭
ଏମନ୍ତ ମନେ ଗର୍ବ କରି
ତାହା ଜାଣିଲେ ନରହରି
ଗୋପୀଙ୍କ ଭାବ ଜାଣିବାରେ
ମାୟା ମୋହିଲେ ନଦୀତଟରେ
ଗୋପୀକା ବୃନ୍ଦାବତୀ ନାମେ †
ଥିଲ ସେ କୃଷ୍ଣ ସନ୍ନିଧାନେ

† ମୂଳରେ "ବୃନ୍ଦାବତୀ" ନାମ ନାହିଁ ।

ପୂର୍ବେ ସେ ଅଛୁ ତପ କରି
ଗୋବିନ୍ଦ ଚାରି ଭୁଜ ଧରି
ଛନ୍ଦିଲେ ଗୋପୀଙ୍କର ମତି
କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ । ୪୮
ବୋଲଇ ଦାସ ଜଗନ୍ନାଥ
ବନେ ନବେଷି କୃଷ୍ଣ ପଥ
ମୋହର ମନ ଗୋଡ଼ାଇଲା
କୃଷ୍ଣଙ୍କ ଭେଟ ନ ପାଇଲା
ବାହୁଡ଼ି ହୋଇଲା ନିରାଶ
ସୁଜନେ ବୃନ୍ଦାବନେ ପଶ

ମୁଁ ଅବା ହରିଙ୍କି ଅନାଇ
କାହିଁ ପାଇବି ଭବଗ୍ରାହୀ ?
ପାମର ହୀନ ମୋର ବୁଦ୍ଧି
କୃଷ୍ଣ ଚରଣେ ଚିତ୍ତ ଖେଦି
ମୋ ଗୁରୁ ପାଇବଇଁ କାହିଁ
ଯାହାର ଆଦି ଅନ୍ତ ନାହିଁ
ସୁଜନ ଜନଙ୍କର ହିତେ
କହଇ ଦାସ ଜଗନ୍ନାଥେ ।
ସେ ଦସ୍ୟୁମସ୍ତୁ ହରିପାଦେ
ମନ ମୋ ରହୁ ଅପ୍ରମାଦେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ
ଶ୍ରୀକୃଷ୍ଣାନ୍ତର୍ଦ୍ଧାନେ ତ୍ରିଂଶୋଽଧ୍ୟାୟଃ । ୩୦ ।



## ଏକତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୦ଶ ଅଧ୍ୟାୟ )

ତ୍ରିଂଶେ ବିରହ ସନ୍ତପ୍ତ—ଗୋପୀଭିଃ କୃଷ୍ଣମାର୍ଗଣଂ ।
ଉନ୍ମତ୍ତବଦ୍ ଯାର୍ଦ୍ଦିନ୍ୟାଂ ଭ୍ରମନ୍ତୀଭିର୍ବନେ ବନେ । ୦ ।

କୃଷ୍ଣବିରହେ ଗୋପୀଗଣେ । ଉନ୍ମତ୍ତ ହୋଇ ବନୁଁ ବନେ
କରନ୍ତି କୃଷ୍ଣ ଅନ୍ୱେଷଣ । ଏକତ୍ରିଂଶରେ ଏ ବର୍ଣ୍ଣନ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ରାଜନ ତୋଷମନେ
କୃଷ୍ଣ ଯେ ଗଲେ ଅନ୍ତର୍ଦ୍ଧାନେ
ଗୋପଯୁବତୀ ନଦୀକୂଳେ
ଘଡ଼କେ ଜାଣିଲେ ସକଳେ

କୃଷ୍ଣ ନ ଦେଖି ବନ ଘୋରେ
ଭୟେ ଚଳନ୍ତି ସେ କାତରେ
କମ୍ପନ୍ତି ଚଉଦିଗ ଚାହିଁ
ରଜନୀ ଅର୍ଦ୍ଧଅଛୁ ହୋଇ
ଶ୍ରୀକୃଷ୍ଣ ମାୟା ଯେନ ମେଘେ
ମିଳିଲେ ଶଶାଙ୍କର ଲାଗେ

ଦେଖି ବିକଳ ଗୋପନାରୀ
କାନ୍ଦନ୍ତି କୃଷ୍ଣନାମ ଧରି
ହେ ନାଥ ! ଆସ ତୁ ବହନ
ଝଞ୍ଜଘ ଆଚ୍ଛାଦିଲା ଗଗନ
ବିଶେଷେ ଯମୁନାର ତୀରେ
ମେଘ ଅନ୍ଧାର ବନ ଘୋରେ
ଅନାଥ କରି ଗଲୁ କାହିଁ
ଅନ୍ଧାରେ ପଥ ନ ଦିଶଇ
ଏମନ୍ତେ କରନ୍ତି ରୋଦନ
କ୍ଷଣ କ୍ଷଣକେ ଅଚେତନ
ଚିନ୍ତାସାଗର ମହାଘୋରେ
ରୋଦନ କଲେ ଉଚ୍ଚସ୍ୱରେ
ବାଳକ ପ୍ରାୟ ହୋଇ କାନ୍ଦି
ଏକ ଆରେକେ ଛନ୍ଦା ଛନ୍ଦି
କୃଷ୍ଣର ଗତି ଅନୁରାଗ
ଅଳପ ହାସ ମୁଖ ରଙ୍ଗ
ମଧୁର ଚୃହିଁବାର ରସେ
ମନ ନବେଶି କୃଷ୍ଣ ପଶେ
ବାଳକ କାନ୍ଧୁ ଯେତେ କଲା
ସୁମରି ଗୋବିନ୍ଦର ଲୀଳା
ମନ ନବେଶି କୃଷ୍ଣ ଦେହେ
ଗୋପୀ ପଡ଼ିଲେ ଶୋକ ମୋହେ
ପୁଣି ଉଠିଲେ ଜ୍ଞାନ ପାଇ
କହନ୍ତି ବାଇ ପ୍ରାୟ ହୋଇ
କେ ବୋଲେ ମୁହିଁ ନାରାୟଣ
ସେବ ଲୋ ମୋହର ଚରଣ
କେ ବୋଲେ ମୁହିଁ ନନ୍ଦବାଳ
ଦେଖ ମୋ ଶିରେ ଗୁଞ୍ଜମାଳ
ପୁଣି ଗୋପିଏ ଆଗସରି
ବୋଲଇ ଦେଖିଲ ମୁଁ ହରି

ଜାଣଇ ଏହି ପଥେ ଗଲି
ମୁରଲୀ ଘେନି ନନ୍ଦବାଳା । ୧-୩
ଶୁଣି ଉଠିଲେ ଧାଡିକାରେ
ପଶିଲେ ଲତାକୁଞ୍ଜେ ଘୋରେ
ଖୋଜନ୍ତି ପଶି ବନେ ବନ
ଡାକନ୍ତି ଆସ ନନ୍ଦନାନ
ବାତୁଳଙ୍କର ପ୍ରାୟ ହୋଇ
ପୁଚ୍ଛନ୍ତି ଆକାଶକୁ ଚାହିଁ
ବୋଲନ୍ତି ଗୃହିଁ ତରୁଗଣ
ତୁମ୍ଭେ ଦେଖିଲ ନାରାୟଣ ?
କୋଟି ଭିତରେ ଥୋଇ ଅଛ
ଏ କଥା ଅଟଇ ପ୍ରତ୍ୟକ୍ଷ । ୪
ଅଶ୍ୱତ୍ଥ ବଟ ପ୍ଳକ୍ଷ ବୃକ୍ଷେ !
ତୁମ୍ଭେ କି ଦେଖିଲ ପ୍ରତ୍ୟକ୍ଷେ ?
ମଧୁର ହାସ୍ୟେ ଆମ୍ଭ ମନ
ବାନ୍ଧିଣ ନେଲେ ନନ୍ଦନାନ । ୫
ହେ କୁରୁବେଲ, ନାଗେଶ୍ୱର !
ଚମ୍ପା, ପୁନ୍ନାଗ କନିଅର !
ତୁମ୍ଭ ପୀରତି ଘେନି ଚିତ୍ତେ
ଗୋବିନ୍ଦ ଗଲେ କି ଏଁ ପଥେ ? ୬
ତୁ ଯେ ତୁଳସୀ ହରିପ୍ରିୟା
ଲୁଚ୍ଛଇ କରୁଅଛୁ ମାୟା
ଗୋବିନ୍ଦ ହୃଦେ ଲମ୍ବି ଥାଉ
ଆମ୍ଭେ ଯଗୁରଲେ ନ କହୁ
ଆମ୍ଭେ ତୋ କଥା ଭଲେ ଜାଣି
ତୁ ଯେ ଆମ୍ଭର ସପତଣୀ । ୭
ମାଳତୀ, ମଲ୍ଲି, ଜାଇ, ଯୂଈ !
ତୁମ୍ଭେ ଦେଖିଲ ଭାବଗ୍ରାହୀ ?
କୃଷ୍ଣର ନଖକ୍ଷତ ଲାଗି
ନ ପୁଣ ହୋଇଛ ସୁଆଗୀ । ୮

ହେ ଚୂତ, ପନସ, ପିଆଳ
ଅଶନ, ଜମ୍ବୁ, କୋବିଦାର
ବେଲ, ବକୁଳ, ନମ୍ବ ଯୂଥେ !
ଗୋବନ୍ଦ ଗଲେ କି ଏ ପଥେ ?
ତୁମ୍ଭେ ଯେ ଯମୁନାର ତୀରେ
ରହିଛ ପର ଉପକାରେ
କହ ଶ୍ରୀକୃଷ୍ଣ ଗଲେ କାହିଁ ?
ମରୁଁ ତା ମୁଖ ନ ଚାହିଁ । ୯
ଯାନ୍ତେ ଦେଖିଲେ ବନଦେଶେ
ଅବନୀ ନ ଦିଶଇ ଘାସେ
ତାହାକୁ ଚାହିଁ ଗୋପନାରୀ
ବୋଲନ୍ତି ଦେଖିଲୁ କି ହରି ?
ଏଣେ ଯେ ଗଲେ କୃଷ୍ଣ ଧାଇଁ
ତା ପାଦ ଲାଗି ତୋର ଦେହି
ପୁଲକ ହୋଇଅଛି ଦେଖ
ଆମ୍ଭେ ସେ ହୋଇଲୁ ନରେଖ । ୧୦
ହରିଣୀ ଯୂଥକୁ ଅନାଇ
କହନ୍ତି ଶୋକଭର ହୋଇ
ଆମ୍ଭେ ଜାଣିଲୁଁ ସତ୍ୟ ଆଜ
ତୁମ୍ଭେ ଦେଖିଲ ଦେବରାଜ
ହରି ଚରଣ ଯୁଗ ଦେଖି
ନର୍ମଳ କଲ ଚର୍ମ ଆଖି
ଏକ ଗୋପିକା ପଛେ ଥାଇ
ବୋଲଇ ଗୋପୀଙ୍କି ଅନାଇ
ବହନ ଆସ ଲୋ ଲେଉଟି
ଦେଖ ଗୋ କୁନ୍ଦମାଳ ଗୋଟି
ଯେ ନାରୀ କୃଷ୍ଣ ଘେନିଗଲା
ଏ ମାଳ ତାର ହୃଦେ ଥିଲା
କୃଷ୍ଣର ଆଲିଙ୍ଗନ କାଳେ
ଛିଣ୍ଡି ଗୋ ପଡ଼ିଅଛି ତଳେ
ତେଣୁ ସେ ସୁଗନ୍ଧ ଏହାର
ଏବେ ପାଇବା ଦାମୋଦର । ୧୧
ପ୍ରିୟାର କାନ୍ଧେ ଦେଇ ହାତ
ଏ ପଥେ ଗଲେ ଗୋପୀନାଥ
ପଦ୍ମ ଗୋଟିଏ ଘେନି କରେ
ବୃକ୍ଷେ ଯେ ଫଳ ପୁଷ୍ପ ଭରେ
ପଶି ଯେ ଗଲେ ଏହି ବାଟେ
ଦେଖି ତ ନମନ୍ତି ଉଚାଟେ । ୧୨
ପୁଣି ଗୋପୀଏ ବୃକ୍ଷେ ଚାହିଁ
ମାଳତୀ ଯାର ଦେହେ ଥାଇ
ବୋଲଇ କେତେ ସଉଭାଗୀ
ଦେଖ ଗୋ କୃଷ୍ଣ ନଖ ଲାଗି
ପୁଲକ ହୋଇଛି ଶରୀର
ଯେଣୁ ଲାଗିଲା କୃଷ୍ଣକର । ୧୩
ଏମନ୍ତେ ହୋଇ ଉନମତ୍ତ
କୃଷ୍ଣର ପାଦେ ଦେଇ ଚିତ୍ତ
ଏକ ଗୋପିକା ଆଗ ସରି
କୋଳେ ଚାପିଲା ଗୋପନାରୀ
ତାହାର କୁଚେ ମୁଖ ଦେଇ
ନିର୍ଭୟେ ଦେଲାକ ପକାଇ
ବୋଲଇ ମୁହିଁ ନାରାୟଣ
ଶୋଷିଲି ପୂତନାର ପ୍ରାଣ
ମୋତେ ଲୋ ଭଜ ଗୋପନାରୀ !
ଚାପଇ କରେ କର ଧରି
ଏକ ଗୋପିକା ପଛେ ଥିଲା
ପଣତର ଛନ୍ଦି ପକାଇଲା
ବୋଲଇ ମୁହିଁ ଦାମୋଦର
ପାଦେ ଶକଟ କଲି ଚୂର । ୧୪,୧୫
ଏକ ଗୋପୀକୁ କରି କାନ୍ଧେ
ପକାଇ ବୋଲଇ ଆନନ୍ଦେ

ଦେଖ ମାଇଲ ତୃଣାବର୍ତ୍ତ
ମୁଁ ସେ ଲୋ ଯଶୋଦାର ସୁତ
କେ ଗୋପୀ ଉଦୁଖଳେ ଟାଣି
ଘୁଙ୍ଗୁଣ୍ଡେ ବଜାଇ କଙ୍କିଣୀ
ବୋଲଇ ମୋତେ ସେବା କର
ମୁଁ ସେ ଲୋ ଯଶୋଦା କୁମର । ୧୬
କେ ବେନି ରାମ କୃଷ୍ଣ ହୋଏ
ବାଛୁଷ୍ଟ ଗୋପାଳ ଥୋକାଏ
ପୁଣି ହୁଁ ଏକଇ ଗୋପୀଏ
ହୋଇଲା ବତ୍ସାସୁର ପ୍ରାୟେ
ଏକ ଗୋପୀଏ ଧରି କରେ
ବୁଲାଇ ପିଟିଲା ବୃକ୍ଷରେ
ବୋଲଇ ମୁହିଁ ଦାମୋଦର
ଦେଖ ମାଇଲ ବତ୍ସାସୁର
ଆର ଗୋପିକା ବୃକ୍ଷ ଡାଳେ
ଧରି ଚିରଲା ବେନି ଫାଳେ
ବୋଲେ ମୁଁ ଯଶୋଦା କୁମର
ଦେଖ ଚିରିଲି ବକାସୁର । ୧୭
କେ ବୃକ୍ଷ ଡାଳେ ମୁଖ ଦେଇ
ଗୀତ ସୁସ୍ୱରେ ବେଣୁ ବାଇ
ଏକର କନ୍ଧେ ଦେଇ ହସ୍ତ
ଚାଲଇ ଯେହ୍ନେ ଗୋପୀନାଥ
ବୋଲଇ ମୁହିଁ ବେଣୁଧର
ଦେଖ ଲୋ ଚାଲଇଁ ସୁନ୍ଦର । ୧୮,୧୯
ପୁଣି ଗୋପୀଏ ଆଗ ସରି
ବୋଲଇ ହୃଦେ ହସ୍ତ ମାରି
ଇନ୍ଦ୍ର ଘୋରକୁ କପାଁ ଡ଼ର ?
ଆଜ ତୋଳିବ ଗିରିବର
କେତେ ଲୋ ବରଷିବ ଆଜ
ବଜ୍ର ପାଷାଣ ଦେବରାଜ
ଶଢ଼ୀ ପାଲଟି ବାମକରେ
ତୋଳିଲା ଅଙ୍ଗୁଳି ଉପରେ । ୨୦
ଏକ ଗୋପିକା ବେଗେ ଧାଇଁ
ଆରକେ ଶିରେ ପାଦ ଦେଇ
ବୋଲଇ ପଳାଅ କାଳିୟ
କାଳିନ୍ଦୀ ଭିତରେ ନ ରହ
ଖଳ ନାଶନ ବାନା ମୋର
ଅମୃତ କରିବଇଁ ନୀର । ୨୧
କେ ଗୋପୀ ଡ଼ାକଇ ସୁସ୍ୱରେ
ନୟନ ବୁଜ ଧାଡ଼ିକାରେ
ଅନଳ ଲିଭାଇବି ମୁହିଁ
ବସ ଲୋ, ମୁଖେ କର ଦେଇ । ୨୨
କେ ଗୋପୀ ଫୁଲମାଳ ଘେନି
କୋପେ ବୋଲଇ ଶିର ଧୁଣି
ଲବଣୀ ଖାଉ ତୁ ଚୋରାଇ
ଯେବେ ବାନ୍ଧିବି ତୋତେ ନେଇ । ୨୩
ଏମନ୍ତେ ଗୋପୀ ବାଇପଣେ
ଚାହିଁ ବୁଲନ୍ତି ବନେ ବନେ
ଯାଉଁ ଦେଖିଲେ ବାଲି କୁଦ
ପଡ଼ିଛି ଗୋବର୍ଦ୍ଧନର ପାଦ । ୨୪
ଚିହ୍ନିଲେ କୃଷ୍ଣପାଦ ବୋଲି
ଗୋପୀ ଧାଇଁଲେ ପେଲାପେଲି
ଧ୍ୱଜ, ଅଙ୍କୁଶ ପଦ୍ମ ଚିହ୍ନ
ଦେଖି ଆନନ୍ଦ କଲେ ମନ । ୨୫
କୃଷ୍ଣର ପାଦ ଅନୁସରି
ବନେ ଚାଲନ୍ତି ଗୋପନାରୀ
ପୁଣି କେତେହେଁ ଦୂର ଯାଇ
ବୋଲନ୍ତି କୃଷ୍ଣ ପାଦ ଚାହିଁ
ଦେଖ ଗୋ ଚରଣ ପାଖର
ପଡ଼ିଛି କାହାର ପୟର

ଯାହାକୁ କୃଷ୍ଣ ଘେନ ଗଲ
ସେ ତାର ପାଶେ ଯାଉଥିଲ
ଧନ୍ୟ ଗୋ ତାହାର ଜୀବନ
ମୋହିଲ ଯଶୋଦାନନ୍ଦନ । ୨୬,୨୭
କେତେ ଏ କୃଷ୍ଣେ ଆରାଧିଲ
ଏକାନ୍ତେ କୃଷ୍ଣଙ୍କ ରମିଲ । ୨୮
ଯେ ପାଦ ବ୍ରହ୍ମା ତ୍ରିପୁରାରି
ଲଭିବା ପାଇଁ ଆଶା କରି
ଲକ୍ଷ୍ମୀ ଯା ସେବଇ ନିରନ୍ତେ
ଏ ତାହା ଲଭିଲ ଏକାନ୍ତେ । ୨୯
ଏହାର ପାଦ ବର୍ଣ୍ଣ ଚିହ୍ନ
ଦହଇ ଆମ୍ଭର ଜୀବନ
କୃଷ୍ଣ ଅଧର ସୁଧା ପାନ
ଯାହାଟି ଗୋପୀଙ୍କ ଜୀବନ
ଏକାନ୍ତେ ନେଇ ପାନ କଲା
କେତେ ଗୋ ତପ କରିଥିଲା । ୩୦
ପୁଣି ନ ଦେଖିଲେ ପୟର
ଗହନେ ଅଛି ତୃଣାଙ୍କୁର
ବୋଲନ୍ତି କୋମଳ ତା ପାଦ
ଯେଣୁ ପାଇଲା ତୃଣେ ଖେଦ
ତେଣୁ ତାହାକୁ ସ୍କନ୍ଧ କଲେ
ନ ଦିଶେ ପାଦଚିହ୍ନ ଭଲେ । ୩୧
ପୁଣି କ୍ଷଣକେ ପାଦ ଦେଖି
ଗୋପୀଏ ଗୃହାଁନ୍ତି ନିରିକ୍ଷି
ଦେଖ ଗୋ କୃଷ୍ଣର ପୟର
ଅଧିକେ ଦିଶଇ ଗଭୀର
କନ୍ଧରେ ତୋଳିଲେ ତାହାରେ
ଚରଣ ଗଲା ଗଳା ଭରେ । ୩୨
କୃଷ୍ଣ ଯାହାଙ୍କୁ ଘେନ ଗଲ
ଏଠାରେ କବରୀ ଖୋସିଲ
କନ୍ଧୁ ଓହ୍ଲାଇ ତାର ଅର୍ଥେ
ଫୁଲ ତୋଳିଲ ପରା ଏଥେ
ଅଗ୍ର ପାଦରେ ଠିଆ ହୋଇ
ଦେଖ ଏ ଚିହ୍ନିତ ଦିଶଇ । ୩୩.୩୪
ଦେଖ କାମିନୀ ଦୁଷ୍ଟପଣ
ବଶ ଗୋ କଲ ନାରାୟଣ
ରମଣ କଲେ ତାର ଭୁଲେ
କଥା ରଖିଲେ ମଣ୍ଡିତଲେ । ୩୬

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ରସକେଳି
ଯାହାକୁ ନେଲେ ବନମାଳୀ
ସେ ଗୋପୀ କୃଷ୍ଣ ପଛେ ଥାଇ
ଗରବ ମନେ ବିଚାରଇ
ମୁଁ ସେ ମୋହିଲି ହରି ଚିତ୍ତ
ମୋ ଠାରୁଁ ନାହିଁ ଭାଗ୍ୟବନ୍ତ । ୩୭
ତାହା ଜାଣିଲେ ଭାବଗ୍ରାହୀ
ଗର୍ବ ବଳିଲ ଏହା ଦେଖି
ମାୟା ମୋହିଲେ ଗୋପୀମନ
କୃଷ୍ଣଙ୍କୁ ବୋଲଇ ବଚନ
ହେ ନାଥ ! ନ ପାରଇଁ ଯାଇ
ନିଅ ତୁ କନ୍ଧରେ ବସାଇ
ମୋହରେ ଅଛି ଯେବେ ମନ
ବିଶେଷେ ଘୋର କୁଞ୍ଜବନ
ମୁଁ ଏବେ ନ ପାରଇଁ ଚାଲି
ଶୁଣି ହସିଲେ ବନମାଳୀ । ୩୮
ନୋଇଲେ ବସ ମୋର କନ୍ଧେ
କୃଷ୍ଣ ବସିଲେ ବାଲୁକୁଦେ
ଶୁଣି ଗୋପିକା ତୋଷ ହୋଇ
ବସିଲ କୃଷ୍ଣ କନ୍ଧେ ଯାଇଁ

ଉଠିଲେ ପ୍ରଭୁ ଚକ୍ରଧର
କାମିନୀ ଧରିଅଛି ଶିର
କେତେହେଁ ଦୂର କୃଷ୍ଣ ଯାଇଁ
ଅନ୍ତର ହେଲେ ଭାବଗ୍ରାହୀ
ଗୋପୀ ପଡ଼ିଲା ମୁଖ ମାଡ଼ି
ରୁଧିର ବହେ ଓଷ୍ଠ ଛିଡ଼ି
ଦଣ୍ଡେ ହୋଇଲା ମୂରୁଛିତ
ଉଠି ଲୋଡ଼ଇ ଗୋପୀନାଥ
ସେ କାହିଁ ପାଇବ ମୁରାରି
ଗର୍ବ ଗଞ୍ଜନ ନରହରି । ୩୯,୪୦
ବିକଳେ ଚଉଦିଗ ଚାହିଁ
କାନ୍ଦଇ ଶିରେ କର ଦେଇ
ଆସ ବହନ ଗୋପୀନାଥ
ଗହନେ ନ ଦିଶଇ ପଥ
ମୋତେ ନିଷ୍ଟୟେ ନାଶ କଲୁ
ଗୋପୀଙ୍କ ସଙ୍ଗ ଛଡ଼ାଇଲୁ
କି ଦୋଷ କଲି ମୁହିଁ ତୋରେ ?
ନିବେଶି ଗଲୁ ବନ ଘୋରେ
ଏମନ୍ତେ କାନ୍ଦଇ ତରୁଣୀ
କୃଷ୍ଣ ହସିଲେ ତାହା ଶୁଣି । ୪୧ ।
ଗୋପୀ ଯେ ଯାଉଥିଲେ ବନେ
ତାର ବିକଳ ଶୁଣି କର୍ଣ୍ଣେ
ନିକଟେ ମିଳିଲେ ତାହାର
ବୋଲନ୍ତି ଧରି ବେନିକର
ସଚେତ କରି ପଚାରିଲେ
ବୋଲନ୍ତି ଥିଲୁ କୃଷ୍ଣ ଭୁଲେ ?
ତୋତେ ପକାଇ ଘୋର ବନେ
ଗୋବିନ୍ଦ ଗଲେ କୋପ ମନେ
ଏତେ ନିଷ୍ଠୁର ତାର ଦେହୀ
ପୂତନାପ୍ରାଣ ଅଛି ଖାଇ
ଅନେକ ହତ୍ୟା ଅଛି କରି
ଏବେ ଖାଇବ ଗୋପନାରୀ
କାହିଁକି ଯିବୁଁ ଘୋର ବନେ ?
ଆଇଲୁଁ ତାର ବେଣୁ ସ୍ୱନେ
ଛାଡ଼ିଲୁଁ ଗୃହ ସୁତ କାନ୍ତ
ଏ ବନେ ହୋଇଲୁଁ ଅନାଥ
ଏମନ୍ତେ ପଥ ଅନୁସରି
କାନ୍ଦନ୍ତି କୃଷ୍ଣ ନାମ ଧରି । ୪୨,୪୩
ଗହନେ ପଶିଲେ ସକଳେ
ଷୋଳ ସହସ୍ର ଏକାବେଳେ
ବୃକ୍ଷ ଗହଳ ଛାୟା ଦେଖି
ଅନ୍ଧାର ପ୍ରାୟେ ଉପଲକ୍ଷି
ଭୟେ ବାହୁଡ଼ିଲେ ସକଳେ
ପୁଣି ମିଳିଲେ ନଦୀକୂଳେ । ୪୪
ମନ ନିବେଶି କୃଷ୍ଣ ପାଦେ
କାନ୍ଦନ୍ତି ଶୋକ ଗଦଗଦେ
ଦେହ ସଂସାର ପାସୋରିଲେ
ମରଣ ଇଚ୍ଛି ଆବୋରିଲେ
କୃଷ୍ଣଚରଣେ ମନ ଦେଇ
କାନ୍ଦନ୍ତି ଶୋକଭର ହୋଇ
ସେ ଗୋପୀ ଗୋବିନ୍ଦର ପ୍ରାୟେ
ସୁଜନ ଜନେ କରି ଲୟେ । ୪୫,୪୭
ହରିଚରିତ ଭାଗବତ
ଅମୃତ ରସମୟ ଗୀତ
ଏଣେ କରିବା ମନ ତୋଷ
କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣାନ୍ବେଷଣେ
ଗୋପିକା ବିଳାପୋ ନାମ ଏକତ୍ରିଂଶୋଽଧ୍ୟାୟଃ ॥ ୩୧ ॥

# ଦ୍ୱାତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୧ଶ ଅଧ୍ୟାୟ )

ଏକତ୍ରିଂଶେ ନବାଶାସ୍ତାଃ ପୁନଃ ପୁଳିନମାର୍ଗତାଃ ।
କୃଷ୍ଣମେବାନୁଗାୟନ୍ତ୍ୟଃ ପ୍ରାର୍ଥୟନ୍ତେ ତଦାଗମଂ ।୦।

ହତାଶ ହୋଇ ଗୋପବାଳୀ । ପୁଣି ଯମୁନା କୂଳେ ମିଳି
କୃଷ୍ଣଙ୍କୁ ପାଇବାର ଆଶେ । ଡାକନ୍ତି ଅଧ୍ୟାୟ ଦ୍ୱାତ୍ରିଂଶେ ।୦।

ଗୋପ୍ୟ ଊଚୁଃ

ଜୟତି ତେଽଧିକଂ ଜନ୍ମନା ବ୍ରଜଃ
ଶ୍ରୟତ ଇନ୍ଦିରା ଶଶ୍ୱଦତ୍ରହି ।
ଦୟିତ ! ଦୃଶ୍ୟତାଂ ଦିକ୍ଷୁ ତାବକାଃ
ତ୍ୱୟି ଧୃତାସବସ୍ତ୍ୱାଂ ବିଚିନ୍ୱତେ ।୧
ଗୋପୀଏ ବସି ବାଳିକୂଳେ
କାନ୍ଦନ୍ତି ଶୋକ ଗଦଗଦେ
ହେ ନାଥ ! ଯଶୋଦାକୁମର !
ତୋ ଜନ୍ମକାଳୁଁ ଗୋପପୁର
ଦରିଦ୍ର ଦୁଃଖିତ ନ ଜାଣି
ଆମ୍ଭର ଘରେ କମଳାଣୀ
ଅନେକ ହୋଇଲା ସମ୍ପଦ
କେ କହୁ ଆମ୍ଭର ଆନନ୍ଦ
ଆମ୍ଭ ଜୀବନ ଅଛୁ ତୁହି
ତୋ ତହୁଁ ଅନ୍ୟଗତି ନାହିଁ
ତୋର ସମ୍ପଦ ଭୋଗ କରି
ତୋ ମୁଖ ଚୁମ୍ବି ଧନ ଧରି
ମୁରଲୀନାଦେ ଅଣାଇଲୁ
ମୁଖୁଁ ଅମୀୟ ରସ ଦେଲୁ
ଘୋର ଗହନ ବନେ ଥୋଇ
ଅନାଥ କରିଗଲୁ କାହିଁ
ଏବେ ଦେଖାଅ ପଦ୍ମମୁଖ
ବାରେ ଜୀବନ ଆମ୍ଭ ରଖ ।୧
ଶରଦୁଦାଶୟେ ସାଧୁଜାତସତ୍
ସରସିଜୋଦର-ଶ୍ରୀମୁଷା ଦୃଶା ।
ସୁରତନାଥ ! ତେଽଶୁଲ୍କଦାସିକା
ବରଦ ! ନିଘ୍ନତୋ ନେହ କିଂ ବଧଃ ।୨
ହେ ନାଥ ! କମଳଲୋଚନ !
ଦେଖାଅ ନିର୍ମଳ ବଦନ
ତୋ ମୁଖ କମଳର ତେଜେ
ଶରଦ ପଦ୍ମଶିରୀ ଗଞ୍ଜେ
ସେ ଧନେ କିଣିଲୁ ଆମ୍ଭନ୍ତ
ଏ ବନେ କଲୁ ତୁ ଅନାଥ
ସୁରତନାଥ ତୁ ଆମ୍ଭର
କିଣିଲା ଦାସୀ ଆମ୍ଭେ ତୋର
ଯାହାକୁ କିଣି ବିନା ମୂଲେ
କେ ତାକୁ ଗୁଡ଼େ କହ ଭଲେ ?
ତାକୁ ନ ଲାଗେ କି ତା ବଧ ?
ବେଦ ପୁରାଣେ ଏହି ବାଦ ।୨

ବିଷଜଳାପ୍ୟୟାଦ୍ ବ୍ୟାଳରାକ୍ଷସାଦ୍
ବର୍ଷମାରୁତାଦ୍ ବୈଦ୍ୟୁତାନଳାତ୍ ।
ବୃଷମୟାତ୍ମଜାଦ୍ ବିଶ୍ୱତୋଭୟା
ବୃଷଭ ! ତେବୟଂ ରକ୍ଷିତା ମୁହୁଃ ।୩

ଅନେକ ଦୁଃଖୁଁ ଅଛୁ ରଖି
ଏବେ ତ କଲୁ ନିରମାଖି
ବିଷ ହ୍ରଦକ, ଅଘାସୁର,
ଇନ୍ଦ୍ର ବରଷା ମହାଘୋର
ବନଅନଳ, ଷଣ୍ମୁଖୁଁ,
ତୁ ନାଥ ରଖିଛୁ ଆମ୍ଭଙ୍କୁ
ତୋହର ପାଦ ଆଶ୍ରେ କରି
ଜନ୍ମ ମରଣକୁ ନ ଡ଼ରି ।୩

ନ ଖଳୁ ଗୋପିକାନନ୍ଦନୋ ଭବା
ନଖିଳଦେହିନା ମନ୍ତରାତ୍ମଦୃକ୍
ବିଖନସାର୍ଥିତୋ ବିଶ୍ୱଗୁପ୍ତୟେ
ସଖ ଉଦେୟିବାନ୍ ସାତ୍ୱତାଂକୁଳେ ।୪

ତୁ ନୋହୁ ଯଶୋଦା କୁମର
ଜୀବନ ଅଟୁ ପ୍ରାଣୀଙ୍କର
ସକଳ ଜନ୍ତୁ ହୃଦେ ଥାଇ
ଅନ୍ତର ଜାଣୁ ଭବଗ୍ରାହି !
ତୋତେ ବିନ୍ତିଲ ବେଦବର
ନାଶିଲୁ ଅବନୀର ଭର
ତେଣୁ ଯାଦବକୁଳେ ଜାତ
ତୋହର ନାହିଁ ଆଦ୍ୟ ଅନ୍ତ ।୪

ବିରଚିତାଭୟଂ ବୃଷ୍ଣି ଧୂର୍ଯ୍ୟ ! ତେ
ଚରଣମୀୟୁଷାଂ ସଂସୃତେ ର୍ଭୟାତ୍
କରସରୋରୁହଂ କାନ୍ତ ! କାମଦଂ
ଶିରସି ଧେହି ନଃ ଶ୍ରୀକରଗ୍ରହଂ ।୫

ହେ ବୃଷ୍ଣି ବଂଶ ଚୂଡ଼ାମଣି
ଆମ୍ଭର ଶିରେ ଦିଅ ପାଣି
ତୋହର କର ବ୍ରହ୍ମରଶି !
ଶରଣଜନ ଭୟନାଶି
ପଦ୍ମରୁଁ ଅତି ସୁକୁମାର
କମଳା ବରିଅଛି ବର ।୫

ବ୍ରଜଜନାର୍ତ୍ତିହନ ! ବୀର ! ଯୋଷିତାଂ
ନିଜଜନସ୍ମୟ ଧ୍ୱଂସନସ୍ମିତ !
ଭଜ ସଖେ ! ଭବତ୍କିଙ୍କରୀଃ ସ୍ମ ନୋ
ଜଲରୁହାନନଂ ଚାରୁ ଦର୍ଶୟ ।୬

ତୋହର ଆଶ୍ରେ ବ୍ରଜନାରୀ
ଏ ବନେ ତୋତେ ଅନୁସରି
ଆମ୍ଭର ଆରତ ବିନାଶ
ଯେ ତୋର ମୁଖେ ମନ୍ଦହାସ
ତୋର ସେବକ ଗର୍ବ ନାଶେ
ନିରକ୍ଷ ଜନଙ୍କୁ ଆଶ୍ୱାସେ
ତୋର ସେବକ ଆମ୍ଭେମାନେ
ତୋତେ ନ ଦେଖିଲେ ନୟନେ
ପଥ ନ ଦିଶେ ଖେଦକାଳେ
ବୁଡ଼ାଇ ଗଲୁ ଶୋକଜଳେ ।୬

ପ୍ରଣତଦେହିନାଂ ପାପକର୍ଷଣଂ
ତୃଣଚରାନୁଗଂ ଶ୍ରୀନିକେତନଂ ।
ଫଣିଫଣାର୍ପିତଂ ତେ ପଦାମ୍ବୁଜଂ
କୃଣୁ କୁଚେଷୁ ନଃ କୃନ୍ଧି ହୃଚ୍ଛୟଂ ।୭

ତୋହର ପଦ୍ମ ପାଦ ଦୁଇ
ବନେ ଗୋରୁଙ୍କ ପଛେ ଥାଇ
ପ୍ରଣତଦେହି ପାପ ନାଶ
ଜଳଧିତନୟା-ନିବାସ

ସହସ୍ରେ ଫଣା କାଳୟର
ସୁନ୍ଦର କଲ ଚରଣର
ଆମ୍ଭର କୁଚେ ତା ଲଗାଅ
କାମ-ଅନଳ ତୁ ଲିଭାଅ । ୭

ମଧୁରୟା ଗିରା ବଲ୍‌ଗୁବାକ୍ୟୟା
ବୁଧମନୋଜ୍ଞୟା ପୁଷ୍କରେକ୍ଷଣ !
ବିଧିକରୀରିମା ବୀର ! ମୁହ୍ୟନ୍ତି
ରଧରସୀଧୁନା-ପ୍ୟାୟୟସ୍ୱ ନଃ । ୮

ତୋହର ମଧୁର ବଚନ
ହୃଦେ ଭାବନ୍ତି ମୁନିଜନ
ଆମ୍ଭେ ତୋହର ପରିବାରି
ମୂର୍ଚ୍ଛିତ ହୋଇଲୁ ମୁରାରି
ତୋର ଅଧରୁଁ ସୁଧା ଦେଇ
ଜୀବନ ରଖ ଭାବଗ୍ରାହୀ । ୮

ତବ କଥାମୃତଂ ତପ୍ତଜୀବନଂ
କବିଭିରୀଡ଼ିତଂ କଲ୍ମଷାପହଂ ।
ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ
ଭୁବି ଗୃଣନ୍ତି ତେ ଭୂରିଦା ଜନାଃ । ୯

ତୋର ଚରିତ ସୁଧାବାରି
କବିଏ ଯାହା ପାନ କରି
ଜନ୍ମ ମରଣ ତାପ ନାଶେ
ଦୁରିତମାନ ଦେହୁଁ ଧ୍ୱଂସେ
ମଙ୍ଗଳ କରେ ଶ୍ରୁତି ପଥେ
ଯେ ଯାହା ବସ୍ତୁରେ ଜଗତେ
ଗୁଣଇ ହୋଇ ଭକ୍ତମତ୍ତ
ସେ ନର ଅଟେ ବଡ଼ ଦାତା । ୯

ପ୍ରହସିତଂ ପ୍ରିୟ ! ପ୍ରେମବୀକ୍ଷଣ
ବିହରଣଂ ଚ ତେ ଧ୍ୟାନମଙ୍ଗଳଂ ।
ରହସି ସମ୍ବିଦୋ ଯା ହୃଦିସ୍ପୃଶଃ
କୁହକ ! ନୋ ମନଃ କ୍ଷୋ ଭୟନ୍ତି । ୧୦

"ତୋ ଦରହସିତ ବଦନ,
କୋମଳ ମଧୁର ବଚନ,
ଧ୍ୟାନମଙ୍ଗଳ ତୋ ବିହାର
ଏକାନ୍ତ କଥା ହୃଦ୍‌ହାର,
କପଟ ପ୍ରାୟ ତୋର ଖିନ୍ତି"
ଆମ୍ଭର ମନ ଏ ଦହନ୍ତି । ୧୦

ଚଳସି ଯଦ୍ ବ୍ରଜାଚାରୟନ ପଶୂନ୍
ନଳିନସୁନ୍ଦରଂ ନାଥ ! ତେ ପଦଂ ।
ଶିଳତୃଣାଙ୍କୁରୈ ସୀଦତୀତି ନଃ
କଲିଲତାଂ ମନଃ କାନ୍ତ ! ଗଚ୍ଛତି ।୧୧

ତୁ ନାଥ ! ଗୋରୁଙ୍କର ମେଳେ
କାନନେ ଯାଉ ଯେତେବେଳେ
କୋମଳ ପ ଦପଦ ଗୃହି
ଆମ୍ଭର ହୃଦୟ ଦହଇ
କଣ୍ଟା ପାଷାଣ ତୃଣ ଲାଗି
ନ ପୁଣ ହୋଏ ଦୁଃଖଭାଗୀ
ଯେବେ ଲୋଚନେ ଦେଖୁଁ ତାହା
ତେବେ ସେ ସ୍ଥିର ହୋଏ ହିୟା ।୧୧

ଦିନପରିକ୍ଷୟେ ନୀଳକୁନ୍ତଳୈ-
ର୍ବନରୁହାନନଂ ବିଭ୍ରଦାବୃତଂ ।
ଘନରଜସ୍ୱଲଂ ଦର୍ଶୟନ୍ ମୁହୁ-
ର୍ମନସି ନଃ ସ୍ମରଂ ବୀର ! ଯଚ୍ଛସି ।୧୨

ବନୁ ଯେ ଆସୁ ବନ ଅନ୍ତେ
ବାହାର ହୋଇ ଦେଖୁଁ ପଥେ
କପୋଳେ କୁଟିଳ କୁନ୍ତଳ
ହୃଦେ ଲମ୍ବଇ ବନମାଳ
ଗୋରଜ ଦେଖି ତୋର ଦେହେ
ଆମ୍ଭ ଜୀବନ କାମ ଦହେ । ୧୨

ପ୍ରଣତକାମଦଂ ପଦ୍ମଜାର୍ଚ୍ଚିତଂ
ଧରଣିମଣ୍ଡନଂ ଧ୍ୟେୟମାପଦି ।
ଚରଣପଙ୍କଜଂ ଶନ୍ତମଂ ଚ ତେ
ରମଣ ! ନଃ ସ୍ତନେଷ୍ୱର୍ପୟାଧିହନ୍ । ୧୩

ତୋର ଅଭୟ ପଦ୍ମପାଦ
ଶରଣଜନଙ୍କ ସମ୍ପଦ
କମଳା ବନ୍ଦେ ନ ଛାଡ଼ଇ
ଆପଦକାଳେ ଯାହା ଧ୍ୟାୟି
ଅନେକ ସୁଖ ପ୍ରସରଇ
ରଖ ଆମ୍ଭଙ୍କ ସ୍ତନେ ଦେଇ । ୧୩

ସୁରତ ବର୍ଦ୍ଧନଂ ଶୋକନାଶନଂ
ସ୍ୱରିତ ବେଣୁନା ସୁଷ୍ଠୁ ଚୁମ୍ବିତଂ ।
ଇତରରାଗ ବିସ୍ମାରଣଂ ନୃଣାଂ
ବିତର ବୀର ନସ୍ତେଽଧରାମୃତଂ । ୧୪

ସୁରତପଣେ ବଳୀୟାର
ଶୋକ ବିନାଶେ ପ୍ରାଣୀଙ୍କର
ସୁସ୍ୱରେ ବେଣୁ ଯେ ଅଧରେ
ଜନ୍ମ ମରଣ ତାପ ହରେ
ତୁ ସେ ଅଧର ସୁଧାରସ
ଦେଇ ଆମ୍ଭର ମନ ତୋଷ । ୧୪

ଅଟତି ଯଦ୍ ଭବାନହ୍ନି କାନନଂ
ତ୍ରୁଟି ଯୁଗାୟତେ ତ୍ୱାମପଶ୍ୟତାଂ ।
କୁଟିଳକୁନ୍ତଳଂ ଶ୍ରୀମୁଖ ଞ୍ଚତେ
ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃଦ୍ ଦୃଶାଂ ।୧୫

ଗୋରୁ ଚରାଇ ଯାଉ ବନେ
ତୋତେ ନ ଦେଖିଲେ ନୟନେ
ନିମେଷ ଯୁଗପ୍ରାୟ ମଣୁଁ
ଗୁରୁ ଗୌରବକୁ ନ ଗଣୁଁ
ତୁ ଯେତେବେଳେ ଗୋପେ ପଶୁ
ପଥେ ମୁରଲୀନାଦ ଘୋଷୁ
କୁଟିଳ କୁନ୍ତଳ ବଦନ
ଦେଖି ନ ଚଳଇ ନୟନ । ୧୫

ପତିସୁତାନ୍ୱୟଭ୍ରାତୃ ବାନ୍ଧବା-
ନତିବିଲଂଘ୍ୟ ତେଽନ୍ତ୍ୟଚ୍ୟୁତାଗତାଃ ।
ଗତିବିଦସ୍ତବୋଦ୍ ଗୀତମୋହିତାଃ
କିତବ ! ଯୋଷିତ କସ୍ତ୍ୟଜେନ୍ନିଶି !୧୬

ପତି ତନୟ ବନ୍ଧୁ ଭାଇ
ଆମ୍ଭେ ଛାଡ଼ିଲୁଁ ତୋର ପାଇଁ
ସୁସ୍ୱରେ ବାଉ ବେଣୁ ଗୀତ
ଆମ୍ଭେ ହୋଇଲୁଁ ମୂର୍ଚ୍ଛିତ
ରାତ୍ରେ ଆଣିଲୁ ଘୋରବନେ
ଆମ୍ଭଙ୍କୁ ତେଜିଲୁ କେସନେ ?
ଏଡ଼େ ନିର୍ଦ୍ଦୟ ତୋ ଶରୀର
ବିଶ୍ୱାସ ନାଶିଲୁ ଆମ୍ଭର । ୧୬

ରହସି ସଂବିଦଂ ହୃଦୟୋଦୟଂ
ପ୍ରହସିତାନନଂ ପ୍ରେମବୀକ୍ଷଣଂ ।
ବୃହଦୁରଃଶ୍ରିୟୋ ବୀକ୍ଷ୍ୟ ଧାମ ତେ
ମୁହୁରତିସ୍ପୃହା ମୁହ୍ୟତେ ମନ । ୧୭

ଶୁଣି ତୋ ଏକାନ୍ତ ବଚନ
ହୃଦୟ ଦହଇ ମଦନ
ଅଳପହାସ ମୁଖ ଦେଖି
ପିଶୁଡ଼ ନ ପାରୁଁ ଯେ ଆଖି
ତୋହର ଶ୍ରୀମୁଖ ଅନାଇ
ଆମ୍ଭର ମନ ନ ରହଇ । ୧୭

ବ୍ରଜବନୌକସାଂ ବ୍ୟକ୍ତିରଙ୍ଗ ତେ
ବୃଜିନହନ୍ତ୍ର୍ୟଲଂ ବିଶ୍ୱମଙ୍ଗଳଂ ।
ତ୍ୟଜ ମନାକ୍ ଚ ନଃ ତ୍ୱତ୍ସ୍ପୃହାତ୍ମନାଂ
ସ୍ୱଜନହୃଦ୍ରୁଜାଂ ଯନ୍ନି ସୂଦନଂ । ୧୮

ଆମ୍ଭ ଆରତ ଖଣ୍ଡିବାରେ
ତୋହର ଜନ୍ମ ଗୋପପୁରେ
ମଙ୍ଗଳ କରଇ ସଂସାର
ହେଲେ ଗଞ୍ଜଇ ତମ ଘୋର
ତୋ ପାଦୁଁ ଅନ୍ୟ ଗତି ନାହିଁ
କରୁଣା ନ କର ଗୋସାଇଁ । ୧୮

ଯତ୍ତେ ସୁଜାତଚରଣା-
ମ୍ବୁରୁହଂ ସ୍ତନେଷୁ
ଭୀତାଃ ଶନୈଃ ପ୍ରିୟ ! ଦଧୀ-
ମହି କର୍କଶେଷୁ ।
ତେନାଟବୀମଟସି ତଦ୍
ବ୍ୟଥତେ ନ କିଂସ୍ୱିତ୍ !
କୂର୍ପାଦିଭିର୍ଭ୍ରମତି ଧୀ-
ର୍ଭବଦାୟୁଷାଂ ନଃ ।୧୯

ଯେବଣ ପାଦ ଆମ୍ଭେ ଧର
ସ୍ତନେ ନ ଛୁପୁଁ ଗୋପନାରୀ
କର୍କଶ ସ୍ତନ ଯେ ଆମ୍ଭର
ପ୍ରାସ କରିବ ବୋଲି ଡ଼ର
ସେ ପାଦ ଯେନ ତୃଣାଙ୍କୁରେ
ଯେଉଁତ ବୁଲିଲୁ କୁଞ୍ଜଘୋରେ
ନ ପୁଣ କ୍ଷତ ହୋଏ ପାଦ
ମନରେ ନ ଲଭୁ ବିଷାଦ । ୧୯

ତୋହର ଦାସ ଜଗନ୍ନାଥ
ସେ ପାଦେ ରଖ ଗୋପୀନାଥ
ବୁଡ଼ିଲି ଘୋର ଭବଜଳେ
ଉଦ୍ଧରି ଥୁଅ ନେଇ କୂଳେ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ
ଗୋପୀଗୀତଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ । ୩୦ ।



## ତ୍ରୟସ୍ତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୨ଶ ଅଧ୍ୟାୟ )

ଦ୍ୱାତ୍ରିଂଶେ ବିରହାଳାପ-ବିକ୍ଳାନ୍ତହୃଦୟୋହରିଃ ।
ତତ୍ରାବିର୍ଭୂୟ ଗୋପୀସ୍ତାଃ ସାନ୍ତ୍ୱୟାମାସ ମାନୟନ୍ ॥ ୦ ॥

ଗୋପୀଙ୍କ ଆର୍ତ୍ତବାଣୀ ଶୁଣି । ସଦୟେ ମିଳି ନୀଳମଣି ।
ସାନ୍ତ୍ୱନା କଲେ ଗୋପୀଗଣ । ତେତିଶ ଅଧ୍ୟାୟେ ବର୍ଣ୍ଣନ ॥ • ॥

ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାମୁନି
ଶୁଣ ରାଜନ ଚୂଡ଼ାମଣି
ଏମନ୍ତେ ବନେ ଗୋପନାରୀ
କାନ୍ଦନ୍ତି କୃଷ୍ଣନାମ ଧରି
ଜୀବନ କୃଷ୍ଣପାଦେ ଦେଇ
ରହି ଆକାଶ ନ ରହଇ । ୧
ଶରଣ ରକ୍ଷଣ ଗୋପାଳ
ଦେଖନ୍ତି ଗୋପୀଙ୍କ ବିକଳ
ଭାବକୁ ନିକଟ ମୁରାରି
ଗର୍ବ ଯେ କଲେ ଗୋପନାରୀ
ବନେ ଅନେକ ଦୁଃଖ ଦେଇ
ତୋଷ ହୋଇଲେ ଭାବଗ୍ରାହୀ
ଯେସନେ ଚଞ୍ଚଳ ବିଜୁଳି
ଗୋପୀଙ୍କ ମଧ୍ୟେ ଆସି ମିଳି
ନୀଳ ଶରୀର ପୀତବାସ
ମୁଖପଙ୍କଜେ ମନ୍ଦହାସ
କଣ୍ଠେ ଲମ୍ବଇ ବନମାଳ
ସୁନ୍ଦର ମଦନଗୋପାଳ । ୨

ଭୃଙ୍ଗ ବିସ୍ତାରି ନରହରି
ଡାକନ୍ତି ଆସ ଗୋପନାରି !
ଗୋପୀ ଚିହ୍ନିଁଲେ ତାହା ଶୁଣି
ମଧ୍ୟେ ବିଜୟ ଚକ୍ରପାଣି
ଜୀବନ ପାଇଲେ ସକଳେ
ଗୋପୀ ଉଠିଲେ ଏକାବେଳେ
ପତଙ୍ଗେ ଅନଳକୁ ଚିହ୍ନିଁ
ଯେହ୍ନେ ଝାଡନ୍ତି ବେଗ ହୋଇ
ବହନ ବେଢିଲେ ମୁରାରି
ଧନ୍ୟ ଜୀବନ ବ୍ରଜନାରୀ । ୩
ଅଙ୍ଗୁଳି ଛନ୍ଦନ୍ତି କେ କରେ
ଚରଣ ଭିଡ଼ନ୍ତି ନିର୍ଭରେ
ପଣନ୍ତେ ବାନ୍ଧି ବନମାଳୀ
ଆନନ୍ଦେ ଦେଲେ ହୁଳହୁଳି
କେ କୁଚପରେ ଆଲିଙ୍ଗନ
କେ ମୁଖେ ଦିଅନ୍ତି ଚୁମ୍ବନ । ୪
ଏକେ ଗୋପୀ ଅଧରେ ଅଧର
ତାମ୍ବୁଳ କରନ୍ତି ଆହାର
କେ ଗୋପୀ ବେନି ପାଦ ତୋଳି
ସ୍ତନେ ଥୁପନ୍ତି ଗୋପବାଳୀ । ୫

କେ ଗୋପୀ ହୃଦେ କର ଯାକି
କଟାକ୍ଷ କରି ଚାହେଁ ଆଖି
କେ ଦୂରୁ ଚାହେଁ କୋପ କରି
ସୁରଙ୍ଗ ଅଧର କାମୋଡ଼ି । ୬
କେ ଯାଇ ନ ପାରେ ଗହଳେ
ଧୀରେ ଚାହିଁଇ ବେନି ଢୋଳେ
ଚକ୍ଷୁ ବୁଜିଲା ରସଭରେ
ଗୋବିନ୍ଦେ ଦେଖିଲା ଭିତରେ
ଅନ୍ତ୍ରାଳ କଲା ଆଲିଙ୍ଗନ
ତାପ ଛାଡ଼ିଲା ଖେଦମନ । ୭
କେ ରୂପ ଦେଖି ଚକ୍ଷୁବୁଜି
ପୁଲକ କଲା ରୋମରାଜି
ଆନନ୍ଦ ମନେ ଧ୍ୟାନ କଲା
ଯୋଗୀଙ୍କ ପ୍ରାୟେ ସେ ରହିଲା
କୃଷ୍ଣର ଦର୍ଶନେ ଆନନ୍ଦ
ଛାଡ଼ିଲେ ନିତ୍ୟ ମନ ଖେଦ
ବ୍ରହ୍ମ ସମାଧି ଲଭି ଜନେ
ନିଶ୍ଚଳ ହୋନ୍ତି ଯୋଗଧ୍ୟାନେ । ୮,୯
ତକ୍ଷଣେ ଉଠିଲେ ମୁରାରି
ଆବୋରିଛନ୍ତି ବ୍ରଜନାରୀ
ବ୍ରହ୍ମ ଯେସନେ ଗୁଣବନ୍ତ
ଅଧିକ ଶୋଭି ଗୋପୀନାଥ । ୧୦
ଗୋପୀଙ୍କି ଘେନି ବନମାଳୀ
ଯମୁନା ବାଲିକୁଦେ ମିଳି
କୁନ୍ଦ ମନ୍ଦାର ଫୁଲ ଗନ୍ଧ
ଝଙ୍କାରେ ଭ୍ରମର ସମ୍ପଦ
ଶରଦଚନ୍ଦ୍ର ଯେହ୍ନେ ଝଳି
ନିର୍ମଳ ବିରାଜଇ ବାଲି
କୃଷ୍ଣର ପାଇ ଅଙ୍ଗସଙ୍ଗ
ତାପ ଛାଡ଼ିଲେ ଗୋପୀବୃନ୍ଦ
ବ୍ରହ୍ମ ବସ୍ତୁରେ ଜ୍ଞାନ ପାଇ
ଯେହ୍ନେ ପଣ୍ଡିତ ତୋଷ ହୋଇ
ପାଲଟି ପାଡ଼ିଲେ ବସନ ।
କୃଷ୍ଣଙ୍କୁ ବସାଇ ଆସନ । ୧୧-୧୩
ଯାହାକୁ ହୃଦେ ଯୋଗୀଜନେ
ବସାନ୍ତି କଳ୍ପିତ ଆସନେ
ଗୋପୀଙ୍କ ଭାବ ହୃଦେ ଘେନି
ମଧ୍ୟେ ବିଜୟେ ଚକ୍ରପାଣି
ଅଶେଷ ବ୍ରହ୍ମାଣ୍ଡ ଠାକୁର
ରୂପେ କି ଦେବା ପଟାନ୍ତର
କୃଷ୍ଣ ବସାଇ ଗୋପୀଜନେ
ଚାହାନ୍ତି କଟାକ୍ଷ ନୟନେ
ହରିର ବେନି ଭୁଜ ଧରି
କୋପେବୋଲନ୍ତିଗୋପନାରୀ ।୧୪,୧୫
ବୋଲନ୍ତି ଶୁଣ ପ୍ରାଣନାଥ
ଆମ୍ଭେ ଦେଖିଲୁ ବିପରୀତ
ଭଜନ୍ତା ଜନେ କେ ଭଜଇ
ନ ଭଜିଲେ ବା ଭଜେ କେହି
ହେ ନାଥ ! ତୋହର ପରାୟେ
ଭାବେ ନ ଭଜନ୍ତି ଥୋକାଏ
ସେ ବେନି କୁଳ ନ ଭଜନ୍ତି
ହେ ନାଥ ! ଫେଡ଼ ମନୁଁ ଭ୍ରାନ୍ତି । ୧୬
ଶୁଣି ବୋଲନ୍ତି କୃଷ୍ଣ ହସି
ବରଜଯୁବତୀ ଆଶ୍ୱାସି
ଶୁଣ ସକଳ ଗୋପନାରୀ
ଯେ ଯାହା ଭାବେ ପ୍ରୀତି କରି
ଏକ ଆରେକ ଉପକାରେ
ଭଜନ୍ତି ସଂସାର ବେଭାରେ
ତହିଁ ସୁହୃଦ, ଧର୍ମ ନାହିଁ
ଭାବ ଦେଖିଲେ ନ ଛାଡ଼ଇ । ୧୭

ଭାବ ନ ଦେଖିଲେ ଭଜଇ
ତାତ ଜନମା ପ୍ରାୟ ହୋଇ
ତାଙ୍କର ବୋଲ ବଡ଼ ପଣ
ସେ ପାଇ ବସ୍ତୁର ଚରଣ । ୧୮
ଥୋକେ ଭଜିଲେ ନ ଭଜନ୍ତି
ଆତ୍ମା ବଡ଼ିମା ପ୍ରକାଶନ୍ତି
ସେ ଗୁରୁ ଦ୍ରୋହ ପାପ ପାଇ
କି ଅବା ଆତ୍ମାରାମ ସେହି । ୧୯
ଶୁଣ ଗୁଆଳୀ ସାବଧାନେ
ମୋତେ ଭଜନ୍ତି ଯେତେ ଜନେ
ତାହାଙ୍କୁ ଭଜେ ଅବା ନାହିଁ
ମୋତେ ସେ ଭକତ ଜାଣଇଁ
ମୋତେ ଭକତି ଯେ କରନ୍ତି
ଏମନ୍ତ ହୋଏ ତାଙ୍କ ମତି
ଦରିଦ୍ର ଯେହ୍ନେ ଧନ ପାଇ
ପ୍ରାଣୁ ଅଧିକ ସମ୍ଭାଳଇ
ପୁଣି ହରାଇ ସେହି ଧନ
ବିଷାଦ ହୋଏ ତାର ମନ
ଭାଳଇ ଧନେ ମନ ଦେଇ
କ୍ଷୁଧା ତୃଷାହିଁ ନ ଲାଗଇ
ଯେସନେ ହୋଇ ମୋର ଲୋକେ
ଭକତି କରୁଥାନ୍ତି ଥୋକେ । ୨୦

ତୁମ୍ଭେ ତେମନ୍ତ ପ୍ରାୟ ହୋଇ
ମୋହର ପଦେ ଚିତ୍ତ ଦେଇ
ଲୋକ ବେଭାର ବେଦ ପଥ
ଗୁଡ଼ି ଭଜିଲ ଅବିରତ
ପଛେ ମୁଁ ଥାଇ ତୁମ୍ଭ ତୁଲେ
ଭକତି ଜାଣିଲଇଁ ଭଲେ
ମୋତେ ନ କର ତୁମ୍ଭେ ଦ୍ୱେଷ
ମୁଁ ତୁମ୍ଭ ପୂରାଇବି ଆଶ । ୨୧
ତୁମ୍ଭର ଭାବ ମୁଁ ଜାଣଇ
ଛନ୍ଦ କୁଟିଳ ମାୟା ନାହିଁ
ଅନେକ କାଳେହେଁ ତୁମର
ଶୁଝି ନ ପାରେ ଉପକାର
ଗୃହର ମାୟାର ଶୃଙ୍ଖଳୀ
ଭାବେ କାଟିଲ ଗୋପ ବାଳୀ !
ତୁମ୍ଭର ଜନ୍ମ ବନ୍ଧ ନାହିଁ
ମୋତେ କିଣିଲ ଭାବ ଦେଇ
ମୋର ଭକତି ଯେ ଲୋଡ଼ନ୍ତି
ସେ ମୋର ପଥ ଆଚରନ୍ତି
ମୁହିଁ ଠାକୁର ତାହାଙ୍କର
ସୁଜନ ଜନଙ୍କ ବେଭାର
କହଇ ଦାସ ଜଗନ୍ନାଥ
ମୁଁ କୃଷ୍ଣ ସେବକର ଭୃତ୍ୟ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣବିଜୟେ ନାମ ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ॥ ୩୩ ॥



# ଚତୁଃତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୩ଶ ଅଧ୍ୟାୟ )

ତ୍ରୟସ୍ତ୍ରିଂଶେ ତତୋ ଗୋପୀ-ମଣ୍ଡଳୀମଧ୍ୟଗୋ ହରିଃ ।
ପ୍ରିୟାସ୍ତା ରମୟାମାସ ହ୍ରାଦ୍ୱିମାବନକେଳିଭିଃ । ୦ ।

ରାସ ଲୀଳାର ନାନାରସ । ଚତୁଃତ୍ରିଂଶରେ ସୁପ୍ରକାଶ । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ ତନୁଜ
ଶୁଣ ପରୀକ୍ଷ ମହାରାଜ !
ଗୋପୀ ଯେ କୃଷ୍ଣବୋଲ ଶୁଣି
ଚିନ୍ତା ଛାଡିଲେ ମନେ ଗୁଣି । ୧
ସେ କାଳକୁଦେ ହୃଷୀକେଶ
ଆରମ୍ଭ କଲେ କେଳି ରସ
ରସ ଉତ୍ସବେ ବ୍ରଜନାରୀ
ଏକର କର ଆରେ ଧରି
ଅନନ୍ତ ମାୟା ଯୋଗ କରି
ଷୋଳ ସହସ୍ର ରୂପ ଧରି
ଗୋପୀକେ ଗୋବିନ୍ଦ ଗୋଟିଏ
ଦେଖନ୍ତି ସ୍ୱର୍ଗେ ଦେବତାଏ । ୨,୩
କେ କଣ୍ଠତଟେ ଭିଡ଼ି ରୋଷେ
ଚୁମ୍ବନ ଦିଅନ୍ତି ହରଷେ
କୃଷ୍ଣର ଦେଖି କ୍ରୀଡ଼ାରସ
ବିବଶେ ହୋଇଲେ ହରଷ । ୪
ଗନ୍ଧର୍ବ ଯକ୍ଷ ଅପସରୀ
ବିମାନେ ଗଗନେ ସଞ୍ଚରି
ଦେଖନ୍ତି ଗୋବିନ୍ଦର କେଳି
ସକଳ ସ୍ୱର୍ଗଲୋକେ ମିଳି
ଦୁନ୍ଦୁଭି ନାଦ ଗୀତ ସ୍ୱରେ
କୁସୁମ ବରଷନ୍ତି ଶିରେ
ଗନ୍ଧର୍ବ ଅପସରୀ ମେଳେ
ନୃତ୍ୟ କରନ୍ତି ରସ ଖେଳେ । ୫ ।
ହରି ବିନୋଦ ବ୍ରଜନାରୀ
ଆନନ୍ଦେ ବୃନ୍ଦାବନେ ପୂରି
ବଳୟ ନୂପୁର ଶବଦେ
କିଙ୍କିଣୀ ତାଳ ଗୀତ ନାଦେ
କେହି ନ ଶୁଣନ୍ତି ଚହଳ
କୃଷ୍ଣର ମାୟା ଯୋଗବଳ । ୬
ନୀଳ ମର୍କତ ମଧ୍ୟେ ହରି
ବେଢିଛୁ ସୁବର୍ଣ୍ଣ ପାଟେଶ୍ୱରୀ
ଗୋପୀଙ୍କ ମଧ୍ୟରେ ଶ୍ରୀରଙ୍ଗ
ସୁନ୍ଦର କୋଟିଏ ଅନଙ୍ଗ । ୭
ନୃତ୍ୟ କରନ୍ତି ଗୋପନାରୀ
ଗୀତେ ମୋହିଲେ ନରହରି
ପାଦ ଚଳନ୍ତି ଅଙ୍ଗଭଙ୍ଗେ
ଭ୍ରୂକୁଟି କୁଟିଳ ଅନଙ୍ଗେ
କୁଚମଣ୍ଡଳୁଁ ବସ୍ତ୍ର ଟଳି
ନାଚନ୍ତି ଦେଇ କରତାଳି
ମୁଖେ ଶୋଭଇ ଶ୍ରମଝାଳ
କବରୀ ଖସି ଫୁଲମାଳ

ବସ୍ତ୍ର ପଡ଼ଇ ଫିଟି ତଳେ
କଟୀମେଖଳା ଅସମ୍ଭାଳେ
ବିଜୁଳି ଯେସନ୍ତେ କଳା ମେଘେ
ବିଶନ୍ତି ଗୋବିନ୍ଦର ଲଗେ । ୮
ଗୋପୀଏ ମିଳି ନୃତ୍ୟରସେ
ଗାବନ୍ତି ଗୀତ ମନ ତୋଷେ
ଅତି ସୁସ୍ୱରେ କଲେ ଗାନ
ଶବଦ ଆବୋରିଲା ବନ । ୯
ଏକ ଗୋପୀକା କୃଷ୍ଣ ସଙ୍ଗେ
ଆଳାପ କଲା ଗୀତ ରଙ୍ଗେ
ଷଡଜ ଆଦି ପଞ୍ଚ ସ୍ୱର
ମୋହିଲା କମଳାର ବର । ୧୦
ସେ ନାଦ ଘେନି ଆଉ ଗୋପୀ
ଆଳାପ କଲକ ନିରୋପି
ଧ୍ରୁବ ତାଳରେ ବିଶ୍ରାମିଲା
ସାଧୁ ବୋଲନ୍ତି ନନ୍ଦବଳା । ୧୧
କେ ଶ୍ରମେ କୃଷ୍ଣପାଶେ ଥାଇ
ଭୁଜେ ଆଲିଙ୍ଗନ କରଇ
କୃଷ୍ଣର କନ୍ଧେ ଦେଇ ହସ୍ତ
ଶିଥିଳ ହେଲା ଝୀନ ବସ୍ତ୍ର
କବରୀ ଫିଟି ଫୁଲମାଳେ
ଅବନୀ ପଡ଼ିଲେ ଗହଳେ । ୧୨
କୃଷ୍ଣର ଭୁଜ ଧରି ଗୋପୀ
ଆଘ୍ରାଣ କଲା ଶ୍ୱାସ କ୍ଷେପି
ଚନ୍ଦନେ ଶ୍ୟାମଳିଆ ହୋଇ
ଉତ୍ପଳ ପ୍ରାୟେକ ବାସଇ
ଆଘ୍ରାଣ କରି ନାସାଦ୍ୱାରେ
ରୋମାଞ୍ଚ ହୋଇଲା ଶରୀରେ । ୧୩
କେ ଗୋପୀ ନାଚି ଶ୍ରମ ପାଇ
ଗୋବିନ୍ଦ କଣ୍ଠମୂଳେ ଯାଇ-
କୁଣ୍ଡଳ ତଳେ ମୁଖ ଦେଲା
ଚୁମ୍ବନ୍ତେ ତାମ୍ବୁଳ ପାଇଲା । ୧୪
କେ ଭୁଜ ଧରି କୁଚେ ଗୁପି
କେ ମୁଖେ ଚୁମ୍ବନ୍ତି ନିରୋପି
କଟୀମେଖଳା କ୍ଷୁଦ୍ର ଘଣ୍ଟି
ଶବଦ କରି ନୃତ୍ୟେ ଫୁଟି
ଗୋବିନ୍ଦ କର ଦେଇ ଶିରେ
ଶ୍ରମ ଗୁଡ଼ିଲେ ସୁଖଭରେ । ୧୫
କୃଷ୍ଣଙ୍କୁ କାନ୍ତପଣେ ପାଇ
ଗୋପୀ ରମିଲେ ତୋଷ ହୋଇ
ହରିର କଣ୍ଠେ ଭୁଜ ଦେଇ
ତୋଷେ ରମିଲେ ଗୀତ ଗାଇ । ୧୬
ମିଳି ଉତ୍ପଳ ଗୋପୀକର୍ଣ୍ଣେ
ଅଳକେ ଶୋଭେ ଝାଳ ଶ୍ରମେ
ବଳୟ ନୂପୁର ଶବଦେ
ଗୋବିନ୍ଦ ନାଚନ୍ତି ଆନନ୍ଦେ
ଭ୍ରମର ବାଦ୍ୟେ ନୃତ୍ୟ କରି
ରାସଉତ୍ସବେ ବ୍ରଜନାରୀ
କବରୀ ଫିଟି ଫୁଲମାଳ
କଟୀମେଖଳା ଅସମ୍ଭାଳ । ୧୭
ଏମନ୍ତେ ନାନା ରସ ବନ୍ଧେ
ଗୋବିନ୍ଦ ରମିଲେ ଆନନ୍ଦେ
ବାଳକ ନିଜ ବିମ୍ବ ଦେଖି
ଖେଳଇ ଯେସନ୍ତେ ହୋଇ ସୁଖୀ । ୧୮
କୃଷ୍ଣର ଅଙ୍ଗସଙ୍ଗ ଲାଗି
ଗୋପୀ ହୋଇଲେ ସଉଭାଗୀ
କେଶ, ବସନ, ସ୍ତନବାସ,
ଖସିଲେ ଭୂଷଣ ଅଶେଷ । ୧୯
କୃଷ୍ଣର କ୍ରୀଡ଼ାରସ ଦେଖି
ବିବୁଧବଧୂ ଜନେ ସୁଖୀ

ନକ୍ଷତ୍ରଗଣ ଚନ୍ଦ୍ର ସଙ୍ଗେ
ସକଳେ ପୀଡ଼ିଲେ ଅନଙ୍ଗେ । ୨୦
ଗୋପୀକେ କୃଷ୍ଣ ରୂପ ହୋଇ
ଲୀଳା ବିନୋଦେ ଭାବଗ୍ରାହୀ
ଯାହାର ନାହିଁ ରୂପ ରେଖ
ଗୋପୀଙ୍କି ଦେଲେ ଆତ୍ମାସୁଖ । ୨୧
ଗୋପୀଙ୍କ ମୁଖେ ଶ୍ରମ ଚହିଁ
ପୋଛନ୍ତି କରେ ଭାବଗ୍ରାହୀ । ୨୨
ସେ ଯାହା ଅଳଙ୍କାର ଭରି
ଗୋପୀ ବୃତ୍ତାନ୍ତ ନରହରି
କୃଷ୍ଣର ଲାଗି ନଖକ୍ଷତ
ଆନନ୍ଦେ ଦେହେ ପୁଲକିତ
କୃଷ୍ଣର କର୍ମ ଗୁଣ ମୁଖ
କହନ୍ତି ଏକକୁ ଆରେକ । ୨୩
ବ୍ରଜକାମିନୀ ଘେନି ସଙ୍ଗେ
ସ୍ତନକୁଙ୍କୁମ କୃଷ୍ଣ ଅଙ୍ଗେ
କରଣୀଯୂଥେ ଗଜ ଯେହ୍ନେ
ଗୋପୀଙ୍କ ଶ୍ରମ ଜାଣି ମନେ
ପଶିଲେ କାଳନ୍ଦୀ ଭିତରେ
ଗନ୍ଧର୍ବେ ଗାବନ୍ତି ସୁସ୍ୱରେ । ୨୪
ଗୋବନ୍ଦଦେହେ ଗୋପନାରୀ
ଜଳ ସିଞ୍ଚନ୍ତି କରେ ଧରି
କଟାକ୍ଷେ ଚାହାନ୍ତି ଶ୍ରୀମୁଖ
ଖଣ୍ଡିଲେ ଜନ୍ମବନ୍ଧ ଦୁଃଖ
ବିମାନେ ଥାଇ ଦେବନାରୀ
ପୁଷ୍ପ ବରଷି ସ୍ତୁତି କରି । ୨୫
ଗଜେନ୍ଦ୍ର ପ୍ରାୟେ ରଙ୍ଗ ମେଳେ
ଲୀଳା ବିନୋଦେ ନଦୀଜଳେ
ଚନ୍ଦ୍ର କିରଣ ବନଭୂମି
ସୁନ୍ଦର ପ୍ରକାଶେ ଯାମିନୀ
ଗୋପ ଅବଳା ଘେନି ସଙ୍ଗେ
ହରି ରମିଲେ ଆତ୍ମାରଙ୍ଗେ
ଯାହାର ନାହିଁ ରସଚ୍ୟୁତ ।
ଅଚ୍ୟୁତ ନାମ ଯେଣୁ ଖ୍ୟାତ ।୨୬,୨୭
ଶୁଣି ଅଭିମନ୍ୟୁ ନନ୍ଦନ
ଚହିଁଲା ଶୁକଙ୍କ ବଦନ
ସଂଶୟେ କହଇ ମଧୁର
ଚରଣେ ଦେଇ ନେତ୍ରକର
ହେ ମୁନି ! ଅସମ୍ଭବ ବାଣୀ
ସଂଶୟ ଲାଗିଲାଚି ଶୁଣି
ମନୁଷ୍ୟ ଅଂଶେ ଜନ୍ମ ହୋଇ
ଅଶେଷ ବ୍ରହ୍ମାଣ୍ଡ ଗୋସାଇଁ
ଅଧର୍ମ ନାଶିବାର ଆଶେ
ରୂପ ହୋଇଲେ ଯେବେ ଅଂଶେ
ଧର୍ମ ପାଳକ ନରହରି
ସେ କପାଁ ଅଧର୍ମ ଆଚରି ? । ୨୮
ଜଗତ ଜନ ଗୁରୁ ପିତା
ଗତି ଅଗତି ଇଷ୍ଟଦାତା
ଯା ନାମ ମୁକତି ପସରା
ସେ କପାଁ କଲେ ପରଦାରା ? । ୨୯
ନିଜ ମହିମା ଆତ୍ମାରତ
ସେ କପାଁ କଲେ ବିପରୀତ
କି ଅଭିପ୍ରାୟେ, ନ ଜାଣଇଁ
ସଂଶୟ ଛେଦ ମୋ ଗୋସାଇଁ । ୩୦
ରାଜାବଦନ ଚହିଁ ମୁନି
କହନ୍ତି କୃଷ୍ଣଭାବ ଘେନି
ଶୁଣ ରାଜନ ଭାଗବତ
ଏ ବଡ଼ ଲୋକଙ୍କରମତ
ଏହାଙ୍କ କର୍ମ ବିପରୀତ
ଯେଣୁ ଏ ତେଜେ ବଳବନ୍ତ

ତେଣୁଟି ଦୋଷ ଗୁଣ ନାହିଁ
ଅଗ୍ନି ଯେମନେ ସର୍ବଖାଇ । ୩୧
ଏହାଙ୍କ ମତ ଯେ ଆଚର
ମନ ବଚନେ ଦେହଧର
ଯେତେବ କରିବେ ମୂଢ଼ପଣେ
ନାଶ ହୋଇବେ ତତକ୍ଷଣେ
ଜଳଧି ମନ୍ଥନରୁ ବିଷ
ରୁଦ୍ରହିଁ ଅନ୍ୟେ ନୋହେ ଗ୍ରାସ । ୩୨
ଏହାଙ୍କ ବଚନହିଁ ସତ
ଆନେ ନ କରନ୍ତୁ ଏମନ୍ତ
ଯେ ବୁଦ୍ଧିବନ୍ତ ସାଧୁ ଧୀର
ସେ ନ କରିବେ ଏ ବେଭାର
ଈଶ୍ୱର ଆଜ୍ଞଙ୍କର ମତ
ଅଳପ ଜନେ ବିପରୀତ । ୩୩,୩୪
ପଶୁ ମନୁଷ୍ୟ ଦେବଙ୍କର
ଈଶ୍ୱରଙ୍କର ଯେ ଈଶ୍ୱର
ଯାହାର ଦେହ ବୁଦ୍ଧି ନାହିଁ
ଶୁଭ ଅଶୁଭ ତାର ନାହିଁ । ୩୫
ଯାହାର ପଦ୍ମପାଦ ଧୂଳି
ଆନନ୍ଦ ହୋଇ ଶିରେ ଘେନି
ନିଷ୍କଳ ଯୋଗେ ଶ୍ରମକରି
କର୍ମ ନାଶନ୍ତି ବ୍ରହ୍ମଚାରୀ
ତାହାର ଜନ୍ମ ବନ୍ଧ କାହିଁ
ଇଚ୍ଛାସମ୍ପଦ ଯାର ଦେହି । ୩୬
ଗୋପୀ ଗୋପାଳ ଆଦି କରି
ଜନ ଜୀବନ ଯେ ଆବୋରି
ଭକତ ଜନ ତାରିବାରେ
ଯେ ଜାତ ମନୁଷ୍ୟ ଶରୀରେ
ତାର ଚରିତ ମନେ ଚିନ୍ତ
ଭକତି ପଥ ଆବୋରନ୍ତି । ୩୭,୩୮

ପାଶେଣ ଥିଲୁ ପ୍ରାୟ ମଣି
ଗୋପାଳେ ଦେଖନ୍ତି ତରୁଣୀ
ଗୋପେ ଗୋବିନ୍ଦ ମାୟା ମୋହି
କୋପ ନ କଲେ ତାଙ୍କୁ ଗୃହୀ । ୩୯
ଏମନ୍ତେ ରଜନୀ ପାହିଲା
ଗଗନେ ଅରୁଣ ଦିଶିଲା
କୃଷ୍ଣର ଅଙ୍ଗସଙ୍ଗ ପାଇ
ଗୋପୀଏ ଗଲେ ତୋଷ ହୋଇ
କୃଷ୍ଣର ପାଦେ ଦେଇମନ
ମିଳିଲେ ଯେ ଯାହା ଭୁବନ । ୪୦
ଗୋପେ ଗୋବିନ୍ଦ କେଳି ବନେ
ଏଣେ ଯେ ହୋଇ ସାବଧାନେ
ଭକତି ହୃଦେ ପରିମାଣି
ସକଳ ଦୁଃଖରୁ ସେ ତରେ
ସେ ନ ପଡ଼ଇ ମାୟା ଘୋରେ । ୪୧
ବୋଲଇ ଦାସ ଜଗନ୍ନାଥ
ରାସ ଉତ୍ସବ ଭାଗବତ
ସୁଜନ ଜନେ ଏହା ଚିନ୍ତ
ଏତେ ଛାଡ଼ିବ ମନ ଭ୍ରାନ୍ତ
ଭକତି ହୋଇବ ଭ୍ରମର
ହେଲେ ତରିବ ତମ ଘୋର
ମୋ ଛାର ହୀନ ମୂଢ଼ପଣେ
ସେବଇ ଭ୍ରମର ଚରଣେ
ମୋହର ନ ଘେନିବା ଦୋଷ
ଗୀତେ କହିଲି କୃଷ୍ଣ ରସ ।
ପୁରାଣ କଲି ଗୀତ ରସ
ଯାହା କହିଲେ ପୀତବାସ
କେ ତାହା କରିବଟି ଆନ
ସବୁରି ପ୍ରଭୁ ଭଗବାନ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ା ସମାପ୍ତି ବର୍ଣ୍ଣନଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥ ୩୪ ॥

# ପଞ୍ଚତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୪ଶ ଅଧ୍ୟାୟ )

ଚତୁଃତ୍ରିଂଶେଽସ୍ମିନା ଗ୍ରସ୍ତଂ ନନ୍ଦଂ ହରିରମୂମୁଚତ୍
ବିଦ୍ୟାଧ୍ରଂ ଚ୍ଛଙ୍ଗିଇଃଶାପାତ୍ ଶଙ୍ଖଚୂଡ଼ଂ ତଥାବଧୀତ୍ । ୦ ।

ନନ୍ଦଙ୍କୁ ସର୍ପମୁଖୁଁ ତାରି । ବିଦ୍ୟାଧରଙ୍କୁ ମୁକ୍ତକରି
କରିଲେ ଶଙ୍ଖଚୂଡ଼ ବଧ । ପଞ୍ଚତିରିଶେ ଏ ସମ୍ବାଦ । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ପୁଣ୍ୟକର୍ମା
ଶୁଣ ହେ ଶ୍ରୀକୃଷ୍ଣ ମହିମା
ଅନେକ ନନ୍ଦ ଆଦି ଗୋପେ
ତୀର୍ଥ ଉତ୍ସବ କଉତୁକେ
ଅମ୍ବିକା ପୂଜାର ବିଧାନେ
ଗୋପୀ ଗୋପାଳ ତୋଷମନେ
ଶକଟେ ନାନାଦ୍ରବ୍ୟ ଭରି
ଗୋପୁଁ ବାହାର ନରହରି । ୧
କାନନେ ମିଳିଲେ ସକଳେ
ନିର୍ମଳ ସରସ୍ୱତୀ ତୀରେ
ଗୋପାଳେ ନିତ୍ୟକର୍ମ ସାରି
ପୂଜିଲେ ଶଙ୍କର ଗଉରୀ । ୨
ବିବିଧ ନାନା ଉପହାରେ
ତୋଷିଲେ ଭବାନୀ ଶଙ୍କରେ
ଗୋରୁ କାଞ୍ଚନ ମିଷ୍ଟ ଅନ୍ନ
ଶିବସନ୍ତୋଷେ ଦେଲେ ଦାନ
ବୋଲନ୍ତି, ଦେବ ! ତ୍ରିଲୋଚନ !
ଆମ୍ଭରେ ହୋଇବା ପ୍ରସନ୍ନ । ୩

ଆନନ୍ଦେ ବଞ୍ଚିଲେ ଦିବସ
ନୃତ୍ୟ ଖଟଣୀ ଗୀତ ରସ
ବ୍ରତ ଆଚରି ଶୁଭମନ୍ତେ
ସେ ବନେ ଶୋଇଲେ ସମସ୍ତେ
ନନ୍ଦ ସୁନନ୍ଦ ଆଦିକରି
ଗୋପରେ ଯେତେ ନରନାରୀ । ୪
ରଜନୀ ହୋଇଲା ଅନ୍ଧାର
ଯଶୋଦା କୋଳେ ଦାମୋଦର
ଘୋର ଅନ୍ଧାର ଅର୍ଦ୍ଧନିଶୀ
ସର୍ପେ ମିଳିଲା ବେଗେ ଆସି
କେହି ନ ଦେଖିଲେ ନୟନେ
ମିଳିଲା ନନ୍ଦର ନୟନେ
ମୁଖ ବିସ୍ତାରି ମହାକାୟେ
କୋପେ ଗିଳିଲା ମୁଣ୍ଡପାଏ । ୫
ସର୍ପ ଉଦରେ ଥାଇ ନନ୍ଦ
ବିକଳେ ଡାକଇ ଗୋବିନ୍ଦ
ହେ କୃଷ୍ଣ ! ସର୍ପ ବଳୀୟାର
ଗିଳିଲା ମୋହର ଶରୀର
ବଦନ ଆସ ବେନଘାଇ
ପିତା ତୁମ୍ଭର ନାଶ ଯାଇ

ନନ୍ଦର ଦେଖିଣ ବିକଳ
ଗୋପାଳେ ପାଡ଼ନ୍ତି ଚହଳ
ଉଠି ଧାଇଁଲେ ଧାଡିକାରେ
ପୋଡ଼ିଲା କାଷ୍ଠ ଘେନ କରେ । ୬,୭
ସର୍ପ ଉପରେ ନେଇ ପିଟି
ନନ୍ଦ ଶରୀର ଅଛୁ ଘୋଟି
କୃଷ୍ଣ ଧାଇଁଲେ ତାହା ଶୁଣି
ନିଦ୍ରା ଉପେକ୍ଷି ଚକ୍ରପାଣି
ସର୍ପକୁ ଦେଖି କୋପଭରେ
ପାଦ ପ୍ରହାରିଲେ ଉପରେ । ୮
କୃଷ୍ଣର ଲଗି ଶ୍ରୀପୟର
ପ୍ରାଣ ଗୁଡ଼ିଲା ଅଜଗର
ତକ୍ଷଣେ ନିଜ ରୂପ ହୋଇ
ତେଜେ ଝଗଜେ ବନଭୂଇଁ
ଦିବ୍ୟ ପୁରୁଷ ଅବତାର
ତୁଲ୍ୟ ନୁହଇ ବିଦ୍ୟାଧର
ଗଞ୍ଜିଲି ଦଶଦିଗ ଦେହେ
ପଡ଼ିଲା କୃଷ୍ଣ ପଦ୍ମପାୟେ । ୯
ଦେଖି ତାହାର ଦିବ୍ୟରୂପ
ହସିଲେ ପ୍ରଭୁ ପଦ୍ମମୁଖ
ବିବିଧ ରତ୍ନମାଳା ଦେଖ
ଶରଦଚନ୍ଦ୍ର ପ୍ରାୟ ମୁଖ
ବିବିଧ ଆଭରଣେ ଦେହେ
ଶିର ଦେଇଛି କୃଷ୍ଣପାୟେ
ବୋଲନ୍ତି ଦେବକୀ ନନ୍ଦନ
କୋମଳ ଗମ୍ଭୀର ବଚନ । ୧୦
ଏତ ଅଟଇ ବିପରୀତ
ସର୍ପ ହୃଦରୁ ତୋର ଜାତ
ତୋ ରୂପେ ପଟାନ୍ତର ନାହିଁ
କମ୍ପାଇ ଥିଲୁ ସର୍ପ ହୋଇ ?
କହ ଏ କେବଣ ବେଭାର ?
ଶୁଣିଲେ ଶରଧା ମୋହର
ସଂସାରେ ତୋର ରୂପ ଦେଖି
ଚଞ୍ଚଳ କେ ନ କରୁ ଆଖି
ଏ ଗତି ପାଇଲୁ କେମନ୍ତେ
ସର୍ପ ଶରୀର ବିପରୀତେ । ୧୧
କୃଷ୍ଣ ବଚନ ଶୁଣି ଧୀରେ
କର ଅଞ୍ଜଳି ଦେଇ ଶିରେ
ବେନି ଲୋଚନୁ ବହେ ନୀର
ବୋଲଇ ଶୁଣ ଦାମୋଦର
ହେ ନାଥ ! ଶୁଣିମା ଛଦନ୍ତ
ଇନ୍ଦ୍ର ଦେବତାର ମୁଁ ସୁତ
ଅତି ସୁନ୍ଦର ରୂପ ଦେଖି
ପିତା ମୋ ନାମ ଉପଲକ୍ଷି
ରୂପେ ମୋହିଲା ଦେବପୁର
ସୁଦରଶନ ନାମ ମୋର । ୧୨
ଶୁଣିମା ପ୍ରଭୁ ଦାଶରଥି !
ଗର୍ବ ହୋଇଲା ମୂଢମତି
ଦିନେକ ବସି ମୁହିଁ ରଥେ
ବିଜୟ କଲି ସ୍ୱର୍ଗପଥେ
ଅଙ୍ଗିରା ଋଷିଙ୍କର ବାଳେ
ଖେଳନ୍ତି କଳ୍ପ ବୃକ୍ଷତଳେ
ଦଇବେ ଋଷିଙ୍କ କୁମର
ତପ ସାଧନ୍ତେ ଅସୁନ୍ଦର
ତାହାଙ୍କୁ ବୋଇଲି ଧିକ୍କାରି
ଏ ଦେହ କପାଁ ଅଛ ଧରି ?
ଦେଖ ମୋହର ଦିବ୍ୟରୂପ
ଶ୍ରମେ ଯେ ସାଧୁଅଛ ତପ
ଶୁଣି ବୋଇଲେ କୋପ ହୋଇ
ବୋଇଲେ "ସର୍ପ ହୁଅ ତୁହି

କୁଞ୍ଚିତ ଅଜଗରରୂପୀ
ବନ ଗହନେ ହୁଅ ସୁଖୀ
ଗରବ ବହିଲୁ ଯେ ମନେ
ସର୍ପ ତୁ ହୁଅ ବୃନ୍ଦାବନେ । ୧୩
ଶୁଣି ଯୋଡ଼ିଲି ବେନିକର
ଭୟେ କମ୍ପଇ ମୋ ଶରୀର
ପଡ଼ି ତାହାଙ୍କ ପାଦତଳେ
କାନ୍ଦିଲି ଜୀବନ ବିକଳେ
ମୋର ବିକଳ ଦେଖି ମନେ
ଦୟା ବସିଲା ମୁନିମନେ
ବୋଇଲେ "ଯାଅ ମଣ୍ଡପୁର
ଜାତିରେ ହୁଅ ଅଜଗର
ମଥୁରା ବୃନ୍ଦାବନ ଲଗେ
ଗୋବର୍ଦ୍ଧନର ପୂର୍ବଭାଗେ
ଶାରଦା ନଦୀର ଉତ୍ତରେ
ଥାଅ ତୁ କୁଞ୍ଜବନ ଘୋରେ
ହରି ନବାଉଣେ ମୁରାରି
ମନୁଷ୍ୟ ରୂପେ ଅବତରି
ଗୋପାଳମେଳେ ଯାତ୍ରା ଛଳେ
ଭେଟିବୁ ସରସ୍ୱତୀ କୂଳେ
ନନ୍ଦଙ୍କୁ ଗିଳିବୁ ତୁ ଯାଇଁ
ଦେଖି ଧାଇଁବେ ଭବଗ୍ରାହୀ
ତୋର ଉପରେ ଚକ୍ରଧର
କୋପେ ପ୍ରହାରିବେ ପୟର
ତେବେ ହୋଇବୁ ଶାପୁଁ ପାର
ପୁଣି ପାଇବୁ ନିଜପୁର"
ତୁ ହରି କଲୁ ଏବେ ପାର
ପାଇଲି ନିଜ କଳେବର । ୧୪
ତୁ ଯେ ଜଗତ ଜନବନ୍ଧୁ
ମୋତେ ଉଦ୍ଧର ଦୟାସିନ୍ଧୁ
ତୋହର ଲଗିଣ ପୟର
ହୋଇଲି ବ୍ରହ୍ମଶାପୁଁ ପାର
ହେ ନାଥ ! ଶରଣ ତୋହର
ଅଶେଷ ବ୍ରହ୍ମାଣ୍ଡ ଠାକୁର
ଏବେ ମୁଁ ହୋଇଲି ମୁକତ
ମେଲାଣି ଦିଅ ଗୋପୀନାଥ !
ତୋହର ନାମ କର୍ଣ୍ଣେ ଶୁଣି
ତରିବ ଭବତରଙ୍ଗିଣୀ
ଧନ ଜୀବନ ଆଦି କରି
ପବିତ୍ର ହୋନ୍ତି ନରନାରୀ
ତୋହର ପାଦ ଲାଗି ମୁହିଁ
ନିସ୍ତାର ହୋଇଲି ଗୋସାଇଁ
ସୁଦରଶନ ଏତେ କହି
ପୟରେ ଶିର ଦେଲା ନେଇ ।୧୫-୧୭
କୃଷ୍ଣଙ୍କୁ ପ୍ରଦକ୍ଷିଣ କଲା
ତକ୍ଷଣେ ଗଗନେ ପଶିଲା
ନନ୍ଦଙ୍କୁ ରଖିଲେ ଗୋବିନ୍ଦ
ଗୋପାଳେ ଦେଖିଣ ଆନନ୍ଦ
କୃଷ୍ଣମହିମା ଗୁଣ ଦେଖି
ଭୟ ଛାଡ଼ିଲେ ଗୋପ ଗୋପୀ
ସୁଖେ ପାହିଲା ଘୋର ନିଶି
ଉପକରଣ ପରକାଶି
ଦେବ ଦେବୀଙ୍କ ପୂଜା ସାରି
ଗୋପେ ଚଳିଲେ ନରନାରୀ
ଗୋପାଳେ ସକଳ ସମ୍ଭାର
ଘେନି ଚଳିଲେ ଗୋପପୁର
ଯାନ୍ତେ କହନ୍ତି କୃଷ୍ଣ କଥା
ଛାଡ଼ିଲେ ମନୁଁ ଦୁଃଖ ଚିନ୍ତା
ଇନ୍ଦୁକ୍ରମରେ କୃଷ୍ଣ ତାର
ଗୋପେ ବିଜୟ ନରହରି । ୧୮-୧୯

କହଇ ଦାସ ଜଗନ୍ନାଥ
ହରିଚରିତ ଭାଗବତ
ପଶୁକ୍ଷେ ଶୁକ ମୁନି କହେ
ସୁଜନ ଜନେ କର ଲୟେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣବିଜୟେ ସୁଦର୍ଶନ ମୋକ୍ଷଣଂ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ । ୩୫ ।



## ଷଟ୍‌ତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୫ଶ ଅଧ୍ୟାୟ )

ପୂର୍ବ ଅଧ୍ୟାୟ ଅବଶେଷ । ଚରିତ ଛତିଶେ ପ୍ରକାଶ । ୦ ।

ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ ନରନାଥ !
ହରିଚରିତ ଭାଗବତ
ଅନେକ ପ୍ରଭୁ ନରହରି
ସଙ୍ଗେ ଘେନିଲେ ବ୍ରଜନାରୀ
ବଳଦେବଙ୍କୁ ଘେନି ସଙ୍ଗେ
ମିଳିଲେ ବୃନ୍ଦାବନ ଲଗେ
ଶୀତଳ ବସନ୍ତର ବାୟେ
ବନେ ବିଜୟ ଦେବରାୟେ
ଶଶାଙ୍କ କିରଣେ ରଜନୀ
ସୁନ୍ଦର ଦିଶେ ବନଭୂମି
ରାମ ଗୋବିନ୍ଦ ଗୋପନାରୀ
ବିବିଧ ମତେ ବନଚାରୀ
ମଧ୍ୟେ ବିଜୟ ହଳଧର
ଗୋପୀ ସାନନ୍ଦେ ଗୀତସ୍ୱର
କୃଷ୍ଣ କରନ୍ତି ଗୀତ ନାଦ
ହରିଲେ କାମିନୀ ବିଷାଦ
କୁନ୍ଦ ମଲ୍ଲିକା ଗନ୍ଧସାର
ଶୀତଳ ବହଇ ସମୀର
ଗୋବିନ୍ଦ ଗୀତ ଶୁଣି କର୍ଣ୍ଣେ
ମୂର୍ଚ୍ଛିତ ହୋନ୍ତି ପଶୁଗଣେ
ପୁଲକ ହୋନ୍ତି ବୃକ୍ଷପନ୍ତି
ସ୍ୱର୍ଗେ ଦେବତା କଲେ ସ୍ତୁତି
ଶୁଣି ଗୋବିନ୍ଦ ଗୀତ ନାଦ
ଗୋପୀ ପାଇଲେ ମନେ ଖେଦ
କଟୀ ମେଖଳା କ୍ଷୀଣବାସ
ଅବଶ ହୋଇଲା ଉଶ୍ୱାସ
ମଦନ ଭୋଳେ ଗୀତ ଗାଇ
ଗୋପୀ ମୋହିଲେ ଭବଗ୍ରାହୀ ।୨୦-୨୪
ଏମନ୍ତେ ଶୁଣ ନରନାଥ !
ସର୍ପେ ହୋଇଲା ଉପଗତ
ପୂର୍ବେ ସେ କୁବେର କୁମର
ଶାପେ ହୋଇଲା ଶଙ୍ଖଚୂଡ଼ । ୨୫
ଦେଖନ୍ତି ରାମ ବନମାଳୀ
ଗୋପୀଙ୍କ ମଧ୍ୟେ ବେଗେ ମିଳି

ଉତ୍ତର ଦିଗୁଁ ଘୁ ଘୁ କରି
ଦେଖି ପଳାନ୍ତି ଗୋପନାରୀ । ୨୬
ଡାକନ୍ତି ରାମକୃଷ୍ଣ ରଖ
ଏ ବନେ ହୋଇଲୁଁ ନରେଖ
ଶାର୍ଦ୍ଦୂଳେ ଦେଖି ଗୋରୁ ପଲ
ଯେସନ୍ତେ ହୁଅନ୍ତି ଅନ୍ତରାଳ
ଦେଖି ଧାଇଁଲେ ବେନିଭାଇ
ନ ଡର ବୋଲି ଡାକ ଦେଇ । ୨୭
କରେ ଉପାଡ଼ି ବେନି ଶାଳ
ମିଳିଲେ ଗୋପୀଙ୍କର ମେଳ
ଯମର ଦୂତ ପ୍ରାୟେ ହୋଇ
ଦେଖି ଶଙ୍ଖଚୂଡ଼ ପଳାଇ
ଗୋପୀକାମିନୀମଧ୍ୟେ ଥିଲା
ଜୀବନଭୟେ ପଳାଇଲା । ୨୮
ତାହାର ଶିରେ ମଣି ଚାହିଁ
ବେଗେ ଧାଇଁଲେ ଶ୍ରୀବତ୍ସଗ୍ରାହୀ
ପଛେ ଯେ ଥିଲେ ହଳଧାରୀ
ଗୋପଯୁବତୀଙ୍କି ଆଗୋରି
ପଛେ ଗୋଡ଼ାନ୍ତି ନାରାୟଣ
ସର୍ପ ହୋଇଲା ବଳ କ୍ଷୀଣ
ମୁଷ୍ଟି ପ୍ରହାରି ସର୍ପଶିରେ
ମଣି ଘେନିଲେ କୃଷ୍ଣ କରେ ।୨୯-୩୧
ଗୋବିନ୍ଦ ମୁଷ୍ଟି ଶିରେ ଲାଗି
ସର୍ପ ହୋଇଲା ମୋକ୍ଷଭାଗୀ
ଗୋବିନ୍ଦ ମଣି ଘେନି କରେ
ମିଳିଲେ ରାମର ଛାମୁରେ
ରାମର ହସ୍ତେ ମଣି ଦେଇ
ପ୍ରଣାମ କଲେ ଶ୍ରୀବତ୍ସଗ୍ରାହୀ । ୩୨
ସେ ରାମ କୃଷ୍ଣ ପାଦଗତେ
ନମଇଁ ଦାସ ଜଗନ୍ନାଥେ
କରି ସୁଦୟା ବେନିଭାଇ
ମରୁଛି ଭବେ ପଡ଼ି ମୁହିଁ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣବିଜୟେ ଶଙ୍ଖଚୂଡ଼ମୋକ୍ଷଣଂ ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ । ୩୬ ।



# ସପ୍ତତ୍ରିଂଶ ଅଧ୍ୟାୟ

## ମୂଳାନୁସାରେ ୩୬ଶ ଅଧ୍ୟାୟ

ଷଟ୍‌ତ୍ରିଂଶେ ଦିନଂ ଯାତେ କୃଷ୍ଣେ ଗୋକୁଳଯୋଷିତଃ ।
ଯୁଗ୍ମଶ୍ଳୋକାନ୍ତୁ ଗୀତେନ ନିନ୍ୟୁର୍ଦୁଃଖେନ ବାସରାନ୍ । ୦ ।

ସପ୍ତତ୍ରିଂଶେ କୃଷ୍ଣ ବନେ । ଚଳନ୍ତେ ମିଳି ଗୋପୀଗଣେ
ଯୁଗ୍ମ ଶ୍ଳୋକରେ ଗୀତ ଗାନ । କରି କାଟିଲେ ଦୁଃଖେ ଦିନ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧାରୀ !
ଗୋପରେ ଯେତେ ନରନାରୀ
କୃଷ୍ଣ ବନକୁ ଯିବା ଗୁଣି
କହନ୍ତି ଯଶୋଦା ବସାଇ । ୧

ଗୋପ୍ୟ ଊଚୁଃ

ଶୁଣ ଗୋ ନନ୍ଦର ଘରଣୀ !
ତୋ ପୁତ୍ର କୃଷ୍ଣର କାହାଣୀ
ବାଙ୍କ ନୟନ ଗ୍ରୀବ ଧୀରେ
ମୁରଲୀ ଲଗାଇ ଅଧରେ
ଅଙ୍ଗୁଳି ବେଣୁରନ୍ଧ୍ରେ ଦେଇ
ତ୍ରିଭଙ୍ଗୀ ଛନ୍ଦେ ଉଭା ହୋଇ
ବାମ କପୋଳ ଢାଳି ଧୀରେ
ନିବେଶି ବାମ ବାହୁମୂଳେ
ବେଣୁ ବଜାନ୍ତେ କୁତୁହଳେ
ଯମୁନା କଦମ୍ବର ମୂଳେ । ୨
ଆକାଶେ ସିଦ୍ଧଗଣ ଭୁଲେ
ଦେବକାମିନୀ ମୋହ ଗଲେ
ଲଜ୍ଜା ଛାଡ଼ିଲେ କାମଭୋଳେ
କେଶ ବସନ ଅସମ୍ଭାଳେ । ୩

ଶୁଣ ଗୋ ବେଣୁଧର ମାତା !
ତୋର କୁମର ଚରିତକଥା
ହୃଦେ ଲମ୍ବାଇ ବନମାଳ
ଅଳପ ହସି ତୋର ବାଳ
ବେଣୁ ବଜାଏ ଯେବେ ବନେ
ଆନନ୍ଦ ହୋନ୍ତି ପଶୁଗଣେ
ଗୋରୁ ମଇଁଷି ମୃଗ ଯୂଥ
ଶୁଣି ତୋ ସୁତ-ବେଣୁ-ଗୀତ
ତୃଣ କବଳ ଦନ୍ତେ କରି
ମୁରଲୀ ନାଦେ ଚିତ୍ତ ଧରି
ବତ୍ସାଏ ମୁଖ ଦେଇ ସ୍ତନେ
ଶୁଣନ୍ତି ମୁଦ୍ରିତ ଲୋଚନେ
ଚିତ୍ରପ୍ରତିମା ପ୍ରାୟେ ହୋଇ
ଜନ୍ତୁଙ୍କ ଚକ୍ଷୁ ନ ଚଳଇ । ୪,୫
ସ୍ତବକପୁଷ୍ପ ଶିଖିପୁଚ୍ଛ
ରଙ୍ଗ ମୃତ୍ତିକା ମାଳକାଛ
ଆମ୍ଭ ପୁତ୍ରଙ୍କୁ ଘେନ ସଙ୍ଗେ
ଗୋରୁଙ୍କୁ ଡାକନ୍ତେ ସୁରଙ୍ଗେ
ନଦୀ ଯେ ବହୁଥିଲେ ବନେ
ଶୁଣି ତୋ ସୁତ ବେଣୁ ସ୍ୱନେ

ଅଳପ ଧୀରେ ବହେ ବାତ
ପବନେ ଉଡ଼ାଣ ଲହଣ
ତା ପାଦରଜେ ଚିତ୍ତ ଦେଇ
ବହଇ କି ସେ ସ୍ଥିର ହୋଇ
ପବନ ଆଣିବ ଉଡ଼ାଇ
ଆମ୍ଭେ ତଳକୁ ରେଣୁ ପାଇ । ୬,୭
ଆଦ୍ୟପୁରୁଷ ପ୍ରାୟେ ସେହି
ଆମ୍ଭ ବାଳକ ସଙ୍ଗେ ଥାଇ
ଗିରି ନିକଟେ ପଶୁଗଣେ
ଚରନ୍ତି ତୃଣ ତୋଷମନେ
ଗୋରୁଙ୍କ ନାମ ବେଣୁ ସ୍ୱନେ
ଡାକନ୍ତେ ମଧୁର ବଚନେ
ଲତାଏ ତରୁଙ୍କୁ ଆବୋରି
ଫଳ ପଲ୍ଲବ ପୁଷ୍ପେ ଭରି
ଲଗନ୍ତି ରାମକୃଷ୍ଣ ପାୟେ
ବସନ୍ତ ସୁଶୀତଳ ବାୟେ
ବୃକ୍ଷେ ହୋଇଲେ ପୁଲକିତ
ଶୁଣି ତା ମୁରଲୀର ଗୀତ
ମଧୁ ବରଷିଲେ ଗହଳ
ଯେହ୍ନେ ନୟନୁଁ ଅଶ୍ରୁଜଳ । ୮,୯
ସୁନ୍ଦରବର ଏତା କୁମର
ତୁଳସୀ ମାଳ ଲମ୍ବେ ଉର
ଗନ୍ଧେ ଭ୍ରମର ନ ଗୁଞ୍ଜନ୍ତି
ବେଣୁ ଶବଦେ ଆବୋରନ୍ତି
ନଦୀ ତଡ଼ାଗ ଜଳେ ଥାଇ
ହଂସ ସାରସେ ସ୍ଥିର ହୋଇ
ମନ କରେପି ବେଣୁ ସ୍ୱନେ
ମୂର୍ଚ୍ଛିତ ହୋଇଲେ ଲୋଚନେ ।୧୦,୧୧
ନାନା କୁସୁମେ ବେଶ ହୋଇ
ରୋହିଣୀ ସୁତ ସଙ୍ଗେଥାଇ
ପର୍ବତ ପାଖେ ତୋର ବଳା
ଶବଦେ ବ୍ରହ୍ମାଣ୍ଡ ମୋହିଲା
ଇନ୍ଦ୍ର ବଚନେ ମେଘମାଳେ
ସୁନ୍ଦର ଗଗନ ମଣ୍ଡଳେ
ମିତ୍ରର ଶ୍ରମ ବନେ ଚାହିଁ
ମେଘେଢ଼ାଙ୍କିଲେ ଛତ୍ରହୋଇ ।୧୨,୧୩

ଗୋପେ ବିବିଧ ରସେ ପୂରି
ନ ଶିଖି ବେଣୁନାଦ ସ୍ଫୁରି
ସପତ ସ୍ୱରେ ବେଣୁ ବାଇ
ରଙ୍ଗ ନୟନ ବାଙ୍କେ ଚାହିଁ
ତୋର ନନ୍ଦନ ବେଣୁସ୍ୱରେ
ବ୍ରହ୍ମା ଶଙ୍କର ଇନ୍ଦ୍ର ଭୁଲେ
ମୁନିଙ୍କ ସଙ୍ଗେ ବନ ମଧ୍ୟେ
ମୋହହୋଇଲେବେଣୁନାଦେ,୧୪.୧୫

ଅପୂର୍ବ ଶୁଣ କୃଷ୍ଣ ମାଏ !
ଧ୍ୱଜ ଅଙ୍କୁଶ ବେନି ପାୟେ
ଚର୍ଚ୍ଚିତ କଲା ବନ ଭୂଇଁ
ମତ୍ତ ମାତଙ୍ଗ ପ୍ରାୟେ ହୋଇ
ତାର ଚଳିବା ଦେଖି ମାଏ !
ଚଳିତ ନ ପାରୁଁ ଭେଡ଼ାଏଁ
ବୃଷଙ୍କ ଗତି ଆମ୍ଭେ ଭଜଁ
ଚାହିଁ ନ ପାରି ଚକ୍ଷୁ ବୁଜୁଁ
ମଦନ ଶରେ ହେଉଁ ଭୋଳ
ଫିଟଇ କବରୀ ଅଞ୍ଚଳ । ୧୬,୧୭
ମଣି ଗୁଞ୍ଜାର ଶିରେ ଧରି
ଗାଈଙ୍କ ପଛେ ବନଚାରୀ
ତୁଳସୀମାଳ ଲମ୍ବେ ହୃଦେ
ଭୁଜ ଗୋପାଳପୁଅ କାନ୍ଧେ
ମଧୁର ରସେ ବେଣୁ ବାଇ
ଚାଲନ୍ତେ ତଉଦ୍ଧବ ଚାହିଁ .

କୃଷ୍ଣହରଣୀଗଣ ଗୃହିଁ
ବେଣୁଶବଦେ ଚିତ୍ତ ଦେଇ
ଘୁଡ଼ଣ ସୁତ ଘର ବାସ
କ୍ଷଣେହେଁ ନ ଘୁଡ଼ନ୍ତି ପାଶ । ୧୮,୧୯
ସକଳ ଗୁଣଙ୍କର ସିନ୍ଧୁ
ମୁଖ ହସଇ ପୂର୍ଣ୍ଣ ଇନ୍ଦୁ
ଉତ୍ତଂସଛନ୍ଦେ କୁନ୍ଦମାଳ
ସଙ୍ଗେତ ଗୋରୁ ଗୋପବାଳ
କାଳିନ୍ଦୀତଟେ ତୋ କୁମର
ହୃଦୟ ଭେଦିଲା ଆମ୍ଭର
ପବନ ଯୋଗେ ବୃକ୍ଷଡ଼ାଳେ
ଲାଗନ୍ତି ତାର ପାଦତଳେ
ହିଦଶେ ବାଦ୍ୟନାଦ କରି
ସ୍ତୁତି କରନ୍ତି ବ୍ରହ୍ମଘୋଷ । ୨୦,୨୧
ବିବିଧ ଅଙ୍ଗେ ଉପହାର
କେ କହୁ ମହିମା ତାହାର
ଇନ୍ଦ୍ରର ଛଳେ ତୋ କୁମର
କରେ ତୋଳିଲା ଗିରିବର
ବ୍ରହ୍ମା ଶଙ୍କର ଆଦି କରି
ବନ୍ଦିଲେ ତାର ପାଦ ଧରି
ଗୋଧନ ଧେନ ଦିନ ଅନ୍ତେ
ପଥେ ଆସନ୍ତେ ଗୋପୀନାଥେ
ଗୋଧୂଳି ଭୂଷଣ ଶରୀର
ଜୀବନ ଦହେ ଗୋ ଆମ୍ଭର
ଗୋପବାଳଙ୍କ ଇଷ୍ଟଦାତା
ଦେବକୀ ଦେଖୀ ଯାର ମାତା
ନକ୍ଷତ୍ରପ୍ରାୟ ଗୋପବାଳ
ତୋ ସୁତ ଶଶାଙ୍କମଣ୍ଡଳ । ୨୨,୨୩
ବେନି ଲୋଚନ ମତ୍ତହୋଲେ
ବୁଲେ ଗୋପାଳ ପୁଅ ମେଳେ
ଗୋରୁଙ୍କ ଧୂଳି ମୁଖେ ମିଶି
ବଦରୀ ଫଳ ପ୍ରାୟେ ଦିଶି
ରତ୍ନ କୁଣ୍ଡଳ କର୍ଣ୍ଣେ ଶୋହେ
ରୂପେ କୋଟିଏ କାମ ମୋହେ
ଚଳଇ ମତ୍ତଗଜ ଛନ୍ଦ
ମୁଖ ତା ପୂର୍ଣ୍ଣିମୀର ଚନ୍ଦ
ଆମ୍ଭେ ଗୋ ଚାହିଁ ତାର ମୁଖ
ଖଣ୍ଡିଁ ବିରହ ତାପ ଦୁଃଖ । ୨୪,୨୫

ଶ୍ରୀ ଶୁକ ଉବାଚ

ଏମନ୍ତେ କୃଷ୍ଣଲୀଳା କହି
ନନ୍ଦଘରଣୀ ଆଗେ ଯାଇଁ
ଗୋପୀଙ୍କ କୃଷ୍ଣପାଦେ ଚିତ୍ତ
ଦିନକୁ ଦିନ ଅପ୍ରମିତ
ଘୁଡ଼ିଲେ ଭବ ବନ୍ଧ ଭ୍ରମ
କୃଷ୍ଣହିଁ ନ ଜାଣନ୍ତି ଆନ । ୨୬
ସେ ଗୋପ ଗୋପୀଙ୍କ ପୟରେ
ମୋ ମନ ଥାଉ ନିରନ୍ତରେ
ନାମ ମୋହର ଜଗନ୍ନାଥ
ଭକତି ଶୁଦ୍ଧି ଅରହିତ
ବ୍ରାହ୍ମଣ ଜନ୍ମ ମାତ୍ର ହୋଇ
ହରିଭକତି ମୋର ନାହିଁ
ସୁଜନ ଜନେ ହରିପଥେ
ସେବକ କରି ନିଅ ମୋତେ
ନିବିଡ଼ ମୋହ ଜଡ଼େ ଥାଇଁ
କୃଷ୍ଣଚରଣେ ମନ କାହିଁ
ଏ ଘୋର ସଂସାର ସାଗର
ଏଣେ ହୋ ବିଶ୍ୱାସ ନ କର
ନିରତେ ଭଜ ଦୃଢ଼ ଚିତ୍ତେ
ହରିଚରଣ ଅବିରତେ

ବ୍ରହ୍ମାଙ୍କ କୋଟିଜନ୍ମ ଯାଏ | ଏସଂସାର କୁଟୁମ୍ବ
ସକଳେ ପଡ଼ି ମାୟା ମୋହେ | ସୁଖ ଦୁଃଖରେ ପରାଭବ
କେବଳ ଗୋବିନ୍ଦ ଭରସା | ବିନା ଗୋବିନ୍ଦ ଆଶ୍ରେ ତାର
ଛାଡ଼ି ସକଳ ମାୟା ଆଶା | ନାହିଁ କେବଣ ପ୍ରତିକାର
ପଥିକ ଯେହ୍ନେ ପଥଶ୍ରମେ | ପୁରାଣ ଶିଷ୍ଟ ଭାଗବତ
ମିଳନ୍ତି ବୃକ୍ଷର ଆଶ୍ରମେ | ବାଇକ ପ୍ରାୟେ କଲି ଗୀତ
ଶ୍ରମ ସାରିଲେ ଯେଝାମତେ | ପଣ୍ଡିତେ ନ କରିବ ହାସ
ଚଳନ୍ତି ବୃକ୍ଷ ଥାଇ ପଥେ | ତୁମ୍ଭ ଚରଣେ ମୁହିଁ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଗୋପିକା ଯୁଗଗୀତ
ବର୍ଣ୍ଣନଂନାମ ସପ୍ତତ୍ରିଂଶୋଽଧ୍ୟାୟଃ । ୩୭ ।



## ଅଷ୍ଟତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୬ଶ ଅଧ୍ୟାୟ )

ଷଟ୍‌ତ୍ରିଂଶେ ତୁ ହତେଽରିଷ୍ଟେ ନାରଦୋକ୍ତ୍ୟା ବାଳଚ୍ୟୁତେ ।
ବସୁଦେବସୁତୌ ଜ୍ଞାତ୍ୱା କଂସୋଽକ୍ରୂରଂ ସମାଦିଶତ୍ । ୦ ।

ଅଷ୍ଟତ୍ରିଂଶରେ ହତ ବୃଷ । ରାମକୃଷ୍ଣଙ୍କୁ ତହୁଁ କଂସ
ବସୁଦେବର ଜାଣି ସୁତ । ଅକ୍ରୁର ପେଷିଲା ତୁରିତ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ ! | ଗର୍ଜ୍ଜଇ ଘୋର ନାଦ କରି
ଗୋପେ ଅସୁର ଉତପାତ | ପାଦେ କମ୍ପଇ ବସୁନ୍ଧରୀ
ଅରିଷ୍ଟ ନାମେ ଷଣ୍ଢରୂପୀ | ଲାଞ୍ଜ ଉଭାରି ବେଗେ ଧାଇଁ
ମିଳିଲା ବନ ଗିରି ବ୍ୟାପି | ଖେଳଇ ଶିଙ୍ଗେ ଉଚ ଭୂଇଁ
ବୃଷଭରୂପୀ ମହାକାୟେ | ଅଳପ ଅଳପ ମୂତଇ
ଅବନୀ ଖୋଳୁଅଛି ପାୟେ | ଚକ୍ଷୁ ଘୁରାଇ ପୁଣ ଗୃହିଁ । ୧-୩
 | ଶୁଣି ତାହାର ଘୋର ନାଦ
 | ଗାଈ ଗୁଆଳୀଙ୍କ ବିଷାଦ

ପତନ ହୋଇ ଗର୍ଜିଲେ
ଦେବେ ଉଡ଼ନ୍ତ ସ୍ୱର୍ଗ ଆଳେ । ୪
ପିଠି ଉପରେ ଚୂଳ ଦେଖି
ପର୍ବତ ପ୍ରାୟେ ଉପଲକ୍ଷି
ମେଘେ ବସନ୍ତ ତା ଉପର
ଶୃଙ୍ଗ ଯୁଗଳ ତୀକ୍ଷ୍ଣ ଶିର
ଗୋପୀ ଗୋପାଳ ଦେଖି ଡରେ
ପଳାଇ ଗଲେ ବନ ଘୋରେ । ୫
ଗୋରୁଏ ପଳାଇଲେ ଦେଖି
ଭୟେ ବୁଜିଲେ ବେନଆଖି
ପଡ଼ିଲା ଗୋପପୁରେ ହୁରି
ଡାକନ୍ତି କୃଷ୍ଣନାମ ଧରି
ରଖ ଗୋକୁଳ ଦାମୋଦର !
ଆମ୍ଭେ ଯେ ଶରଣ ତୋହର । ୬
ବିକଳ ଦେଖିଣ ଗୋକୁଳ
ଧାଇଁଲେ ପ୍ରଭୁ ଆଦ୍ୟମୂଳ
ଆନନ୍ଦେ ତୋଳି ବେନ ଭୁଜ
ଡାକନ୍ତି ପ୍ରଭୁ ଦେବରାଜ
ଭୟ ନକର ତୁମ୍ଭେ କେହି
ଅସୁର ସଂହାରିବ ମୁହିଁ
ଏମନ୍ତ ବୋଲି ନରହରି
ଡାକିଲେ ଷଣ୍ଢକୁ ଆବୋରି । ୭
ରେ ରେ ଦଇତ ଦୁରାଚର
କପାଁ ଉଜାଡ଼ ଗୋପପୁର ?
ଦୁଷ୍ଟ ଦଳନ ବାନା ମୋର
ଆଜ ପେଷିବ ଯମପୁର । ୮
ଧାଇଁଲେ ବାହା ନାଦ କରି
ସ୍ୱର୍ଗେ ଦେଖନ୍ତି ଦେବନାରୀ
ଗୋବିନ୍ଦ ଦେଲେ କରତାଳି
ଶୁଣି ଅସୁର ଅସମ୍ଭାଳି

ପଛେ ଅଛନ୍ତି ଷବଗ୍ରାହୀ
ବାଳକଙ୍କରେ ହସ୍ତ ଦେଇ
କୃଷ୍ଣର ଶୁଣି କରତାଳି
କୋପେ ଅସୁର ପରଜ୍ୱଳି
ଖୁରେ ଖୋଳଇ ମହୀସ୍ଥଳ
ଲାଞ୍ଜ ବୁଲାଇ ଅନ୍ତରାଳ
ମେଘେ ଉଡ଼ିଲେ ଲାଞ୍ଜବାୟେ
ନିଃଶ୍ୱାସ ଖରତର ବହେ
ଆଗେ ଉଭାରି ଶୃଙ୍ଗ ଦୁଇ
ଚକ୍ଷୁ ବୁଜିଲା କୃଷ୍ଣେ ଚହିଁ
ବେଗେ ଧାଇଁଲା ଧାଡିକାରେ
ବଜ୍ର ଯେସନେ ଇନ୍ଦ୍ର କରେ । ୯-୧୧
ଆଗ ହୋଇଲେ ଷବଗ୍ରାହୀ
କରେ ଧଇଲେ ଶୃଙ୍ଗ ଦୁଇ
ଅସୁର ନ ପାରିଲା ଯାଇ
ପଛକୁ ଦେଲେ ହାବୋଡ଼ାଇ
ଅସୁର ପାଇ ମହାତ୍ରାସ
ଘୁଞ୍ଚିଲା ଭେଡ଼ା ଅଷ୍ଟାଦଶ
ଯେହ୍ନେ ଉଭାରି ବେନ ଗଜ
ପଛ ଘୁଞ୍ଚିଲେ ଦେବରାଜ । ୧୨
ଦଇତ ମୂର୍ଚ୍ଛାଗତ ହୋଇ
ପୁଣି ଉଠିଲା ଜ୍ଞାନ ପାଇ
ଧାଇଁଲା ପବନହୁଁ ଖର
ଶୃଙ୍ଗ ଧଇଲେ ଚକ୍ରଧର
ଅସୁର ଦେହେ ପାଦ ଦେଇ
ତଳେ ପାଡ଼ିଲେ ବେଗେନେଇ
ପଛ ଚରଣ ପାଦେ ଚାପି
ମୁଣ୍ଡ ମୋଡ଼ିଲେ ବିଶ୍ୱରୂପୀ
ଓଦାବସନ ପ୍ରାୟେ ମୋଡ଼ି
ତାହାର ଦେହୁ ଶୃଙ୍ଗ ଝାଡ଼ି

ମୁହଁରୁ ଗଳଇ ରୁଧିର
ବେଗେ ଛାଡ଼ିଲା କଳେବର
ଛାଡ଼ି ଚରଣ ପ୍ରସାରିଲା
ଗୋବନ୍ଦ ମୁଖକୁ ଚାହିଁଲା
ପ୍ରାଣ ଛାଡ଼ିଲା ମହାବଳୀ
ଦେଖନ୍ତି ସ୍ୱର୍ଗଲୋକେ ମିଳି
ଦେବେ କରନ୍ତି ପୁଷ୍ପବୃଷ୍ଟି
କୃଷ୍ଣ ନାଶିଲେ ଗୋପଋଷ୍ଟି
ଏମନ୍ତେ ଅସୁର ନିବାରି
ଉଶ୍ୱାସ କଲେ ଗୋପପୁରୀ
ଗୋପୀ ଗୋପାଳ ନନ୍ଦମେଳେ
ସ୍ତୁତି କରନ୍ତି ପାଦତଳେ
ଗୋପୀଏ ଚୁମ୍ବନ୍ତି ଶ୍ରୀମୁଖ
ଖଣ୍ଡିଲେ ଜନ୍ମ ବନ୍ଧ ଦୁଃଖ । ୧୩-୧୬
କୃଷ୍ଣ ଚରଣେ ଦେଇ ଚିତ୍ତ
କହିଲେ ଦାସ ଜଗନ୍ନାଥ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଷଣ୍ଢାସୁର ମୋକ୍ଷଣଂ
ନାମ ଅଷ୍ଟତ୍ରିଂଶୋଽଧ୍ୟାୟଃ ॥ ୩୮ ॥



## ଊନଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୩୬ଶ ଅଧ୍ୟାୟ )

ପୂର୍ବ ଅଧ୍ୟାୟ ଶେଷକଥା । ଅଣଚାଳଶରେ ବ୍ୟବସ୍ଥା । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି !
ସ୍ୱର୍ଗେ ଶୁଭିଲା ଜୟବାଣୀ
ଆକାଶେ ଥିଲେ ଯେ ନାରଦ
ଜାଣିଲେ ଷଣ୍ଢାସୁର ବଧ
ମନ ଆନନ୍ଦେ ଦେବଋଷି
କୃଷ୍ଣ ମହିମା ପରଶଂସି
ମଥୁରା ନଗରେ ମିଳିଲେ
କଂସରାଜାର ସଭାତଳେ
ଦେଖି ଉଠିଲା ଭୋଜବୀର
ନମଇଁ ମୁନିଙ୍କ ପୟର
ଆନନ୍ଦେ ଶିରେ କର ଦେଇ
ଆସନେ ବସାଇଲେ ନେଇ
ସ୍ୱଭାବେ ଭୋଜବଂଶ ରାଜା
ମୁନିଚରଣେ କଲା ପୂଜା
କୁଶଳ ବାରତା ପଚାରି
ବିଶ୍ୱାସ କରି ପାଦ ଧରି
କଂସର ଭକ୍ତିରେ ନାରଦ
କହନ୍ତି ପାଇ ମନେ ଖେଦ
ଭୋ ରାଜା ମୋହର ବିଶ୍ୱାସ
ମୋର ବଚନେ ଛାଡ଼ି ଆଶ
ତୋତେ ମୋହର ଚିତ୍ତେ ଦୟା
ପୂର୍ବେ ମୁଁ କହିଅଛି ଯାହା

ତୁ ତାହା ନ ଶୁଣିଲୁ କର୍ଣ୍ଣେ
ଏବେ ମରିବୁ ଅଳ୍ପଦିନେ
ଶୁଣି କହଇ ମନ ଖେଦ
ବ୍ରହ୍ମା ମୁଖୁଁ ନ ସ୍ଫୁରଇ ବେଦ
ଦେବତାମାନେ ତୋ ବଇରୀ
ତୋର ମରଣେ କଷ୍ଟ କରି
ଗୋପେ ଯାଦବ ଅବତାର
ଦେବକୀ ବସୁଦେବ ଘର
ହରିଙ୍କି କରାଇଲେ ଜନ୍ମ
ଭଣୋଇ କଲୁ ଏଡ଼େ କର୍ମ
ଅଷ୍ଟମ ଗର୍ଭେ ଏହା ନାରୀ
ରାତ୍ରେ ପ୍ରସବିଲା ମୁରାରି
ତୋର ଭଣୋଇଁ ତାହା ନେଇ
ଅଇଲା ନନ୍ଦଘରେ ଥୋଇ
କନ୍ୟାଏ ଥିଲା ତାର ଘରେ
ଯାହା କଚାଡ଼ିଲୁ ଶିଳାରେ
ତୋହର ହସ୍ତୁଁ ଶୂନ୍ୟେ ଗଲା
କେବେହେଁ ଜ୍ଞାନ ତୋ ନୋହିଲା
ରୋହିଣୀ ବସୁଦେବ ନାରୀ
ପଳାଇ ଗଲା ତୋତେ ଡରି
ତାହାର ଗର୍ଭ ହୋଇଥିଲା
ସେହି କ୍ରମରେ ପ୍ରସବିଲା
ହରିର ଅଂଶେ ଅବତାର
ସେ ତୋତେ ମାରିବେ ନିକର
ରାମ ଗୋବିନ୍ଦ ବେନିଭାଇ
ବଢ଼ିଲେ ଗୋପପୁରେ ଥାଇ
ବସୁଦେବର ମିତ୍ର ନନ୍ଦ
ସେ ତୋତେ କଲା ଏତେ ଛନ୍ଦ
ପୂତନା ଆଦି ଷଣ୍ଢୋ ଯାଏ
ସବୁ ମାରିଲେ ବେନି ପୋଏ

ଇନ୍ଦ୍ରର ଦର୍ପ କଲେ ଚୂର
ହସ୍ତେ ତୋଳିଲେ ଗିରିବର
କାଳୀୟ ଥିଲା କାଳିଦହେ
ପଳାଇ ଗଲା ତାର ଭୟେ
କହିବି କେତେ ଗୁଣ ତାର
ଦେବମାନଙ୍କ ଅଗୋଚର । ୧୭,୧୮
ଶୁଣି ଅସୁର ଥରହର
କାତରେ କମ୍ପଇ ଶରୀର
ତୀକ୍ଷ୍ଣ ଖଡ୍ଗ ଘେନି କରେ
ବେଗେ ଉଠିଲା କୋପଭରେ
ବସୁଦେବଙ୍କୁ ଅଣାଇଲା
ଅନେକ ମାଡ଼ ମରାଇଲା । ୧୯
ହାଣିବ ବୋଲି କୋପଭର
ନାରଦ ଧଇଲେ ତା କର
ନାରଦ ବଚନେ ବିଶ୍ୱାସ
ପାଦେ ଭରିଲା ଲୋହପାଶ
ଧନ ସମ୍ପଦ ଜୂର କଲା
ବନ୍ଦୀ ମଧ୍ୟରେ ରଖାଇଲା । ୨୦
କଂସକୁ କହି ବ୍ରହ୍ମାସୁତ
ଆକାଶେ ଚଳିଲେ ତ୍ୱରିତ
ମୂଢ଼ ଅନ୍ତରେ ଭୋଜରାୟେ
ଭାଳଇ ଜୀବନର ଭୟେ
କେଶୀ ଦଇତକୁ ଅଣାଇ
କହଇ ବିଶ୍ୱାସ କରାଇ
ତୁ ମୋର ଭ୍ରାତ ସହୋଦର
ବହନ ଯାଅ ଗୋପପୁର
ବସୁଦେବର ପୁତ୍ର ଦୁଇ
ରାମ ଗୋବିନ୍ଦ ବେନିଭାଇ
ବହନ କର ପ୍ରାଣନାଶ
ଦେବ ସମ୍ପଦ ଗ୍ରାମ ଦେଶ

ତେବେ ସେ ଜୀବନେ ମୋ ଆଶ
ହେ ଭ୍ରାତ ! ନ କର ଅଳସ । ୨୧
କଂସର ଆଜ୍ଞା ଘେନି ଶିରେ
କେଶୀ ଚଳିଲା ଗୋପପୁରେ
ଚାଣୁର ମୁଷ୍ଟିକରେ ମେଳେ
ଦର୍ପିଷ୍ଠ ମାଲେ ବଳୀୟାରେ
ଗଜ କୁବଳୟ ମହନ୍ତ
ପାତ୍ର ସାମନ୍ତ ଇଷ୍ଟ ମିତ୍ର
ଅଣାଇ କହଇ ଅସୁର
ଜଣ ଜଣକେ ଧରି କର । ୨୨
ହେ ବୀର ମୁଷ୍ଟିକ ଚାଣୁର !
କହି ଯେ ଗଲେ ମୁନିବର
ବସୁଦେବ ତା ପୁତ୍ର ଦୁଇ
ଗୋପରେ ଅଇଲା ଲୁଚାଇ
ଗୁପତେ ନନ୍ଦଘରେ ଥାଇ
ବଢ଼ିଲେ ବଳବନ୍ତ ହୋଇ । ୨୩
ଯେତେ ଅସୁର ମୋର ଗଲେ
ଗୋପରେ ଥାଇ ସଂହାରିଲେ
ହିନକୁ ହିନ ବଳୀୟାର
ସେ ମୋତେ କରିବେ ସଂହାର
ତାହାଙ୍କୁ ଅଣାଇବା ଧରି
ଏଥେ ମାରିବା ଯୁଦ୍ଧ କରି
ମାଲ ହସ୍ତୀରେ ମରାଇବା
ତେବେ ସେ ମୋତେହେଁ ପାଇବା ।
ଦେବଇଁ ସମ୍ପଦ ବହୁତ
ଗଜ ତୁରଙ୍ଗ ଯୂଥ ଯୂଥ । ୨୪
ଶୁଣ ହୋ ପାତ୍ର ମନ୍ତ୍ରିବର !
ମଞ୍ଚା କରାଇବ ଅପାର
ରଙ୍ଗ ସଭାଏ ତିଆରିବ
ତୁମ୍ଭେ ସକଳ ଦେଖୁଥିବ

ଦେବକୀ ବସୁଦେବ ଆସି
ମଞ୍ଚା ଉପରେ ଥିବେ ବସି
ତୁମ୍ଭେ କରିବ ମାଲରଣ
ଦେଖିବେ ପୁତ୍ରଙ୍କ ମରଣ । ୨୫
ମାହୁନ୍ତ ଥିବ ରଙ୍ଗ ଦ୍ୱାରେ
ବସି କୁବଳୟା ପୀଠରେ
ଦନ୍ତ ଗୁନ୍ଥାଇ ବେଢ଼ାଇ
ମାହୁନ୍ତ ସଭାନ୍ତରେ ନେଇ
ଅନେକ ଧନ ରତ୍ନ ଦେବା
ମୋହର ମଇତ୍ର କରିବା । ୨୬
ସମସ୍ତେ ଶୁଣ ମୋ ଉତ୍ତର
ତୁମ୍ଭେ ତିଆଅ ଧନୁ ଘର
ଶୁକ୍ଳ ଚତୁର୍ଦ୍ଦଶୀ ଦିନେ
ପୂଜା କରିବ ବିପ୍ରମାନେ
ଛେଳି ମଇଁଷି ବଳି ଭୋଜା
କ୍ଷେତ୍ରପାଳଙ୍କୁ କର ପୂଜା
ଘୋଷଣା ଦିଅ ଗୃହଦ୍ୱାରେ
ଗ୍ରାମ ପାଟଣା ପୁରଦ୍ୱାରେ
ଜନ ପରଜା ଯେତେ ଦୁଃଖୀ
ଆସିବେ ଧନୁଯାତ୍ରା ଦେଖି
ଦେବଇଁ ଧନ ବସ୍ତ୍ର ଅନ୍ନ
ତୁଳାପୁରୁଷ ଆଦି ଦାନ । ୨୭
ଏମନ୍ତ କହି କଂସ ଗଲା
ଭିତର ପୁରେ ବିଜେ କଲା
ଅକ୍ରୂର ନାମେ ମନ୍ତ୍ରିବର
ଯାଦବବଂଶେ ବଳୀୟାର
କଂସର ବିଶ୍ୱାସ ଅପାର
ଡକାଇ ଆଣିଲା ସତ୍ୱର
ତାହାର କରେ ହସ୍ତ ଦେଇ
କହଇ ଏକାନ୍ତେ ବସାଇ

ହେ ମନ୍ତ୍ରି ! ଶୁଣ ମୋ ଉତ୍ତର
ବିଶ୍ୱାସୀ ଅଟୁ ଯେ ମୋହର
ଇଷ୍ଟ ବନ୍ଧୁରେ ସତ୍ୟ କହି
ହେବୁ ପୁରାଣେ ଏ ଅଛଇ
ତୋ ଠାରୁଁ ନାହିଁ ମୋର ହିତ
ତୁ ମୋର ପ୍ରାଣ ପଞ୍ଚଭୂତ
ତୋହର ବଳେ ଆଜ ମୁହିଁ
ଶତ୍ରୁ ସଂହାରିବି ଲୋଡ଼ଇ
ଯେସନେ ବୃଷ୍ଟି ଆଶ୍ରେ କରି
ଦେବେ ହୁଅନ୍ତି ସୁଖଭରି । ୨୮-୩୦
ନନ୍ଦ ଗୋକୁଳେ ବେଗେ ଯାଅ
ମୋହର ହିତେ ଯେବେ ଥାଅ
ତୁମ୍ଭର ବଳେ ମୁଁ ନିଶ୍ଚିନ୍ତ
ହେ ମିତ୍ର ! କହିଲଇ ସତ୍ୟ
ବସୁଦେବର ପୁତ୍ର ଦୁଇ
ରାମ ଗୋବିନ୍ଦ ହେନଭାଇ
ଥୋଇଲା ନେଇ ନନ୍ଦଘରେ
ଲୁଚାଇ ବସୁଦେବ ଡରେ
ତୁ ବେଗେ ରଥ ଘେନଯାଅ
ମୋର ସ୍ମୁମୁରେ ଆଣିଦିଅ । ୩୧
ଦେବକୀ ବିଭା ହେଲାବେଳେ
ମୋତେ ଯା ଦେବେ କହିଥିଲେ
ସେ କଥା ହୋଇଲା ଯୁକତେ
ନାରଦେ କହିଗଲେ ମୋତେ
ମୋତେ ମାରିବେ ହେନଭାଇ
ସେ କଥା ଉଚିତ ଯେ ହୋଇ
ଗୋକୁଳେ ଥାଇ ବଳୀୟାର
ଅନେକ ମାଇଲେ ଅସୁର
ବାହୁଡ଼ କାହୁଁ ତାଙ୍କୁ ଧରି
ବେଗେ ମୁଁ ପକାଇବି ମାରି

ତେବେ ମୋହର ମନ ସ୍ଥିର
ହେ ମିତ୍ର ! ଧନୁଅଛି କର
ନନ୍ଦ ଯଶୋଦା ତାଙ୍କ ସଙ୍ଗେ
ଘେନାଇଁ ଆସ ଯାଇଁ ବେଗେ
ଗୋରସ ଆଣ ଶଗଡ ଭରି
ଧନୁଁ ଉତ୍ସବ ଯାହା ମୋର । ୩୨
ଆଣାଇ ମଥୁରାନଗରେ
ବନ୍ଦୀ କରିବି ବନ୍ଦୀଘରେ
ରାମ ଗୋବିନ୍ଦେ ଅଣାଇବି
ହସ୍ତି ର ପାଦେ ମନ୍ଥାଇବି
ଯେବେ ଉବୁରିବେ ସେଠାରୁ
ମାଲେ ଅଛନ୍ତି ମହାମେରୁ
ଏହାଙ୍କ ହସ୍ତେ ମରାଇବି
ତେବେ ସେ ଜୀବନ ପାଇବି । ୩୩
ନନ୍ଦ ଯଶୋଦା ବସୁଦେବ
ଦେବକୀ ଯେତେକ ଯାଦବ
ଏହାଙ୍କୁ ପେଷି ଯମପୁର
ତେବେ ଜୀବନ ସ୍ଥିର ମୋର । ୩୪
ଉଗ୍ରସେନକୁ ଧରି ଆଣି
ଏଠାରେ ପକାଇବି ହାଣି
ଦେବକ ନାମେ ତାର ଭାଇ
ମୋର ମରଣ ସେ ଲୋଡ଼ଇ
ମୋର ବଇରୀ ଅଛନ୍ତି ଯେତେ
ହେ ମିତ୍ର ! ମାରିବି ଏମନ୍ତେ
ତେବେ ସେ ମହୀ ଅକଣ୍ଟକ
ଭୋଗ କରିବି ମୁହିଁ ଏକ । ୩୫,୩୬
ଶ୍ୱଶୁର ଜରାସନ୍ଧ ମୋର
ସଙ୍ଗାତ ଦ୍ୱିବିଦ ବାନର
ଆବର ନାରକା ଅସୁର
ବଡ଼ ସୁହୃଦ ବାଣାସୁର

ଏ ମୋର କଚ୍ଛେ ବଳୀୟାର
ମୋତେ ଉରଇ ସୁନାଶୀର । ୩୭
ହେ ମିତ୍ର ! ଯାଅ ବେଗ ହୋଇ
ଧନୁ ଉତ୍ସବ ଯାତ୍ରା କହି
ବହନ ଆଣ ବେନଭାଇ
ମିତ୍ର ମୋହର ଯେବେ ତୁହି
ଏମନ୍ତେ କଂସ ବୋଲ ଶୁଣି
ଅକ୍ରୂର ମନେ ମନେ ଗୁଣି
ବୋଲଇ ଶୁଣ ନରନାଥ !
ଏ କଥା ତୋହର ଉଚିତ
ରିପୁକୁ ବୁଦ୍ଧି ବଳେ ମାର
ତେବେ ଜୀବନ ସୁଖେ ଧର
କହଇ ଶୁଣ ନରେଶ୍ୱର !
ଦଇବବଳ ବଳୀୟାର
ଯେ ଯାହା କର୍ମଫଳ ବଳେ
ଭୋଗ କରନ୍ତି ମହୀତଳେ
ମର୍ତ୍ତ୍ୟେ ମାନବ ଦେହ ବହି
ଲାଭ ଅଲାଭ ନ ଜାଣଇ
ଯେ ଯାହା ପୂର୍ବେ ଥାଇ କରି
ଭୁଞ୍ଜଇ ସେ ଫଳ ଆବୋରି
ଶୋକ ହରଷ ବେନି ପଥେ
ମିଳନ୍ତି କର୍ମର ଆୟତ୍ତେ
ତୋହର ଆଜ୍ଞା ଶିରେ ଘେନି
ହେ ମିତ୍ର ! ଯିବି ଏହିକ୍ଷଣି । ୩୮-୪୦
ଶୁଣି ହରଷ ଭୋଜ ରାଜା
ଅକ୍ରୂରେ କଲା ମିତ୍ର ପୂଜା
କଂସ ପଶିଲା ଅନ୍ତଃପୁର
ଅକ୍ରୂର ହୋଇଲା ବାହାର
ମିଳିଲା ନିଜ ଘରେ ଯାଇଁ
ଗୋବିନ୍ଦ ପାଦେ ଚିତ୍ତ ଦେଇ । ୪୧
କହଇ ଦାସ ଜଗନ୍ନାଥ
ଅକ୍ରୂର ସଜ କଲା ରଥ
ସେ ରଥ ପଛେ ଥାଇ ଧୀରେ
ମନ ମୋ ଯାଉ ଗୋପପୁରେ
ସୁଜନେ ଆସ ସଙ୍ଗତରେ
କୃଷ୍ଣ ଦେଖିବା ବେନି ଡୋଳେ
ଅକ୍ରୂର ରଥେ ମନ ଥୁଅ
ସଂସାରସୁଖେ ଧ୍ୱଂସ ନୁହ
ବାରେ ଦେଖିଲେ କୃଷ୍ଣରୂପ
ଆଉ କି ଥିବ ମନ ତାପ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅକ୍ରୂର ସମ୍ପ୍ରେଷଣଂ
ନାମ ଊନଚତ୍ୱାରିଂଶୋଽଧ୍ୟାୟଃ । ୩୯ ।



# ଚତ୍ୱାରିଂଶ ଅଧ୍ୟାୟଃ

( ମୂଳାନୁସାରେ ୩୭ଶ ଅଧ୍ୟାୟ )

ସପ୍ତତ୍ରିଂଶେ ହତେ କେଶି-ନ୍ୟଚ୍ୟୁତୋ ଗ୍ରବକର୍ମଭିଃ
ନାରଦେନ ସ୍ତୁତଃ କ୍ରୀଡନ୍ ବ୍ୟୋମାସୁରମଥାବଧୀତ୍ । ୦ ।

କେଶୀ ଅସୁର ବ୍ୟୋମ ନାଶ । ଚରିତ ଅଧ୍ୟା ଚତ୍ୱାରିଂଶ ।

ଶ୍ରୀ ଶୁକ ଉବାଚ

ଶୁଣ ରାଜନ ! କୃଷ୍ଣଲୀଳା
କେଶୀ ଯେ ବୃନ୍ଦାବନେ ଗଲା
ରଜନୀ ହୋଇଲା ପ୍ରଭାତ
ଗଗନେ ଉଦେ ସୂର୍ଯ୍ୟକାନ୍ତ
ଅଶ୍ୱର ପ୍ରାୟେ ରୂପ ଧରି
ଦେଖି ଗଗନେ ଦେବେ ଡରି
ମନହୁଁ ବେଗବନ୍ତ ହୋଇ
କୋପେ ଖୋଳଇ ଖୁରେ ମହୀ
କାନ୍ଧ ଝାଡ଼ଇ ନାଚ ମାରି
ଗଗନେ ପଡୁଅଛି ହରି
ବିମାନେ ବସି ଦେବତାଏ
ଉଡ଼ଣ ଗଲେ ଲାଞ୍ଜବାୟେ
ଗୋରୁଏ ପଳାଇଲେ ଛନ୍ଦେ
ପଶିଲେ ଘୋର କୁଞ୍ଜବନେ
କେଶୀର ନିଃଶ୍ୱାସ ପବନେ
ଉଡ଼ିଲେ ବୃକ୍ଷ ଘୋର ଶୂନ୍ୟେ । ୧
ଶବଦ ଶୁଣି ମହାଘୋର
ଗୋବିନ୍ଦ ହୋଇଲେ ବାହାର
ଦେଖିଲେ ଗୋପର ବିକଳ
ଶୂନ୍ୟେ ପଳାନ୍ତି ମେଘମାଳ

ଦେବେ ଗଗନ ଗଲେ ଛାଡ଼ି
ଶୁଣି ଦଇତ୍ୟ ଘୋର ରଡ଼ି
ଦେଖିଲେ ମଦନଗୋପାଳ
ଅସୁରତେଜ ଅନର୍ଗଳ
କଂସ ଆଦେଶେ ମହାବଳୀ
ଲୋଡ଼ଇ ରାମ ବନମାଳୀ
ଅସୁଖ ବିଚାରଇ ମନେ
କୃଷ୍ଣଙ୍କୁ ଦେଖିବି କେସନେ
ଲୁଚାଇ ଅଛି ବସୁଦେବ
ମୋହିର ଡରେ ପଳାଇବ
ମୁଖ ବିସ୍ତାରି ବେଗେ ଧାଇଁ
ଗିଳିବି ମୁହିଁ ବେନଭାଇ
ଏମନ୍ତେ ବିଚାରି ଆନନ୍ଦେ
ମିଳିଲା ଗୋପପୁର ମଧ୍ୟେ
ଗୋପବାଳକ ମଧ୍ୟେ ଥାଇ
ଦେଖିଲା ପ୍ରଭୁ ଭବଗ୍ରାହୀ
ଗୋପ କୁମର କନ୍ଧେ ହସ୍ତ
ଆଗ ହୋଇଲେ ଗୋପୀନାଥ
ଗୋବିନ୍ଦ କଲେ ଶିଙ୍ଗାନାଦ
କେଶୀ ପାଇଲା ମନେ ଖେଦ
ମୁଖ ବିସ୍ତାରି କୋପଭରେ
ଧାଇଁଲା ପବନହୁଁ ଖରେ

ମୁଖେ କ ପିଉଛୁ ଆକାଶ
ମିଳିଲା ଗୋବିନ୍ଦର ପାଶ
ଉଠାଇ ପଛ ବେନି ପାଦେ
ପିଟିଲା ଗୋବିନ୍ଦର ହୃଦେ । ୨,୩
ଗୋବିନ୍ଦ ବଞ୍ଚାଇଲେ ତାହା
ବଜ୍ରହୁଁ ଅଧିକ ଯାର ଦ୍ୱିଆ
ଚରଣ ଧରି ବାମ କରେ
ପକାଇଦେଲେ କୋପଭରେ
ଗରୁଡ ଯେହ୍ନେ ନାଗ ଧରି
ପକାଇ ରହଇ ଆବୋରି । ୪
ପୁଣି କ୍ଷଣକେ ଜ୍ଞାନ ପାଇ
କେଶୀ ଧାଇଁଲା ରୋଷ ବହି
ବିସ୍ତାରି ଦେଖି ତାର ତୁଣ୍ଡ
କୃଷ୍ଣ ଭରିଲେ ଭୁଜଦଣ୍ଡ
ସର୍ପ ପଶଇ ଯେହ୍ନେ ବିଳେ
ଦେଖି ହସନ୍ତି ଗୋପବାଳେ
ଦଇତ୍ୟ କାମୋଡ଼ିଲା କର
ଦନ୍ତ ଝଡ଼ିଲା ତା ଅଧର
ତପତ ଫାଳ ଯେହ୍ନେ କର
ଗିଳି ନ ପାରିଲା ଅସୁର
ବଢିଲା ଯେହ୍ନେ ଗିରିବର
ପୂରିଲା ଅସୁର ଗର୍ଭର
ଗର୍ଭ ମନ୍ଥିଲେ ବାହୁଦଣ୍ଡେ
ଖୁଆ ହେସନେ ଦଧିଭାଣ୍ଡେ
ନିରୋଧ ହୋଇ କଣ୍ଠଦ୍ୱାର
ବିସ୍ତାରି କରି ଗୋଡ଼ ଖୁର
ବେଗେ ଛାଡ଼ିଲା ମଳ ମୂତ
ପଡ଼ି ହୋଇଲା ମୂରୁଛିତ
ବେନି ଲୋଚନ କଲା ସ୍ଥିର
ଜୀବନ ଛାଡ଼ିଲା ଅସୁର । ୫-୭

ଦେଖନ୍ତି ସ୍ୱର୍ଗେ ଦେବତାଏ
ପଶିଲା ଗୋବିନ୍ଦର ଦେହେ
ପାଇଲା ମୁକତି ପ୍ରାପ୍ତ ହୋଇ
ଅସୁର ପଡ଼ିଲା ମିଳାଇ
ତାହାର ଗର୍ଭୁଁ ଦାମୋଦର
ଫେରି ଆଣିଲେ ନିଜ କର
ଦେଖି ଆନନ୍ଦ ଦେବତାଏ
ଆକାଶେ କଲେ ଜୟେ ଜୟେ
ପୁଷ୍ପ ବରଷିଲେ ଗହଳ
ସ୍ତୁତି କରନ୍ତି ଦେବବଳ । ୮
କେଶୀ ମରଣ ଦେଖି ହସି
ଆସି ମିଳିଲେ ଦେବଋଷି
ଏକାନ୍ତେ ଦେଖି ନରହରି
ସ୍ତୁତି କରନ୍ତି ପାଦେ ପଡ଼ି
ଉଠି ଗୋବିନ୍ଦ ମୁଖ ଚୁମ୍ବି
ବୋଲନ୍ତି ଶିରେ କର ଦେଇ । ୯

## ନାରଦ ଉବାଚ

ହେ ପ୍ରଭୁ କୃଷ୍ଣ ଯୋଗେଶ୍ୱର !
ଯାଦବ ବଂଶର ଠାକୁର
ଜ୍ଞାନୀ ଚିନ୍ତନ୍ତି ତୋତେ ନିତ୍ୟ
ଅଶେଷ ଜନ୍ତୁ ହୃଦଗତେ
ଜ୍ୟୋତି ସ୍ୱରୂପ ନିରଞ୍ଜନ
ସକଳ ଆତ୍ମାରେ ଅଭିନ୍ନ
ମନ ବୁଦ୍ଧିଙ୍କ ଅଗୋଚର
ମହାପୁରୁଷ ତୁ ଈଶ୍ୱର
ତୋହର ମାୟା ତୁ ଆବୋରି
ଶରୀର ଧରୁ ନରହରି
ସଂସାର କରୁ ତୁ ଭିଆଣ
ସୃଷ୍ଟି ପାଳନ ସଂହାରଣ । ୧୦-୧୨

ଭାର ହରାରେ ତୋର ଦେହ
ସାଧୁଙ୍କୁ ରଖି ଭବଗ୍ରାହ୍ମ !
ଲୀଳାଏ ମାଇଲୁ ଅସୁର
ଦେଖି ଡରନ୍ତି ସୁର ନର
ଏ କେଶୀ ଦଇତ୍ୟର ତ୍ରାସେ
ଦେବେ ନ ରହନ୍ତି ଆକାଶେ । ୧୩, ୪
ହେ ନାଥ ! ଶୁଣ ଚକ୍ରଧର
ମାରିବୁ ମୁଷ୍ଟିକ ଚାଣୁର
ଧନୁ ଭାଙ୍ଗିବୁ ବାମକରେ
ହସ୍ତୀ ମାରିବୁ ରଙ୍ଗଦ୍ୱାରେ
କଂସ ମାରିବୁ ଓୃରିଦନେ
ରାଜ୍ୟ ନବେଶି ଉଗ୍ରସେନେ
କଂସର ଅଷ୍ଟ ମଲ୍ଲ ନାଶି
ଯାଦବ ବଂଶକୁ ଆଶ୍ୱାସି
କାଳଯବନ ଶଙ୍ଖାସୁର
ମୁର ନାରକା ବେଗେ ମାରି
ଇନ୍ଦ୍ର ଭୁବନୁଁ ପାରିଜାତ
ବଳେ ଆଣିବୁ ଗୋପୀନାଥ । ୧୫,୧୬
ବୀର ରାଜାଙ୍କ କନ୍ୟା ଆଣି
ବିଭା ହୋଇବୁ ଚକ୍ରପାଣି
ଜରାସନ୍ଧର ଭୟୁ ପାଇ
ସମୁଦ୍ରେ ଦ୍ୱାରକା ଭିଆଇ
ନୃଗ ରାଜାଙ୍କୁ ଦେବୁ ସୁଖ
ନାଶିବୁ କୃକଳାସ ରୂପ । ୧୭
ତୋହର ପୁରେ ଶଙ୍କାଜାତ
ତୋତେ ଡ଼ରିବ ଗୋପୀନାଥ !
ସତ୍ୟଭାମାର ଭୁଲେ ମଣି
ତୋହର ପାଦେ ଦେବ ଆଣି
ଯମର କରୁ ପୁତ୍ର ଆଣି
ତୋଷିବୁ ଗୁରୁଙ୍କ ଘରଣୀ । ୧୮

ଘୋର ଦଇତ୍ୟ ପୁଣ୍ଡ୍ରଶାଳ
ତାହାକୁ ମାରି ଦେବୁ ମୋକ୍ଷ
ଦହନ କରି କାଶୀପୁର
ଯୁଦ୍ଧେ ମାରିବୁ ଦନ୍ତବକ୍ର
ପାଣ୍ଡବଯଜ୍ଞ ସଭା କାଳେ
ଚକ୍ରେ ଛେଦିବୁ ଶିଶୁପାଳେ । ୧୯
ଦ୍ୱାରକାପୁରେ ବନମାଳୀ
ଯେତେ କରିବୁ ରସକେଳୀ
ମୁଁ ତାହା ଦେଖିବି ଲୋଚନେ
ପୁରାଣେ ଶୁଣିଅଛି କର୍ଣ୍ଣେ
ଅର୍ଜୁନ ରଥେ ତୁ ସାରଥି
ମୁଁ ପୁଣି ଥିବି ତୋର କତି
ଅନେକ ରାଜା ସୈନ୍ୟବଳ
ସଂହାର କରିବୁ ସକଳ । ୨୦,୨୧
ଜ୍ୟୋତି ସ୍ୱରୂପ ନିରଞ୍ଜନ
ଆଦି ଅନାଦି ଠୁଳ ଶୂନ୍ୟ
ଅଶେଷ ପୁଣ୍ୟଫଳ ଦାତା
ତୁ ଟ୍ରସ ଜଗତ ମାତା ପିତା
ଆପଣା ମହିମା ବିସ୍ତାରି
ଗୁଣ ପ୍ରକାଶୁ ନରହରି ।
ମନୁଷ୍ୟ ଦେହେ ଅବତାର
ଯାଦବ ବଂଶର ଠାକୁର
ଏମନ୍ତେ ବ୍ରହ୍ମାର ନନ୍ଦନ
ଆନନ୍ଦେ କଲେ ସାମଗାନ । ୨୨-୨୩
ଗୋବିନ୍ଦ ଆଜ୍ଞା ଶିରେ ଘେନି
ଗଲେ ନାରଦ ମହାମୁନି
ଏମନ୍ତେ ଅସୁର ସଂହାରି
ଗୋପେ ବିଜୟେ ନରହରି । ୨୪,୨୫
ଏବେ ହୋ ଶୁଣ ନରନାଥ !
କୃଷ୍ଣର ଲୀଳା ଭାଗବତ ।

ବନେକ ପ୍ରଭୁ ଭଗବାନ
ବାଳକମେଳେ ଗଲେ ବନ
ଗିରି କାନନ ଘୋର ବନେ
ଗାଈ ଚରାନ୍ତି ଗୋଷମନେ
ହସି ବୋଲନ୍ତି ଦାମୋଦର
ବାଳକେ ଶୁଣ ମୋ ଉତ୍ତର
ଏମନ୍ତ ଖେଳ ଅଛି ମୋର
ଥୋକାଏ ହୁଅ ତୁମ୍ଭେ ଚୋର
ଥୋକାଏ ହୁଅ ପଶୁଗଣ
ଛାଗଳ ମହିଷି ହରିଣ
ଥୋକାଏ ହୁଅ ରାଜପାଳି
ଖେଳିବା କଦମ୍ବର ତଳି
ଥୋକାଏ ହୁଅ ଦଣ୍ଡ ଆସି
ହସି କହନ୍ତି ବ୍ରହ୍ମରାଶି । ୨୭
ତକ୍ଷଣେ ହରି ସନମତ
ପୋଏ ହୋଇଲେ ଯୂଥ ଯୂଥ
ଥୋକେ ହୋଇଲେ ଘରବାସୀ
ଥୋକାଏ ଚୋର ଦଣ୍ଡ ଆସି
ଏମନ୍ତେ ଖେଳ ଲୀଳା କରି
ଖେଳନ୍ତି ବନେ ନରହରି । ୨୮
ଶୁଣ ରାଜନ ବପରୀତ
ଅସୁର ମିଳିଲା ତୁରିତ
ମୟ ଦଇତ୍ୟର କୁମର
ନାମ ତାହାର ବ୍ୟୋମାସୁର
ମାୟା ଗୋପାଳ ରୂପ ଧରି
ଅନେକ ନେଲା ଚୋରିକରି
ଗିରି କୋଠରେ ଲୁଚାଇଲା
ଦ୍ୱାରେ ପାଷାଣ ଆଚ୍ଛାଦିଲା
ପୁଣ ଚୋରାଇ ନେଇ କରି
ଦ୍ୱାର କଳଇ ଆଣ୍ଡକରି

ଏମନ୍ତ ନେଲା ବେଳ ଦଶ
ରହିଲେ ଚୋର ପାଞ୍ଚ ଶେଷ । ୨, ୨୯
ଗୋପକୁମରଙ୍କୁ ଅନାଇଁ
ଜାଣିଲେ ପ୍ରଭୁ ସ୍ୱବଗ୍ରାହି
ଦଇତ୍ୟ ମୋତେ ମାୟା କଲା
ମୋର ବାଳକ ଚୋରାଇଲା
ଭଲତ କଲା କେଳିରସ
ମୋର ଗୋପାଳେ ଗଲେ ନାଶ
ଦଇତ୍ୟ ନେଇ ଗିରିବରେ
ଲୁଚାଇ ଢାଙ୍କିଛି ଦୁଆରେ
ଧାଇଁଲେ ପ୍ରଭୁ ଚକ୍ରଧର
ମିଳିଲେ ପର୍ବତକନ୍ଦର
ବେନି ବାଳକ ଯାକ କାଖେ
ଦଇତ୍ୟ ଯାଇଁ ଗିରିପାଖେ
ତାହାର କେଶ ବାମକରେ
କୃଷ୍ଣ ଧଇଲେ କୋପଭରେ
ତକ୍ଷଣେ ନିଜ ରୂପ ହୋଇ
ଲେଉଡ଼ି ଛଡ଼ାଇ ପଳାଇ । ୩୦, ୩୧
ଧଇଲେ କୃଷ୍ଣ ତାର ହସ୍ତ
ଘୁରାଇ ପକାଇଲେ ପଥ
ପଶୁଙ୍କ ପ୍ରାୟ ମୁଣ୍ଡ ମୋଡ଼ି
ଅସୁର କଲା ଘୋର ରଡ଼ି
ତକ୍ଷଣେ ଛାଡ଼ିଲା ଜୀବନ
କୃଷ୍ଣର ଦେହେ ହେଲା ଲୀନ । ୩୨
ପର୍ବତକୋଠ ଦ୍ୱାରେ ଯାଇ
ଦ୍ୱାର ଫେଡ଼ିଲେ ସ୍ୱବଗ୍ରାହି
ଗୋପ ବାଳକ ଉଦ୍ଧରିଲେ
ଦେବେ କୁସୁମ ବରଷିଲେ
ଆନନ୍ଦେ ଘେନି ନିଜ ବାଳ
ଗୋପେ ମିଳିଲେ ଆଦ୍ୟମୂଳ । ୩୩

ଏବେ ସରିଲା ବାଲକେଳି
ବନ ବିହାର ବନମାଳୀ
ତାରିଲେ ଗୋପେ ନରନାରୀ
ଭକତବନ୍ଧୁ ନରହରି
ଭକତି ଜନ ତାରିବାରେ
ଗୋରୁ ଚରାଇ ବନଘୋରେ
ବାଳକ ରୂପେ ଅବତାର
ବଢ଼ିଲେ ନନ୍ଦର ମନ୍ଦିର
ମଥୁରାପୁର ନର ନାରୀ
ପୂର୍ବେ ଅଛନ୍ତି ତପ କରି
ନୟନେ ଦେଖି କୃଷ୍ଣରୂପ
ଖଣ୍ଡିବେ ଭବବନ୍ଧ ତାପ
ସୁଜନ ଜନେ ଶୁଣ ଧୀରେ
ହରିଚରିତ କର୍ଣ୍ଣଦ୍ୱାରେ
ରାମ ଗୋବିନ୍ଦ ବାଲକେଳି
ଗୁନ୍ଥି ଲମ୍ବାଅ କଣ୍ଠେ ମାଳୀ
ଚିତ୍ତ ନିବେଶି କୃଷ୍ଣପାୟେ
ନ ବୁଡ଼ ଭବ ଜଡ଼ ମୋହେ
କହଇ ଦାସ ଜଗନ୍ନାଥ
ଗୀତ ବିନୋଦ ଭାଗବତ
ଭକତ ଜନେ ଏହା ଗାଇ
କୃଷ୍ଣଲୀଳାରେ ମନ ଦେଇ
ହୋଇବ ଭବଜଳୁଁ ପାର
ଏଣେ ବିଶ୍ୱାସ ପ୍ରାଣି ! କର ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ କେଶୀ ବ୍ୟୋମାସୁର ବଧୋ
ନାମ ଚତ୍ୱାରିଂଶୋଽଧ୍ୟାୟଃ ॥ ୪୦ ॥



## ଏକଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୩୮ଶ ଅଧ୍ୟାୟ )

ଅଷ୍ଟତ୍ରିଂଶେ ଯଥା ଧ୍ୟାୟନ୍ ଅକ୍ରୂରୋ ଗୋକୁଲଂ ଗତଃ ॥
ତଥୈବ ରାମକୃଷ୍ଣାଭ୍ୟାଂ ଗୃହଂ ନୀତ୍ୱା ସୁସତ୍କୃତଃ ।୧।

ଏକଚତ୍ୱାରିଂଶ ଅଧ୍ୟାୟରେ । ଅକ୍ରୂର ପ୍ରବେଶ ଗୋପରେ । ୦ ।

ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର
ଶୁଣ ପରୀକ୍ଷ ନୃପବର !
ଏଣେ ହୋଇବୁ ତୁ ନିସ୍ତାର
ହେଲେ ତରିବୁ ଭବବାର
କଂସ ଆଦେଶ ଘେନି ଶିରେ
ଅକ୍ରୂର ବସିଲା ରଥରେ

ଅରୁଣତେଜ ପ୍ରକାଶିଲା
ଦିଗ ଆନନ୍ଦେ ବିକାଶିଲା
ବ୍ରାହ୍ମଣେ ଉଠି ରବି ଅନ୍ତେ
ସ୍ତୁତି କରନ୍ତି ବେଦମତେ
ମଙ୍ଗଳ ସ୍ୱରେ ବେଦଧ୍ୱନି
ଚଳଲେ ତପୋବନେ ମୁନି
ଜନେ ସୁମରନ୍ତି ମୁରାରି
ଯେ ଯାହା ମତେ ସ୍ତୁତି କରି
ମଳିନ ହୋଇ ତାରାଗଣ
ନିର୍ମଳ ଦିଶିଲା ଗଗନ
ଉତ୍ତର ଦିଗେ ବଳୀୟାର
ପବନ ବହଇ ମନ୍ଥର
ଶଙ୍ଖ ଶବଦ, ଜନ ଗୋଳେ
ଅମରଗୁରୁ ଲଗ୍ନ ବେଳେ
ଅଶ୍ୱ ଯୋଚିଲା ରଥ-ଦଣ୍ଡେ
ମଙ୍ଗଳ ମଥୁରାକୁ ଦାଣ୍ଡେ ।୧
ମନେ ଚିନ୍ତଇ ଭଗବାନ
ଅକ୍ରୂର ହରଷ ବଦନ
ଚିନ୍ତଇ ପ୍ରଭୁ ଆଦିମୂଳ
ଆନନ୍ଦେ ବହେ ଅଶ୍ରୁ ଜଳ
ପଦ୍ମଲୋଚନ ପାଦ ତଳେ
ଜୀବ ଭକତି ଯୋଗ ବଳେ
ମନ ନିବେଶି କୃଷ୍ଣପାଦେ
ବୋଲେ ଆନନ୍ଦେ ଗଦଗଦେ । ୨
ପୂର୍ବେ ମୁଁ କରିଅଛି ପୁଣ୍ୟ
ତପ ସମାଧି ଯଜ୍ଞ ଦାନ
ଦେବ ବ୍ରାହ୍ମଣ ପୂଜା ବ୍ରତେ
ଧନ ବା ଦେଲି ବିପ୍ରହସ୍ତେ
କି ଅବା ଅଛି ତପ କରି
ଯେଣେ ଦେଖିବି ନରହରି

ଦୁର୍ଲ୍ଲଭ ପ୍ରାପ୍ୟେ ମୁଁ ମଣଇଁ
କୃଷ୍ଣ ଭେଟିବି ଅବା କାହିଁ । ୩
ବେଦପଠନ ଶୂଦ୍ରଜନେ
ଜଗତେ ଦୁର୍ଲ୍ଲଭ ଯେସନେ
ଗୋବିନ୍ଦ ଦରଶନ ମୋତେ
କେମନ୍ତେ ମିଳଇଁ ପରତେ
ଭବସାଗରେ ଦେହଧରି
କୋଟିକେ ଗୋଟିଏ ବା ତରି । ୪,୫
ଏମନ୍ତେ ଦୁଃଖ ମୋ ଦହନ
ଧନ୍ୟ ମୋହର ଦେହ ଜନ୍ମ
ଯେ ପାଦପଦ୍ମ ଯୋଗିଜନେ
ହୃଦେ ଲଗାନ୍ତି ଅବଧାନେ
ତହିଁ ଲାଗିବ ମୋର ଶିର
ଧନ୍ୟ ଏ ଜୀବନ ମୋହର । ୬
ମୋହରେ କଂସ ଦୟା କରି
ଯେଣେ ଦେଖିବି ନରହରି
ଅଶେଷ ଜନ୍ମ ଘୋର ତମ
ଆଜ ଗୁଡ଼ିବ ମାୟାଭ୍ରମ
ପାଦ ଯୁଗଳ ନଖ ତେଜ
ଦେଖି ତରିବ ଦେବରାଜ । ୭
ବ୍ରହ୍ମାଶଙ୍କର ଆଦି ଦେବେ
ଚିନ୍ତା କରନ୍ତି ପାଦଯୁଗେ
ଗୋପୀଙ୍କ କୁଚଯୁଗେ ଥାଇ
କୁଙ୍କୁମ ଲାଗିଅଛି ତହିଁ
ଗୋପକୁମର ମେଳେ ବନେ
ଗୋରୁ ଚରାଏ ଅବଧାନେ
ନନ୍ଦମନ୍ଦିରେ ତାହା ଦେଖି
ନିର୍ମଳ ହେବ ଚର୍ମ ଆଖି । ୮
ଅଶେଷ ତୀର୍ଥଙ୍କର ଘର
ସେବନ୍ତି ବ୍ରହ୍ମା ଶିବ ସୁର

କଳ୍ପବୃକ୍ଷର ପ୍ରାପ୍ତ ହୋଇ
ସକଳ ବାଞ୍ଛାଫଳ ଦେଇ
ସକଳ ସମ୍ପଦର ସାର
ସେବକଜନ-ସୁଖଘର
ଜନ୍ମ ମରଣ ପଥ ଦୁଇ
ଏଣେ ଯେ ଅଜ୍ଞାନେ ଭ୍ରମଇ
ତାହାଙ୍କ ବିଶ୍ରାମ ମନ୍ଦିର
ଭବନଦୀଘେ ଛଇ ସ'ର
ଦେଖିବି ସୁନ୍ଦର କପୋଳ
ନାସା ଶ୍ରବଣ ବେନ ଲୋଳ
ଅଳପ ହାସ୍ୟ ରଙ୍ଗ ମୁଖ
ଗୁଞ୍ଜ ଅଳକାପାନ୍ତି ରେଖ
ଶୁଭ ଲକ୍ଷଣ ଆଜ ଦିନେ
ଶୃଗାଳ ଯାଉଅଛୁ ବାମେ । ୯
ଭରା ନିବାରଣେ ମୁରାରି
ମର୍ତ୍ତ୍ୟମାନବ ଦେହ ଧରି
ଅତିସୁନ୍ଦର ଦେଖି ମୁଖ
ଖଣ୍ଡିବି ନୟନର ଦୁଃଖ । ୧୦
ଯାହାର ନାମ ଭବଗ୍ରାହୀ
କାର୍ଯ୍ୟ କାରଣ ଯାର ନାହିଁ
ସେ ରୂପେ ପୂରାଇ ଲୋଚନ
ଚେତିବି ମାୟା ମୋହ ଭ୍ରମ
ଯେ ଆତ୍ମମାୟାଯୋଗ କରି
ଗୋପୀ ଗୋପାଳ ମଧ୍ୟେ ହରି
ଯାହାର ଗୁଣ କର୍ମ ଘେନ
ଦ୍ୱିଜ ହରନ୍ତି ବ୍ରହ୍ମ ମୁନି
ପ୍ରାଣ ଧରନ୍ତି ଦୁଃଖ ସୁଖେ
ପବିତ୍ର କରି ତିନିଲୋକେ
ଏଣେ ଯାହାର ଚତ୍ତ ନାହିଁ
ପଶୁଙ୍କ ପ୍ରାପ୍ତ ସେ ଗାଅଇ । ୧୧-୧୨

ଅଂଶେ ମାନବଦେହ ଧରି
ଯାଦବବଂଶେ ଅବତରି
ଯଶ ବିସ୍ତାରି ଏହାଙ୍କର
ସତ୍ୟସ୍ୱରୂପ ଦାମୋଦର । ୧୩
ଯା ନାମ ପରମ ମଙ୍ଗଳ
ମହତଗତି ଆଦିମୂଳ
କୋମଳ ମନୋହର ରୂପ
ଦେଖି ତରିବି ଭବକୂପ
ଏ ଉଷ କା'ଳ ଶୁଭ ମୋତେ
ମଙ୍ଗଳ ମଥୁରାର ପଥେ । ୧୪
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ
ରଥୁଁ ଓହ୍ଲାଇବି ବହନେ
ବିମ ଗୋବିନ୍ଦ ପଦ୍ମପାଦେ
ପଡ଼ିବି ମୋକ୍ଷଫଳସଧେ
ଯୋଗୀ ଯା ଚନ୍ତେ ଧ୍ୟାନପଥେ
ଦେଖିବି ଗୋପାଳ ସମ୍ମେତେ । ୧୫
ପାଦେ ପଡ଼ିବି ଯେତେବେଳେ
କୃଷ୍ଣ ଧରିବେ ମୋତେ କୋଳେ
ଶିରେ ମୋ ଦେବେ ପଦ୍ମକର
ନାଶିବେ ଦୁଃଖ ମହାଘୋର
କାଳଭୁଜଙ୍ଗ-ଭୟ ପାଇ
ଯେ ନର ଶରଣ ପଶଇ
ସେ ପଦ୍ମକର ରଖେ ତାରେ
ବେଗେ ପଶଇ ସୁଖଘରେ । ୧୬
ଯେବଣ କରେ ଦାନ ଦେଇ
ବଳି ପାତାଳେ ଭୋଗ ପାଇ
ଭୁଞ୍ଜଇ, ପାଇ କୃଷ୍ଣପାଦ
ସ୍ୱର୍ଗେ ପାଇବେ ଇନ୍ଦ୍ରପଦ
ରାସଉତ୍ସବେ ବୃନ୍ଦାବନେ
ଯେବଣ ଭୁଜେ ଗୋପୀଜନେ

ସୁଗନ୍ଧ କୁଚେ ଲଗାଇଲେ
କାମ ଅନଳ ଲଭାଇଲେ । ୧୭
କଂସର ଦୂତ ବୋଲି ମୋତେ
କୋପ ନ ଥିବ ତାଙ୍କ ଚିତ୍ତେ
ସେ ତାହା ଅଛଇନା ଜାଣି
ଭକ୍ତବତ୍ସଳ ଚକ୍ରପାଣି
ସକଳ ଜନ୍ତୁହୃଦେ ଥାଇ
ଭାବ ଅଭାବ ସେ ଜାଣଇ । ୧୮
ମୁଁ ଯେ ଚରଣ ତଳେ ପଡ଼ି
ଶିରେ ଅଞ୍ଜଳି ଥିବ ଯୋଡ଼ି
ଅଳପ ହସି ବାଙ୍କେ ଚାହିଁ
ମୋତେ ଦେଖିବେ ଭାବଗ୍ରାହୀ
ତକ୍ଷଣେ ହୋଇବ ନିର୍ମଳ
ଭୟ ଘୁଞ୍ଚିଣ ରସେ ଭୋଳ
ଅତି ଉଷତେ ସୁଖ ପାଇ
ବୋଲିବ କୃଷ୍ଣ ! ହାହା ହାହା । ୧୯
ମୁଁ ତାର ଜ୍ଞାତି ସହୋଦର
ସୁହୃଦ ପଣହିଁ ବେଭାର
ମୋହର ବେନିଭୁଜ ଧରି
ତୋଳିବେ ରାମ ନରହରି
ପବିତ୍ର ହୋଇବଇଁ ମୁହିଁ
କୋଟିଏ ତୀର୍ଥ ପୁଣ୍ୟ ପାଇ
ନିକଟେ ଦେଖି ବ୍ରହ୍ମବାଣି
ଛେଦିବ କାଳଦଣ୍ଡ ପାଶି । ୨୦
କୃଷ୍ଣର ଅଙ୍ଗସଙ୍ଗ ପାଇ
ଲଭିବି ଶିରେ କର ଦେଇ
ଦାସବତ୍ସଳ ନରହରି
ମୋତେ ଡାକିବେ ନାମ ଧରି
ପବିତ୍ର ହୋଇବଇଁ ମୁହିଁ
ଆଉ ରହିବ ପାପ କାହିଁ ?
ତେବେ ସେ ଜନ୍ମସୁଖ ମୋର
ସଂସାର ପ୍ରାଣୀଙ୍କର ସାର । ୨୧
ଯାହାର ନାହିଁ ମିତ୍ର ବୈରୀ
ପ୍ରିୟ ଉଦାସ ଆଦିକରି
ତଥାପି ଭକତର ହିତ
ଭଜଇ ସୁରଦ୍ରୁମ ମତ । ୨୨
ରୋହିଣୀସୁତ ଦେଖି ମୋତେ
ବେଗେ କରିବେ କୋଳାଗ୍ରତେ
ଘରକୁ ନେଇ ମୋର ପାଶେ
ବସିବେ ସୁହୃଦ ବିଶ୍ୱାସେ
ବନ୍ଧୁ କୁଶଳ ପଚାରିବେ
ଜନ୍ମ ମରଣ ମୋ ନାଶିବେ
କଂସ ବଇରି ଅଛି ଯାହା
ଗୋବିନ୍ଦ ଜାଣନ୍ତି ନା ତାହା । ୨୩

ଶ୍ରୀ ଶୁକ ଉବାଚ

ରଥ ବାହିଲା ଖରତର
ଏମନ୍ତେ କରିଣ ବିଚାର
ଅସ୍ତ ହୋଇଲେ ଦିନକର
ଗୋକୁଳେ ମିଳିଲା ଅକ୍ରୂର । ୨୪
ବାଟେ ଦେଖିଲା ବାଲିକୁଦ
ପଡ଼ିଛି ଗୋବିନ୍ଦର ପାଦ
ଧ୍ୱଜ ଅଙ୍କୁଶ ପଦ୍ମ ଚିହ୍ନ
ଦେଖି ସାନନ୍ଦ କଲା ମନ
ପୁଲକ ହେଲା ରୋମରାଜି
ଅଶ୍ରୁ ଗଳଇ ଚକ୍ଷୁ ବୁଜି
ରଥୁ ପଡ଼ିଲା ବେଗେ ଡେଇଁ
ବୋଲଇ କୃଷ୍ଣ ! ହାହା ହାହା
ପାଦପଙ୍କଜ ଚିହ୍ନ ଧୂଳି
ଅକ୍ରୂର ଶିରେ ବେଗେ ବୋଳି

ଲୋଟଇ ପାଦଚିହ୍ନ ପରେ
ଚାଉଁଇ ବେନି ଭୁଜ ଶିରେ । ୨୫,୨୬
ଅକ୍ରୂର ଥାଇ ନିଜ ଘରେ
ଯାହା ଶୁଣିଛି କର୍ଣ୍ଣଦ୍ୱାରେ
ତାହାର ପାଦଚିହ୍ନ ପାଇ
ଉଠିଣ ଆନନ୍ଦେ ନାଚଇ
ଆନନ୍ଦସାଗରେ ବୁଡ଼ିଲା
ଦେହ ଜୀବନ ପାଶୋରିଲା । ୨୭
ଏମନ୍ତେ ଖଣ୍ଡେ ଦୂର ଯାଇଁ
ଅକ୍ରୂର ଦୂରୁଁ ଦେଲା ଚାହିଁ
ଦେଖିଲା ଗୋପାଳଙ୍କ ମେଳେ
ଗୋରୁଏ ଅଛନ୍ତି ଗହଳେ
ଗାଈ ଦୁହାଁନ୍ତି ଗୋପପୋଏ
ଶବଦ ସମୁଦ୍ରର ପ୍ରାୟେ
କ୍ଷୀର ଢାଳନ୍ତି ଘଟେ ନେଇ
ପୁଣ ଦୁହାଁନ୍ତି ଗୀତ ଗାଇ
ସେ ଯାହା ଅନୁରୂପେ ରୂପ
ଦିଶନ୍ତି ଏକଇ ସ୍ୱରୂପ
କଙ୍କଣ ନୂପୁର ବାଜଇଣି
ବିବିଧ ଛନ୍ଦରେ କାଛେଣି
ମୟୂରପୁଚ୍ଛ ଗୁଞ୍ଜି ଶିରେ
ସୁରଙ୍ଗ ପାଦୁକା ପୟରେ
ଗୋରୁଙ୍କ ଲଙ୍ଗ ଧୂଳି ଅଙ୍ଗେ
ଭୂଷଣ ଗୋପାଳଙ୍କ ସଙ୍ଗେ
ଛନ୍ଦ ଦଉଡ଼ି ଧେନୁ କରେ
ବାଛୁରି ଛନ୍ଦନ୍ତି ସଧୀରେ
ଶ୍ରବଣେ ଶୋଭଇ କୁଣ୍ଡଳ
କଣ୍ଠେ ଲମ୍ବଇ ବନମାଳ
ଅକ୍ରୂର ଦେଖି ବିସ୍ମରଇ
ରାମ ଗୋବିନ୍ଦ ନ ଚିହ୍ନଇ

ସବେ ଦିଶନ୍ତି ଏକମତ
ମୁଁ ଅବା ଜାଣିବି କେମନ୍ତ
ଦାସବତ୍ସଳ ଭଗବାନ
ଜାଣିଲେ ଅକ୍ରୂରର ମନ
ତକ୍ଷଣେ ନିଜ ରୂପ ହୋଇ
ଗାଈ ଦୁହାଁନ୍ତି ବେନିଭାଇ
ଧବଳ ତନୁ ରାମକାୟେ
କୋଟି ଶଶାଙ୍କ ସମ ନୋହେ
ନୀଳ ପଡନୀ କଟୀଭାଗ
ରଙ୍ଗ ବସନ୍ତ ଶିରେ ପାଗ
ଶିରେ ସପତ ନାଗଫଣି
କରେ କଙ୍କଣ କଣ୍ଠେ ମଣି
କର୍ଣ୍ଣେ କୁଣ୍ଡଳ ରତ୍ନ ସାର
ନବଢ଼ ସୁରଙ୍ଗ ଅଧର
କୃଷ୍ଣେ ଦେଖିଲା ବାମ ପାଶେ
ଗୁଞ୍ଜି ମୟୂରପୁଚ୍ଛ ଶିଖେ
ନୀଳ ଜୀମୂତ ତନୁ ଶୋହେ
କୋଟିଏ କାମ ତୁଲ୍ୟ ନୋହେ
ଶ୍ରବଣେ ମକରକୁଣ୍ଡଳ
ହୃଦେ ଲମ୍ବାଇ ବନମାଳ
ଶ୍ରୀବତ୍ସଚିହ୍ନ ପୀତବାସ
ରଙ୍ଗ ଅଧରେ ମନ୍ଦହାସ
ରତ୍ନ କଠାଉ ପାଦଯୁଗେ
ମଣି ମେଖଳା କଟୀଭାଗେ
କ୍ଷୀରକଣିକା ନୀଳ ଦେହେ
ଦିଶନ୍ତି ନକ୍ଷତ୍ର ପରାୟେ
ଲୋଚନ ପଦ୍ମ ପ୍ରାୟେ ଦିଶି
ମହାମହିମା ବ୍ରହ୍ମରାଶି
ଅକ୍ରୂର ମନେ ବିସ୍ମରଇ
ଭେଟିଲା ପ୍ରଭୁ ଭବଗ୍ରାହୀ

ଏ ସେ ରୋହିଣୀସୁତ ରାମ
ସୁନ୍ଦରପଣେ ନାହିଁ ସମ
ଆଜାନୁଭୁଜ ବଳୀୟାର
ମଣ୍ଡା ସିଂହକୁ ପଟାନ୍ତର
ବିକ୍ରମ ସିଂହ ପ୍ରାୟେ ହୋଇ
ଏ ସେ ଗୋବିନ୍ଦ ବେନିଭାଇ
ସ୍ୱଭାବେ ବୟସ କିଶୋର
ଅଟନ୍ତି ବେନି ସହୋଦର
ଗନ୍ଧ ଚନ୍ଦନ ଦେହେ ବୋଳି
କପୋଳେ ଶୋହେ ଗୋରୁଧୂଳି
ପ୍ରଧାନ ପୁରୁଷ ଏ ବେନି
ସଂସାର ପିଅର ଜନନୀ
ମର୍କତ ରୌପ୍ୟ ଗିରି ଯେରି
ଶୋହେ କି କନକ ପଃଚେଷି
ଅବନୀ ଭାରର ଉଶ୍ୱାସେ
ଜନ୍ମ ହୋଇଲେ ନିଜ ଅଂଶେ
ଦଶ ଦିଗର ତମ ନାଶି
ନିଜ ସ୍ୱରୂପ ବ୍ରହ୍ମରାଶି । ୨୮-୩୩
ରଥୁଁ ଓହ୍ଲାଇଲା ଅକ୍ରୂର
ଧୀରେ ଗୁହାଁଇ ସ୍ନେହଭର
ଗୋବିନ୍ଦ ନିକଟେ ମିଳିଲା
ସଂଭ୍ରମେ ଲୋଚନ ବୁଜିଲା
ଅଭୟ ପାଦେ ଶିର ଦେଇ
ପଡ଼ିଲା ଦଣ୍ଡପ୍ରାୟେ ହୋଇ
ନୟନ ଯୁଗେଁ ବହେ ନୀର
କଣ୍ଠ ହୋଇଲା ଶୋକଭର
କହି ନ ପାରି ଆତ୍ମାନାମ
ମନେ ବୋଲଇ କୃଷ୍ଣ ରାମ
ପୁଣି ଉଠିଲା ଭାବଭରେ
ପଡ଼ିଲା ରାମର ପୟରେ । ୩୪,୩୫

ଦେଖି ସାନନ୍ଦ ବେନିଭାଇ
ଉଠିଲେ ଅକ୍ରୂରକୁ ଚାହିଁ
ଧରି ଅକ୍ରୂର ବେନି ଭୁଜ
ତୋଳିଲେ ପ୍ରଭୁ ଦେବରାଜ
ଚାପିଲେ ହୃଦରେ ଲଗାଇ
ଅକ୍ରୂର ବୋଲେ, ତାହି ତାହି । ୩୬
ପୁଣି ପଡ଼ଇ ପାଦତଳେ
ରାମ ଧଇଲେ ଯାଇ କୋଳେ
ଅକ୍ରୂର ମୁଖେ କର ଦେଇ
ବସ୍ତ୍ରେ ପୋଛିଲେ ଭାବଗ୍ରାହୀ
ଶାନ୍ତ କରାଇ ସହୋଦର
କନ୍ଧେ ଘେନାଇ ବେନି କର
ରାମ ଗୋବିନ୍ଦ କନ୍ଧେ କର
ସଧୀରେ ଚାଲଇ ଅକ୍ରୂର
ଆନନ୍ଦ ସାଗରେ ବୁଡ଼ିଲା
ରାତ୍ର ଦିବସ ନ ଜାଣିଲା
ଅକ୍ରୂରେ ଘେନି ବେନିଭାଇ
ମିଳିଲେ ନନ୍ଦଘରେ ଯାଇଁ । ୩୭
ଆସନ ଦେଇ ଦାମୋଦର
ପୂଜିଲେ ଅକ୍ରୂର ପୟର
ପାଦ ଧୋଇଲେ ଚକ୍ରଧର
ବିଅନ୍ତି ରୋହିଣୀ କୁମର
ସ୍ୱଭାବେ ଖୁଡ଼ୁତା ଅକ୍ରୂର
ବନ୍ଧୁଜନର ଯେ ବେଭାର
ମଧୁର କୋମଳ ବଚନ
ତୋଷିଲେ ଅକ୍ରୂରର ମନ
ପବିତ୍ର ଅନ୍ନ ବାସ ପାଣି
ଗୋବିନ୍ଦ ପରଶନ୍ତି ଆଣି
ଦଧି ଶାକର ଘୃତ ସର
ଦିଅନ୍ତି ଯଶୋଦାକୁମର

(୨୮-୩୩) ପ୍ରଧାନ ପ୍ରକୃତି ।

ମୁଖ ପଖାଳି ବାସ ଗୁଆ
ରାମ ଯେ ଭୁଞ୍ଜାନ୍ତି ବଢ଼ିଆ
ଗନ୍ଧ ଚନ୍ଦନ ଫୁଲମାଳ
ଦେଇ ବସିଲେ ପାଦତଳ
ଅକ୍ରୁରପାଦେ କର ଦେଇ
ଧୀରେ ଘଷନ୍ତେ ଭାବଗ୍ରାହୀ
ରାମ ଘଷନ୍ତେ କର ସ୍ଥଳ
ପୁଲକ ଅକ୍ରୁର ଶରୀର । ୩୮,୪୦
ଅକ୍ରୂରଦେଖି ଶ୍ରମ ଗଲା
ଆନନ୍ଦେ ନନ୍ଦ ପଚାରିଲା
ହେ ମିତ୍ର ! କହିବା କୁଶଳ
ଭଲେ କି ଛନ୍ତି ଯଦୁକୁଳ ?
କି ଆଉ ପଚାରିବି ମୁହିଁ
ଜୀବନ ଉରେ ଘରେ ରହି
ଯାବତ ଅଛି ଭୋଜପତି
ତୁମ୍ଭର କାହିଁ ଭଲଗତି ?
ପଶୁମାରକ ଘରେ ଯେହ୍ନେ
ବନ୍ଧରେ ଥାନ୍ତି ପଶୁଗଣେ । ୪୧
କଂସ ଜୀବନେ ଯେବେ ଥାଇ
ଯଦୁଙ୍କ ସୁଖ ଲେଶ ନାହିଁ

ସୋଦର ବନ୍ଦେହଣୀର ପୋଏ
ଯେ କଂସ ମାଇଲା ନନ୍ଦ ସ୍ୱେ
ତାର ପ୍ରଜାଙ୍କ କି କୁଶଳ
ସ୍ୱଭାବେ ଅଟଇ ଅସୁର । ୪୨
ଏମନ୍ତେ ବିଶ୍ୱାସେ ପଚାରି
ଅକ୍ରୂର କର କରେ ଧରି
ନୟନୁ ବହେ ଅଶ୍ରୁଜଳ
ଅକ୍ରୂର ଦେଖିଲା ସକଳ
ଉଠି ନନ୍ଦକୁ ଧରି କୋଳେ
ମୁଖ ଧୋଇଲା ବାସ ଜଳେ
ଛାଡ଼ିଲା ଆପଣାର ଶ୍ରମ
ଶୁଣିଣ ମଧୁର ବଚନ । ୪୩
ଥିଲା ଯେ ଦାସ ଜଗନ୍ନାଥ
ଶିରେ ନବେଣି ବେନିହସ୍ତ
ସୁଜନ ଜନ ପଛେ ଥାଇ
ରାମ ଗୋବିନ୍ଦ ମୁଖ ଚାହିଁ
ଛାଡ଼ିବ ଭବବନ୍ଧ ପାଶ
ଗୀତେଂ ଭୁଆଇ କୃଷ୍ଣ ରସ
ରାମ ଗୋବିନ୍ଦ ପାଦତଳେ
ଶରଣ ପଶି ସଦାକାଳେ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅକ୍ରୂର ଗମନଂ
ବର୍ଣ୍ଣନଂନାମ ଏକଚତ୍ୱାରିଂଶୋଽଧ୍ୟାୟଃ । ୩୮ ।



# ଦ୍ୱାତ୍ରିଂଶ ଅଧ୍ୟାୟ

( ମୂଳାନୁସାରେ ୩୯ଶ ଅଧ୍ୟାୟ )

ନବତ୍ରିଂଶେ ପୁରୀଂ ଗଚ୍ଛନ୍-ତ୍ୟଚ୍ୟତେ ଗୋପିକୋଜ୍ଝିତଃ ।
ଅକ୍ରୂରେଣାଥ କାଳିନ୍ଦ୍ୟାଂ ବୈଷ୍ଣବଲୋକସ୍ୟ ଦର୍ଶନଂ ॥ ୦ ॥

ବସ୍ତ୍ରାଳିଣରେ ମଧୁପୁରୀ । କୃଷ୍ଣ ଗମନ୍ତେ ଗୋପନାରୀ—
ବିଳାପ, ପୁଣି ବୈଷ୍ଣବପୁର । ଦର୍ଶନ କରିଲେ ଅକ୍ରୂର ॥ ୦ ॥

ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ ତନୁଜ !
ଶୁଣ ପରୀକ୍ଷ ମହାରାଜ !
ପଲ୍ୟଙ୍କେ ବସାଇ ଅକ୍ରୂର
କୃଷ୍ଣ ଯେ ପୂଜିଲେ ପ୍ରଚୁର
ଯାହା ବର୍ଣ୍ଣୁଥିଲା ପଥେ
କୃଷ୍ଣ ପୂଜିଲେ ସେହି ମତେ
ଯାହାର ନାମ ପଦ୍ମନାଭ
ତାହାଙ୍କୁ କି ଅବା ଅପୂର୍ବ
ଶୀତଳ ମଣୋହି କରାଇ
ବୋଲନ୍ତି ପ୍ରଭୁ ଭବଗ୍ରାହୀ
ବନ୍ଧୁବୃଷୟେ ରାଜା କଂସ
ଯେମନ୍ତେ କରିଛି ବିଶ୍ୱାସ ? । ୧-୩

ଶ୍ରୀକୃଷ୍ଣ ଉବାଚ

କୃଷ୍ଣ ବୋଲନ୍ତି ଶୁଣ ତାତ !
ଭଲେ ଅଇଲଟିକି ପଥ ?
ବନ୍ଧୁ କୁଶଳ ଅଛ ଜାଣି
ହେ ତାତ ! କହ ପରମାଣି । ୪ ।
ଯାବତ କୁଳବ୍ୟାଧି ହୋଇ
କଂସ ମାତୁଳ ମୋ ଅଛଇ
ତାବତ ସୁଖ କାହିଁ ଆଉ ?
ବନ୍ଧୁ ବାନ୍ଧବ ଯେତେ ମୋର । ୫
ବଡ଼ ହୋଇଲା ଦୁଃଖ ଘୋର
ତାତ ଜନନୀଙ୍କର ମୋର
ପୁତ୍ରମାରଣ ମୋର ବାଦେ
ଲୋହ ଶାଙ୍କୁଳ ବେନି ପାଦେ । ୬

ଆଜ ମୋହର ଭାଗ୍ୟ ଦେଖ
ଦେଖିଲି ବନ୍ଧୁଜନ ମୁଖ

ହେ ତାତ ! ତୋହର ଆଗମ
କହିବା କେବଣ କାରଣ ?
କପଟ ନ କର ତୁ ମୋତେ
କହ ଉଚିତ ତୋଷ ଚିତ୍ତେ । ୭

ଶ୍ରୀ ଶୁକ ଉବାଚ

କୃଷ୍ଣ ବଚନ କର୍ଣ୍ଣେ ଶୁଣି
ଅକ୍ରୂର କହେ ସାଧୁବାଣୀ
ଯାଦବବଂଶେ ଯାହା କଲା
ବସୁଦେବଙ୍କୁ ହାଣୁଥିଲା
ଧନୁ ଉତ୍ସବ ଯାହାଛଳେ
ଗୋପେ ପେଷିଲା ମୋତେ ବଳେ

ତୋହର ଜନ୍ମ ଆମ୍ଭ ଘରେ
ନାରଦ କହିଲେ ଗୁମୁରେ
ଶୁଣି ଯେତେକ କଷ୍ଟ ଦେଲି
ହେ ନାଥ ! ନୁହଇ ସହିଲି
କେସଁ କହିବି ଆଜ ମୁହିଁ
ତୁ କି ନ ଜାଣୁ ଭାବଗ୍ରାହୀ । ୮,୯
ଅକ୍ରୂର କଥା କୃଷ୍ଣ ଶୁଣି
ହସନ୍ତି ରାମ ଚକ୍ରପାଣି
ନନ୍ଦକୁ ରାଇ ବେନଭାଇ
କହନ୍ତି ଅକ୍ରୂର ବସାଇ
ନନ୍ଦକୁ ବୋଲନ୍ତି ଅକ୍ରୂର
ମଥୁରା ଯିବା ସଜ କର
ଧନୁ ଉତ୍ସବ ମଧୁପୁର
ଗୋରସ ଘେନ ଶଗଡ ଭର
ସର ଲବଣୀ ଆଦ୍ଧ କରି
ଗୋପରେ ଯେତେ ନର ନାରୀ
ବହନ ସ୍ଥୂଳ ରସ ଆଉଁ
କଂସରାଜାର କୋପ ନୋହୁଁ
ଶକଟେ ନାନା ଦ୍ରବ୍ୟ ଭରି
ଆଗହୁଁ ଯାନ୍ତୁ ନରନାରୀ
ରାଜା ହକର ବୃଦ୍ଧିରେ
ଲୋକେ ମିଳିବେ ଧନୁ ଯୋଗେ
ଯେ ଯାହା ମତେ ପୂଜା କରି
ତୋଷ କରିବେ ଦଣ୍ଡଧାରୀ
ରାଜନ ହୋଇ ସାବଧାନ
ଯେ ଯାହା ମତେ ଦେବ ଦାନ
ଧନ, ବସନ, ଅଳଙ୍କାର
ଅନେକ କରିଛି .ସମ୍ଭାର

ଏମନ୍ତ କହି ରାଜ ଲୋକ
ନନ୍ଦକୁ ଦେଲାକ ଶ୍ରୀମୁଖ *
ନନ୍ଦ ଉଠିଣ ବେନି କରେ
ଶ୍ରୀମୁଖ ଲଗାଇଲା ଶିରେ
ପଢି ସାନନ୍ଦ ଗୋପବୀର
ଘୋଷଣା ଦେଲା ନିଜ ପୁର
ଗୋପାଳେ ବେଗେ ହୁଅ ସଜ
ଆଜ୍ଞା ଦେଇଛି ଭୋଜରାଜ
ଧନୁ ଉତ୍ସବ ମଧୁପୁର
ଗୋରସ ଘେନ ଶଗଡ ଭରି
ଯେ ଯାହା ମତେ ବେଗେ ଯାଅ
ରାସହୁଁ କେବେହେଁ ନ ରୁହ
ବିଳମ୍ବ ନ କର କେବେହେଁ
କୋପ କରିବ କଂସରାୟେ
ରାମ ଗୋବିନ୍ଦ ମୋର ସଙ୍ଗେ
ରଥେ ମଥୁରା ଯିବେ ବେଗେ
ରାଜାଙ୍କୁ କରିବେ ଦର୍ଶନ
ଦେଖିବେ ଧନୁଯାତ୍ରାମାନ
ରାସହୁଁ ଯାଅ ବେଗ କରି
ଶକଟେ ଘୃତ ସର ଭରି । ୧୦-୧୨
ଗୋପରେ ଶୁଭିଲା ଘୋଷଣ
ମଥୁରା ଯିବେ ନାରାୟଣ
ରାଜାଙ୍କ ଦର୍ଶନ କରିବେ
ମଥୁରା ନଗରେ ରହିବେ
ବନ୍ଦୀ କରିବ ମଧୁପୁରେ
ଲୁଚି ଯେ ଥିଲେ ନନ୍ଦଘରେ
ଶୁଣି ଗୋପାଳେ ଛନ ଛନ
ବିକଳ ଗୋପୀଙ୍କର ମନ

* ଶ୍ରୀମୁଖ—ଚିଠି

ଏକ ଆରେକେ ମୁଖ ଗୃହିଁ
କହନ୍ତି ବାଇ ପ୍ରାୟ ହୋଇ
ଶୁଣ ଗୋ ସଖି ! ବିପରୀତ
ଆସି ଯେ ଅଛି କଂସଦୂତ
ନନ୍ଦ ଗୋବିନ୍ଦ ଆଦି କରି
ମଥୁରା ଘେନ ଯିବ ଧରି
ନେଇ ମାରିବ ବେନଭାଇ
ଆମ୍ଭର ନେବ ଗୋରୁ ଗାଈ
କେ ବୋଲେ ନୁହଇ ଏମନ୍ତ
ମଥୁରାପୁରେ ଧନୁଯାତ
ଯାହାକୁ ଯିବେ ବେନଭାଇ
ରଥ ଦେଇଛି ପଠିଆଇ
ରାଜନଯୋଗ ଆବୋରିବେ
ମଥୁରାନଗରେ ରହିବେ
ନନ୍ଦ ଯଶୋଦା ଆଦି କରି
ଗୋପରେ ଯେତେ ନରନାରୀ
ଗୋରସ ଦେବେ ରାଜା ଆଗେ
ଯାତ୍ରା ଦେଖିବେ ନବରଙ୍ଗେ
ପୁଣି ଆସିବେ ଗୋପପୁର
ରହିବେ ରାମ ଦାମୋଦର
ଶୁଣି ହୁଅନ୍ତି ଶୋକ ଚିତ୍ତ
ଶୋକେ ବୋଲନ୍ତି ଏହି ମତ
କି ବୁଦ୍ଧି କରିବା ଗୋ ଏବେ
କୃଷ୍ଣ ମଥୁରା ଯେବେ ଯିବେ
କେମନ୍ତେ ବଞ୍ଚିବା ଗୋ ଦିନ
କୃଷ୍ଣ ଯେ ଆମ୍ଭର ଜୀବନ
କହି କାତରେ କମ୍ପେ କାୟେ
ମୂର୍ଚ୍ଛିତେ ପଡ଼ିଲେ ଥୋକାଏ
ଶିଶିରେ ଯେହ୍ନେ ପଦ୍ମବନ
କ୍ଷଣକେ ହୁଅଇ ବଦନ

କାହାର ମୁଖ ଗଲା ଶୁଖି
କେହୁ ବୁଜିଲେ ବେନି ଆଖି
କାହାର ଫିଟିଲା ଅଞ୍ଚଳ
କଟୀମେଖଳା ଅସମ୍ଭାଳ
କେ ପଡ଼ି କାନ୍ଦଇ ଧରଣୀ
ଦେହ ଅବସ୍ଥା କେ ନ ଜାଣି
ହା କୃଷ୍ଣ ! ବୋଲି ମୋହେ ପଡ଼ି
କେ ମୁଣ୍ଡେ ବେନିକର ତାଡ଼ି
ଶିରେ କେ ମାରଇ ପଥର
ଆହା ଗୋବିନ୍ଦ ହଳଧର !
କେ ବୋଲେ ଜାଣିବାଟି ଆଜ
ମୋର ମହିମା ତୁମ୍ଭେ ବୁଝ
ଅକ୍ରୂର ସଂହାରିବ ଯାଇଁ
ରାମ ଗୋବିନ୍ଦଙ୍କୁ ଛୁହାଇ
କଂସ କରିବ କିସ ଆଉ
ଆମ୍ଭର କୃଷ୍ଣ ବଳୀୟାର
ଦେଖିଲଟିକି ଚକ୍ଷୁଦ୍ୱାରେ
ଗିରି ଟେକିଲେ ବାମକରେ
ପୂତନା ଆଦି କେଶୀ ଯାଏ
ଗୋବିନ୍ଦ ମାରିଲେ ନିର୍ଭୟେ
ତାହାର ଭୁଜ ଆଶ୍ରେ ତରି
ସୁଖରେ ଗୋପରେ ବିହରି
ଅକ୍ରୂର ମାରିବା ଗୋ ଆସ
କି କରି ପାରିବ ସେ କଂସ
ଆଜ ଗୋବିନ୍ଦ ଘେନି ଚଳେ
ଆମ୍ଭେ ମାରିବା ଏକାବେଳେ
କ୍ଷେମ କରିବା ଗୋପପୁର
କୃଷ୍ଣ ଯେ ଜୀବନ ଆମ୍ଭର
ରାମ ଗୋବିନ୍ଦ ଅନୁରାଗ
ଅଳପ ସ୍ମିତ ମୁଖ ରଙ୍ଗ

ହୃଦେ ସୁମରି ଲୁହ ବହି
ଚିତ୍ରପ୍ରତିମା ପ୍ରାୟ ହୋଇ
ସୁନ୍ଦର ଚାଲିବାର ଠାଣି
ଯେମନ୍ତ କହେ ମୃଦୁ ବାଣୀ
ଅଳପ ହସି ବାଙ୍କେ ଚାହିଁ
କଟାକ୍ଷେ ଜଗତ ମୋହଇ
ଯେତେ ସଙ୍କଟୁ ଅଛୁ ତାରି
ଅସୁର ଅଛୁ ଯେତେ ମାରି
ଏଣେ ନାରୀଏପି କୃଷ୍ଣେ ମନ
କୃଷ୍ଣ ବିୟୋଗେ ଛନ ଛନ
ସକଳେ ହୋଇ ଏକ ଜୁଣ୍ଡ
ଲୋକ ଗହଳ ଗୋପଦାଣ୍ଡ
କାନ୍ଦନ୍ତି ଦାଇବ ସୁମରି
ବିଚ୍ଛେଦଦୁଃଖେ ଗୋପନାରୀ । ୧୩-୧୮
ତୁ ହୋ ଦାଇବ ! ବଡ଼ ମନ୍ଦ
ଗୋପନଗରେ କଲୁ ଛନ୍ଦ
ସଂଯୋଗ କଲୁ କୃଷ୍ଣ ସଙ୍ଗେ
ଏବେ ତ ନାଶିଲୁ ବିୟୋଗେ
ଆମ୍ଭର ନ ପୂରିଲା ଆଶ
ଅଲପେ କଲୁ ଯେ ନିରାଶ
ନିଷ୍ଠୁର ସ୍ୱଭାବ ତୋ ହୁଆ
ଆମ୍ଭରେ ନାହିଁ ତୋର ଦୟା
ବାଳକ ପ୍ରାୟ ତୋର କର୍ମ
କେମନ୍ତେ ସହିବଟି ଧର୍ମ । ୧୯
ନୀଳ କୁନ୍ତଳ ଚାରୁ ମୁଖ
ଦେଖିଲେ ଖଣ୍ଡେ ମନ ଦୁଃଖ
ମଧୁର ହାସ ନାସା ରେଖ
ଦେଖିଲେ ପାଉଁ ମନେ ସୁଖ
ସେ ସୁଖ କରାଉଛୁ ଦୂର
ଅସାଧୁ କର୍ମ ଏ ତୋହର । ୨୦

ଏମନ୍ତେ ଅକ୍ରୂରକୁ ଚାହିଁ
ବୋଲନ୍ତି କୋପଭର ହୋଇ
ତୁ ଯେବେ ଅକ୍ରୂର ବୋଲାଉ
କ୍ରୂର ସ୍ୱଭାବ କିମ୍ପା ବହୁ ?
ଆମ୍ଭର ଚକ୍ଷୁ ବନମାଳୀ
ତୁ ଏହା ନେଉଅଛୁ ଖୋଳି
ନନ୍ଦକୁମର କୃଷ୍ଣ ସଙ୍ଗେ
ପ୍ରିୟ ସୁହୃଦ କଲୁଁ ରଙ୍ଗେ
ଛାଡ଼ିଲୁଁ ସୁତ ଧନ ଘର
ଲଜ୍ଜା ସ୍ୱଭାବ କଲୁଁ ଦୂର
ପୀରତି କରିଅଛୁଁ ନୂଆ
ଅକ୍ରୂର ! ନ ଛଡ଼ା ତୁ ଏହା । ୨୧,୨୨
ମଥୁରା ନାରୀଙ୍କର ଭାଗ୍ୟ
ଶତେ ଜନମେ କେ ପାଇବ
ସୁଖେ ପାହିବ ଆଜ ନିଶି
ଦେଖିବେ କୃଷ୍ଣ ଦ୍ୱାରେ ବସି
ଗ୍ରାମେ ପଶନ୍ତେ ବେନିଭାଇ
ବାମ ଦକ୍ଷିଣେ ଥିବେ ଚାହିଁ
କଟାକ୍ଷେ ଦେଖି କୃଷ୍ଣରୂପ
ଛାଡ଼ିବେ କୋଟି ଜନ୍ମ ତାପ
କୃଷ୍ଣର ରଙ୍ଗ ମୁଖ ରସ
ନୟନ ପାନେ ହୋଇ ତୋଷ
ଗୁରୁ ଗୌରବକୁ ନ ଗଣି
ଦାଣ୍ଡେ ଦେଖିବେ ଚକ୍ରପାଣି । ୨୩
ମଥୁରାପୁର ନାରୀଗଣ
ଚାହିଁ ନୋହିବେ ନାରାୟଣ
ମଧୁରହାସେ କୃଷ୍ଣମନ
ପେଶନ୍ତେ ବାନ୍ଧିବେ ବହନ
ଗୋବିନ୍ଦ ରତିରସେ ଜଡ଼ା
ଛାଡ଼ିବେ ଗୋପପୁରବନ୍ତା

ଭୁଲିଲେ କୃଷ୍ଣ ହଳଧାରୀ
ଛାଡ଼ି ନ ଦେବେ ଗୋପପୁରୀ । ୨୪
ଯାଦବ ଆଦ୍ଵ ସାତ ବଂଶ
ତାହାଙ୍କ ପୁଣ୍ୟ ଗୋ ଅଶେଷ
ଆଜ ପାଇବେ ତପଫଳ
ଦେଖିବେ ମଦନ ଗୋପାଳ । ୨୫
ଆମ୍ଭର ପୂର୍ବ ପାପ-ଘୃଣ
ଅକ୍ରୂର ହୋଇଲା ଦାରୁଣ
ଆମ୍ଭର ଦୁଃଖ ନ ଜାଣଇ
ମଥୁରା ନେବ କେନ୍ଦ ଭାଇ
ଦେହରୁ ପ୍ରାଣ ନେବ ହରି
ଆଜ ମରିବେ ଗୋପନାରୀ । ୨୬
ଦେଖ ଗୋପାଳେ ଏଡ଼େ ମନ୍ଦ
ହକ୍କାର ନ କରଇ ନନ୍ଦ
ପୁଅଙ୍କ ଭଲ ନ ଜାଣଇଁ
ଅକ୍ରୂର ବୋଲେ ପଠାଆଇ
ଯଶୋଦା ନ ଜାଣଇ ଏହା
କେମନ୍ତେ ଧରିବଟି ହିଆ
ଗଉଡ଼େ ବାଇପ୍ରାୟ ହୋଇ
ଆଗ ହୁଅନ୍ତି ସଜ ହୋଇ
ଦଇବ ହୋଇଲା ବଇରୀ
ଆଜୁଁ ବୁଡ଼ିଲା ଗୋପଶିରୀ । ୨୭
ଆସ ଗୋ ଓଗାଳିବା ରଥ
ଅକ୍ରୂର କେଡ଼େ ସମରଥ
ରଥ କରିବା ଖଣ୍ଡ ଖଣ୍ଡ
ଛେଦିବା ଅକ୍ରୂରର ମୁଣ୍ଡ
କି କରି ପାରିବେ ଗୋପାଳେ ?
ରଥ ଭାଙ୍ଗିବା ଆମ୍ଭେ ବଳେ
ଶୁଣି ଗୋ କଂସ କରୁ ରୋଷ
ଆମ୍ଭେ ନ ଥିବା ତାର ଦେଶ । ୨୮

ଅର୍ଦ୍ଧ ନିମିଷେ କୃଷ୍ଣସଙ୍ଗ
ଛାଡ଼ି ମଣିଲୁ ଶତେ ଯୁଗ
ଆମ୍ଭର ଦୁଃଖର ସୋଦର
ଦଇବ କଲା ଏତେ ଦୂର
ଆମ୍ଭର ରାସକେଳି ରସ
ଜାଣ ନା ବୃନ୍ଦାବନ ଦେଶ
ନିମିଷେ ନ ପାଇ ମୁରାରି
କେମନ୍ତ ହେଲୁ ଗୋପନାରୀ
ତକ୍ଷଣେ ପାଇ ବ୍ରହ୍ମରାଶି
ନିମିଷ କଲୁଁ ବ୍ରହ୍ମନଶି
ତାହାର ଗୁଣ ମନେ ଗୁଣି
ଏବେ ମରିବୁଁ ଗୋପାଳୁଣୀ । ୨୯
ଗୋରୁ ଚରାଉଥାଇ ବନେ
ଗୋପେ ଆସଇ ରାତ୍ରମାନେ
ପଥେ ଗୋ ତାର ମୁଖ ଦେଖି
ପିଛୁଡ଼ି ନ ପାରୁ ଯେ ଆଖି
କଟାକ୍ଷ କରି ବେଣୁ ବାଇ
ଜୀବନ ପାଉ ତାହା ଚାହିଁ
ଏବେ ମଥୁରାପୁର ଗଲେ
କେମନ୍ତେ ବଞ୍ଚିବା ଗୋ ଭଲେ ? ୩୦

ଶ୍ରୀ ଶୁକ ଉବାଚ

ଏମନ୍ତ ହୋଇ ଗୋପନାରୀ
କୃଷ୍ଣ ବିଚ୍ଛେଦ ତନୁ ଧାରି
ଲଜ୍ଜା ଛାଡ଼ିଲେ ଗୋପଦାଣ୍ଡେ
ତାଡ଼ନ୍ତି ବେନିଭୁଜ ମୁଣ୍ଡେ
ବିକଳେ ବୁଜିଲେ ନୟନ
କାନ୍ଦନ୍ତି ଧରି କୃଷ୍ଣ ନାମ
ମୁକୁନ୍ଦ ଦାମୋଦର ହରି
ମାଧବ ରାମ ଦଇତ୍ୟାରି

ଜୀବନ ଗଲାଣି ଆମ୍ଭର
ମଥୁରା ନ ଯା ଦାମୋଦର
ତୋତେ ନ ପାଇ ବ୍ରଜଗ୍ରାମ୍ଭ !
ଦିନ ବଞ୍ଚିବୁ କାହା ଚାହିଁ
ଅକ୍ରୂର ଆମ୍ଭ ଶତ୍ରୁ ହେଲା
ଜୀବନ ଥାଉଁ ତ ମାରିଲା । ୩୧
ରୋଦନ ଶୁଣି ଗୋପଜନ
ଅକ୍ରୂର କୋପ କଲା ମନ
ବୋଲଇ ନନ୍ଦମୁଖ ଚାହିଁ
ଲେଉଟି ଯିବ ଆଜ ମୁହିଁ
ଜାଣୁନା କଂସର ମହିମା
ନ ଥିବ ଗୋପପୁର ସୀମା
ଲେଉଟି ଗଲେ ଆଜ ମୁହିଁ
ଗୋପେ ପାରିବୁଟି କି ରହି
ଦଣ୍ଡେହେଁ ନ କର ଉତ୍ତର
କୁଶଳେ ଇଚ୍ଛା ଯେବେ ତୋର
ରାମ ଗୋବିନ୍ଦ ମୋତେ ଦେଇ
ନ ଯାଇ ପଛେ ଥାଅ ତୁହି
ଯଶୋଦା ଅକ୍ରୂରକୁ ଚାହିଁ
କାନ୍ଦଇ କୃଷ୍ଣ କୋଳେ ନେଇ
ରୋହିଣୀ ଧରି ହଳଧର
ରୋଦନ କଲେ ଉଚ୍ଚସ୍ୱର
ବଜ୍ର ପଡ଼ିଲା ଶିରେ ଜାଣି
କାନ୍ଦନ୍ତି ଯଶୋଦା ରୋହିଣୀ
ଦଇବ କଲୁ ବଜ୍ରଘାତ
କାହାକୁ ସମର୍ପିବୁଁ ସୁତ
ଜୀବନ ଥିବ ଆମ୍ଭ କାହିଁ
ମରିବୁଁ ପୁତ୍ରକୁ ନ ଚାହିଁ
ଯଶୋଦା କୃଷ୍ଣମୁଖ ଚାହିଁ
କାନ୍ଦଇ ମୁଖେ ଚୁମ୍ବ ଦେଇ

ତୁ କୃଷ୍ଣ ! ଗଲେ ମଧୁପୁରୀ
ଜୀବନ ନ ପାରିବି ଧରି
ଗୋରୁ ଚରାଉ ଯେତେବେଳେ
କାନନେ ଗୋପସୁତ ମେଳେ
ଦଣ୍ଡେ ମୁଁ ନ ଦେଖିଲେ ତୋତେ
ନିମିଷ ହୋଏ ଯୁଗ ଶତେ
ପୁଚ୍ଛଇ ଜଣେ ଜଣେ ରହି
ପୁତ୍ର ମୋ କେ ଦେଖିଲ କାହିଁ
କ୍ଷତ ହରିଣୀ ପ୍ରାୟ ହୋଇ
ରହିକରଣ ଚାହୁଁ ଥାଇ
ବେଳତ ହୋଇଲା ଉତ୍ତର
କୃଷ୍ଣ ନଇଲା କପାଁ ଘର
ଅନ୍ନ ବ୍ୟଞ୍ଜନ ମୋତେ ପିତା
ତୋତେ ନ ଦେଖି ମୋର ଚିନ୍ତା
ନିମିଷ ଯୁଗପ୍ରାୟ ହୋଇ
ଘର ବାହାରେ ନ ରିହଇ
ତୋର ବଦନ ଯେତେବେଳେ
ଦେଖଇ ନୟନ ଯୁଗଳେ
ତେବେ ମୋ ଜୀବନ ପଶଇ
ସର ଲବଣୀ ତୋତେ ଦେଇ
ଏବେ ତୁ ମଧୁପୁର ଗଲେ
ମୁହିଁ ଯିବଇଁ ତୋର ଭୁଲେ
ପୁଣି ରାମଙ୍କୁ କୋଳେ ଧରି
ଶୋକେ ବୋଲନ୍ତି ନରନାରୀ
ତୁ ରାମ ବଳେ ବଳୀୟାର
କୃଷ୍ଣ ମୋ ନୁହଇ ଚତୁର
ସଙ୍ଗ ତୁ ନ ଛାଡ଼ିବୁ ଦଣ୍ଡେ
ଗହଳ ମଥୁରାର ଦାଣ୍ଡେ
ଏମନ୍ତ କହି ନନ୍ଦନାରୀ
ବେନି ଲୋଚନୁ ବହେ ବାରି

ଅକ୍ରୂର କୋପେ ପରଜ୍ୱଳ
ରୋଷେ ନନ୍ଦକୁ ଦେଇ ଗାଳ
କୃଷ୍ଣ ସାରିଲେ ନିତ୍ୟକର୍ମ
ସଜ ହୋଇଲେ ବଳରାମ
ଗୋପୀଙ୍କ ରୋଦନ ଚହଳ
ଗୋପରେ ଶୁଭୁଅଛି ଗୋଳ
ପ୍ରଳମ୍ବ ସିନ୍ଧୁ, ପ୍ରାପ୍ତ ମଣି
ବୋଲନ୍ତି ରାମ ଚକ୍ରପାଣି
ଗୋପାଳେ ହୁଅ ଆଗୁସାର
ଗୋରସ ଶକଟ ସମ୍ଭାର
ଅକ୍ରୂର ନିତ୍ୟକର୍ମ ସାଜି
ରଥେ ବସିଲେ ରାମ ହରି
ମଙ୍ଗଳ ବାଦ୍ୟନାଦ ଧ୍ୱନି
ଆନନ୍ଦ ହେଉଛି ମେଦିନୀ
ଆକାଶେ ଥାଇ ଦେବଲୋକେ
କୁସୁମ ବରଷନ୍ତି ଥୋକେ
ଦିଗେ ଦିଶନ୍ତି ପରିମଳ
ସୁଗନ୍ଧ ପବନ ଶୀତଳ
କୃଷ୍ଣର ପଥ ଅନୁକୂଳ
ଶୂନ୍ୟେ ମିଳିଲେ ମେଘମାଳ
ଗଗନେ ଦୁନ୍ଦୁଭି ଶବଦ
ମଙ୍ଗଳ କଲେ ଗୀତନାଦ
ଦେଖନ୍ତି ଦଶ ଦିଗପାଳେ
ବାହାର ହୋଇଲେ ଗୋପାଳେ
ଶକଟ ଯାନ୍ତି ଯୂଥ ଯୂଥ
ଗୋରସ ଭାର ଅପ୍ରମିତ
ବାଜଇ ମଙ୍ଗଳ ମହୁରୀ
ମଧ୍ୟେ ବିଜୟ ନରହରି । ୩୨-୩୪
ଗୋପୀ ଓଗାଳୁଛନ୍ତି ଗୋପ
କାହିଁକି ଯିବ ଗୋପୀନାଥ ?
ଆମ୍ଭ ଜୀବନ ହସ୍ତେ ଘେନି
ମଥୁରା ଯାଅ ଛାଡ଼ିକେନି
ଏତେ ନିର୍ଦ୍ଦୟ ତୋର ହିୟା
ଆମ୍ଭରେ ଛାଡ଼ିଲୁ ତୁ ଦୟା
ତେବେ ଅକ୍ରୂର ତେତେ ଧରି
ନେଉଛି ମଥୁରାନଗରୀ
ଆମ୍ଭେ ସକଳେ ତୋର ସଙ୍ଗେ
ଥିବୁଁ ତୋ ରଥ ଲଗେ ଲଗେ
କଂସର ମୁଖେ ତୋତେ ଦେଇ
ଘରେ ରହିବୁଁ କିସପାଇଁ ?
ଆମ୍ଭେ ତୋହର ସଙ୍ଗ ବାଳୀ
ଖୋପ ନ ଛାଡ଼ ବନମାଳୀ ?
କାହାର ଘରେ ପିକ ପରି
ଏବେ ତ ପକାଉ ପାସୋରି ୩୨,୩୬
ଶୁଣି ବୋଲନ୍ତି ଦାମୋଦର
କୋମଳ ବଚନ ଗମ୍ଭୀର
ଶୁଣ ଗୋ ସଖୀଜନେ ମୋର
ରାଜାର ଆକଟ ଅପାର
ଦେଖ ଆମ୍ଭଙ୍କୁ ରଥେ ଭରି
ଅକ୍ରୂର ନେଉଅଛି ଧରି
ଧନୁ ଉତ୍ସବ ରଙ୍ଗସଭା
ଆମ୍ଭେ ଗୋ ନୟନେ ଦେଖିବା
ରାଜା ହୋଇବ ବଡ଼ ତୋଷ
ଆମ୍ଭଙ୍କୁ ଦେବ ଗ୍ରାମ ଦେଶ
ଚଉର ଦିଗରୁ ଲୋକେ ଆସି
ରଙ୍ଗସଭାରେ ଥିବେ ବସି
ଅନେକ ପୁରୁ ନରନାରୀ
ଅଣାଇ ଅଛି ଦଣ୍ଡଧାରୀ
ଉତ୍ସବ ଦେଖି ତୋଷମନେ
ଆସିବୁ ଆମ୍ଭେ ବୃନ୍ଦାବନେ

ତୁମ୍ଭେ ଗୋ ଯାଅ ଯେଝାଘରେ
ମନ ନବେଶି ମୋ ପଯ୍ୟରେ
ଅକ୍ରୂର ଶୁଣି କୋପଭରେ
ରଥ ବାହିଲା ଧାଡିକାରେ
ଗୋପୀଏ ପାଡ଼ନ୍ତି ବୋବାଳି
ବାଳରେ ନ ପାରନ୍ତି ଗୁଳି
ଆହା ଗୋବିନ୍ଦ ନନ୍ଦସୁତ !
ବୋଲି ହୋଇଲେ ମୂର୍ଚ୍ଛିତ
କଦଳୀ ଯେହ୍ନେ ମହାବାତେ
ପଡ଼ିଲେ ଗୋପବାଳୀ ପଥେ
ପଡ଼ଣ ଗୋପୀ ଅଣାୟତ୍ତେ
ଅଜ୍ଞାନ ମୋହେ ରାଜପଥେ
ଗୋପୀ ବିକଳ କୃଷ୍ଣ ଚାହିଁ
ଗୋପାଳପୁଅଙ୍କୁ ସେ ରାଇ
ସୁଦାମ ନାମେ ଗୋପବାଳ
ତାରେ ବିଶ୍ୱାସ ନନ୍ଦବାଳ
ତାହାକୁ ନିକଟେ ବସାଇ
କହନ୍ତି ବିଶ୍ୱାସ କରାଇ
ଗୋପୀଙ୍କୁ କହ ତୁ ବଚନେ
ଆମ୍ଭେ ଆସିବୁଁ ଶୀଘ୍ରବନେ
ଧନୁ ଉତ୍ସବ ମୁଁ ଦେଖିବି
ରାଜାର ମନକୁ ତୋଷିବି
ମଥୁରା ନ ରହିବି ଦଣ୍ଡେ
ତୁମ୍ଭେ ଗୋ ଜଗିଥିବ ଦାଣ୍ଡେ
ମୋତେ ଦେଖିବ ବ୍ରଜମାନେ
ନନ୍ଦର ଘରେ ଶୀଘ୍ରବନେ
ମୋହର ସତ୍ୟ ଏ ବଚନ
ଏଥକୁ ସାକ୍ଷୀ ନିରଞ୍ଜନ । ୩୫,୩୬
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ
ଗୋପୀଙ୍କି କହିଲା ମଣାଇଁ
ଶୁଣି ଗୋପୀଏ ଛନ ଛନ
ଦଣ୍ଡେହେଁ ନ ରହଇ ମନ
ରଥକୁ ଚାହାନ୍ତି ନିରେଖି
ଚିତ୍ରପ୍ରତିମା ପ୍ରାୟ ଆଖି
କେ ବୃକ୍ଷେ ଉଠିଲେ ବହନ
ରଥରେ ନିବେଶି ନୟନ
ପିଢ଼ାରେ ଉଠି କେ ଦେଖନ୍ତି
ବୃକ୍ଷ ଆରୋହି କେ ଚାହାନ୍ତି
କେହୁ କ୍ଷଣକେ ଉଚେ ଡ଼ାକ
ରଥପଡାକେ ଦେଇ ଆଖି
କେ ବୋଲେ ଯିବ ଧାଡିକାରେ
କୃଷ୍ଣ ଭେଟିବି ନଗାଖରେ
ଶୁଣି ଗୋବିନ୍ଦର ବିଶ୍ୱାସ
ଗୋପୀଏ ହୋଇଲେ ନିରାଶ
ନିଃଶ୍ୱାସ ଗୁଡ଼ ଖେଦଭରେ
ଜୀବନ ନ ରହେ ଶରୀରେ
ଗୋବିନ୍ଦ ନାମ ଗୁଣ ଗୁଣି
ରାତ୍ର ଦିବସ ଯେ ନ ଜାଣି
ଜୀବନ ଦେଇ କୃଷ୍ଣପାଦେ
ଗୋପୀଏ ରହିଲେ ବିଷାଦେ । ୩୭,୩୮
ଅକ୍ରୂର ତୋଷମନ ହୋଇ
ବନ ଗହନେ ରଥ ବାହି
ପବନୁଁ ବେଗେ ରଥ ଗଲା
କାଳନ୍ଦୀ ନିକଟେ ମିଳିଲା । ୩୯
ରଥୁଁ ଓହ୍ଲାଇ ବେନଭାଇ
ଜଳ ପିଇଲେ ବେଗେ ଯାଇଁ
ନିର୍ମଳ କାଳନ୍ଦୀର ଜଳ
ସ୍ୱଭାବେ ତରଳ ଶୀତଳ
ଶିର-ବଦନେ ଜଳ ସିଞ୍ଚ
କର ଯୁଗଳେ ମୁଖ ପୋଛି

ବୃକ୍ଷର ମୂଳେ ନେଇ ରଥ
ବସିଲେ ରାମ ଗୋପୀନାଥ
ଅକ୍ରୂର ବେନିକର ଯୋଡ଼ି
କହଇ କୃଷ୍ଣପାଦେ ପଡ଼ି
ହେ ନାଥ ! ହୋଇବା ପ୍ରସନ୍ନ
ଯମୁନା କରିବି ସ୍ନାହାନ
ଉଠି ତୋହର ମୁଖ ଚାହିଁ
ପବିତ୍ର ହୋଇବ ମୋ ଦେହି
ବୋଲନ୍ତି ପ୍ରଭୁ ଭଗବାନ
ଯା ବେଗେ କର ତୁ ସ୍ନାହାନ
ବହନ ଯିବା ମଧୁପୁର
ଅକ୍ରୂର ! ନ କର ଉଚ୍ଛୁର । ୪୦
ଶୁଣି ଓହ୍ଲାଇ ରଥୁଁ ଧୀରେ
ପଶିଲା କାଳନ୍ଦୀ ଭିତରେ
ବୁଡ଼ିଲା ମାଧବ ସୁମରି
ଦେଖିଲା ଜଳେ ରାମ ହରି
ଯେସନେ କୂଳେ ଗଲା ଚାହିଁ
ଦେଖିଲା ଜଳମଧ୍ୟେ ତାହି
ଦେଖି ଚକିତ ମନେ ହୋଇ
ବୋଲେ ଅଇଲେ କି ପଳାଇ
କଂସର ଡରେ ରଥେ ବସି
ବେନି ସୋଦର ଜଳେ ପଶି
ପଳାଇ ଯିବେ ଗୋପପୁର
ମୋତେ ମାରିବ କଂସାସୁର
କି ବୁଦ୍ଧି କରିବଇଁ ମୁହିଁ ?
କୂଳେ ଯେ ଅଇଲି ବସାଇ
ଡରେଣ ଗଲେ କି ପଳାଇ
ଉଠି କୂଳକୁ ଦେଲା ଚାହିଁ
ଦେଖଇ ବୃକ୍ଷତଳେ ରଥ
ଦେଖନ୍ତି ରାମ ଗୋପୀନାଥ

ଚକିତ ହୋଇଲା ଅକ୍ରୂର
ଭୟେ କମ୍ପଇ ଥରହର
ବୋଲଇ ଜଳେ ଅନ୍ୟ କିସ ?
ମୁହିଁ ଯେ ଦେଖିଲି ସବୁଣିଁ
ମିଥ୍ୟା ନୁହାଇନା ସେ ଜଳେ
ପୁଣି ବୁଡ଼ିଲା ଆଉ ବେଳେ । ୪୧-୪୩
ଦେଖଇ ରତ୍ନମୟ ପୁରେ
ସୁବର୍ଣ୍ଣ ବିମାନ ଉପରେ
ସୁରଙ୍ଗ ରତ୍ନ ସିଂହାସନ
ଶୀତଳ ବହଇ ପବନ
ଅନନ୍ତରୂପ ହଳଧର
କୋଟିଏ ଚନ୍ଦ୍ର ପଟାନ୍ତର
ସହସ୍ର ଫଣା ମଣି ଶିର
କଟି ଦୁକୂଳ ନୀଳାମ୍ବର
ରୂପେ ଶୋଭିତ ଶିବଗିରି
କୋଟିଏ କାମ ନୋହେ ସରି
ମଣି କୁଣ୍ଡଳ ବନମାଳ
ସୁରଙ୍ଗ ଅଳକ କପୋଳ
କଟିମେଖଳା ରତ୍ନସାର
ନିବିଡ଼ ସୁରଙ୍ଗ ଅଧର
ହାର କେୟୂର ଝଟକନ୍ତି
ଯେସନେ ଗଗନେ ତାରାପନ୍ତି । ୪୪-୪୬
ଅନନ୍ତକୋଳେ ବନମାଳୀ
ନୀଳ ଜୀମୂତ ଦେହ ଝଳି
ପୀତ ବସନ ବନମାଳ
ଶ୍ରବଣେ ମକର କୁଣ୍ଡଳ
ସୁନ୍ଦର ନୀଳ ଭୁଜ ଚାରି
ଶଙ୍ଖ କମଳ ଚକ୍ରଧାରୀ
ବିକଚ କମଳ ଲୋଚନ
ସୁରଙ୍ଗ ହସିତ ବଦନ

ଅନଙ୍ଗରୂପ ଭ୍ରୁଟଲେଖା
ସୁନ୍ଦର କପୋଳ ନାସିକା
ରଙ୍ଗ ଅଧରେ ମନ୍ଦହାସ
କର୍ଣ୍ଣେ କୁଣ୍ଡଳ ରତ୍ନହାସ
ଲମ୍ବଇ ଭୁଜ ଜାନୁ ଯାଏ
ଦିଶେ ମର୍କତସ୍ତମ୍ଭ ପ୍ରାୟେ
ତୁଙ୍ଗ ହୃଦୟ ଶ୍ରୀନିବାସେ
ଶ୍ରୀବତ୍ସ ଚିହ୍ନ ବାମପାଶେ
ଦକ୍ଷିଣାବର୍ତ୍ତ କମ୍ବୁ ଗ୍ରୀବ
ଉଦରେ ତ୍ରିବଳି ପଦ୍ମନାଭ
ନାଭି ଗମ୍ଭୀର ମଧ୍ୟ କ୍ଷୀଣ
ବିଶାଳ କଟୀ ଚନ୍ଦ୍ର ଦାମ
ନିତମ୍ବ ହସ୍ତି କୁମ୍ଭ ଜିଣି
ସୁନ୍ଦର ଦିଶଇ କାଛେଣି
ଉଲଟ ରମ୍ଭା ଜାନୁଯୁଗ
ଗୁଲ୍ଫ ଯୁଗଳ ସଞ୍ଚ ତୁଙ୍ଗ
ମାଣିକ୍ୟ ପ୍ରାୟ ନଖପନ୍ତି
ଅଙ୍ଗୁଷ୍ଠି ଅଗ୍ରେ ଝଟକନ୍ତି
ନବ ପଲ୍ଲବ ପ୍ରାୟେ ଝଳ
କୋମଳ ଦିଶଇ ଅଙ୍ଗୁଳ
କମଳକୋଷ ପ୍ରାୟ ହୋଇ
ବେନି ଚରଣ ବିରାଜଇ
ଅମୂଲ୍ୟ ରତ୍ନମୟ ରାଶି
ବିବିଧ ଅଳଙ୍କାର ମିଶି
ଶିରେ ମୁକୁଟ ହୃଦେ ହାର
କଟୀମେଖଳା ରତ୍ନସାର
ଉରସି ଯଜ୍ଞସୂତ୍ର କାନ୍ଧେ
କୁଣ୍ଡଳ କର୍ଣ୍ଣଯୁଗ ଘଟେ
ହିରଣ୍ୟମୟ ତେଜରାଶି
ଚତୁର ଭୁଜ ପରକାଶି

ଚକ୍ର କମଳ ଗଦା ଶଙ୍ଖ
ଚଣ୍ଡ୍ର ଯୁଗରେ ସ୍ୱଚ୍ଛ ରେଖ
ଶ୍ରୀବତ୍ସ ଚିହ୍ନ ହୃଦୟରେ
ବନମାଳାଏ ଲମ୍ବେ ଉରେ
ସୁନନ୍ଦ ଆଦି ପାରିଷଦେ
ପକାନ୍ତି ଚାମର ଆନନ୍ଦେ
ସନକମୁନେ ଋଷିଗଣେ
ଖଟନ୍ତି ଅଭୟ ଚରଣେ
ବ୍ରହ୍ମା ଶଙ୍କର ଇନ୍ଦ୍ରଘେନ
ସ୍ତୁତି କରନ୍ତି ସୁରମୁନି
କିନ୍ନର ତୁମ୍ବୁର ନାରଦ
ବୀଣା ଶବଦେ ଗୀତ ନାଦ
ଭକତ ପ୍ରହ୍ଲାଦ ଆଦି
ଧ୍ରୁବ ଭୁଷଣ୍ଡି ବେଦବ୍ୟାସ
ନିର୍ମଳ ବାଣୀ ଯେଝାମତେ
ସ୍ତୁତି କରନ୍ତି ଦୃଢ଼ଚିତ୍ତେ
କମଳା ଆଦି ଯେତେ ଦେବୀ
ଧୀରେଁ ଚରଣେ ଛନ୍ତି ସେବି । ୪୭,୫୭
ଏମନ୍ତେ କୃଷ୍ଣରୂପ ଜଳେ
ଦେଖି ଅକ୍ରୂର ବେନି ଡୋଳେ
ରୋମାଞ୍ଚ ହୋଇଲା ଶରୀର
ଲୋଚନ ଯୁଗୁଁ ବହେ ନୀର
ଆନନ୍ଦେ କଣ୍ଠ ଗଦଗଦ
ମୁଖେ ସ୍ଫୁରିଲା ଋଗବେଦ
ପାଦେ ପଡ଼ିଲା ବେଗେ ଯାଇଁ
ଉଠିଲା ମୁଣ୍ଡେ କର ଦେଇ
ଭୟେ ବୁଜିଲା ନୟନ
ପୁଣରୁହିଁଇ ଛନ ଛନ
ଆନନ୍ଦ ସାଗରେ ବୁଡ଼ିଲା
କରଅଞ୍ଜଳି ଶିରେ ଦେଲା

ଭୟେ କମ୍ପଇ ତାର ଦେହ
ସ୍ତୁତି କରଇ କୃଷ୍ଣେ ରହି । ୫୭,୫୮
କହଇ ଦାସ ଜଗନ୍ନାଥ
ଗୋବିନ୍ଦଚରଣେ ମୋ ମାଥ

କାଳିନ୍ଦୀଜଳେ ଦେଇ ଚିତ୍ତ
ସୁଜନେ କୃଷ୍ଣପାଦେ ଚିନ୍ତ
ଜନ୍ମ ମରଣ ଭୟ ନାଶ
କୃଷ୍ଣଚରଣେ ହୁଅ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାମ-କୃଷ୍ଣ ମଥୁରା
ଅକ୍ରୂରପ୍ରତିଯାନଂନାମ ଚତ୍ୱାରିଂଶୋଽଧ୍ୟାୟଃ ॥ ୪୦ ॥



## ତ୍ରିଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୪୦ଶ ଅଧ୍ୟାୟ )

ଚତ୍ୱାରିଂଶେ ତତୋଽକ୍ରୂରଃ କୃଷ୍ଣ ମତ୍ଭୁଶ୍ୱରେଶ୍ୱରଂ ।
ପ୍ରଣମ୍ୟ ଭକ୍ତ୍ୟା ତୁଷ୍ଟାବ ସଗୁଣାଗୁଣଭେଦତଃ । ୦ ।

ଅକ୍ରୂର କରେ କୃଷ୍ଣପଦ । ତେୟାକଶରେ ଏ ଭକତି ॥

ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ
ଶୁଣ ପରୀକ୍ଷ ! ଭାଗବତ
ଅକ୍ରୂର ଶିରେ କର ଦେଇ
ବୋଲଇ କୃଷ୍ଣଙ୍କୁ ଅନାଇ
ନମସ୍ତେ ଅନାଦ୍ୟ ପୁରୁଷ
ଅଖିଳ ଜ୍ୟୋତି ପରକାଶ
ମାୟାର ହେତୁ ନାରାୟଣ
ନିର୍ଗୁଣ ପୁରୁଷ ପୁରାଣ
ଅବ୍ୟକ୍ତ ବ୍ରହ୍ମ ନିରାକାର
ବ୍ରହ୍ମା ତୋ ନାଭିରୁ ବାହାର
ତୋହର ତହୁଁ ଏ ଜଗତ
ଲୋକେ ହୁଅନ୍ତି ଆତଯାତ । ୧

ପୃଥିବୀ ଉଦକ ଅନଳ
ପବନ ଆକାଶମଣ୍ଡଳ
ମହତ ଆଦି ମହାଭୂତେ
ମନ ଇନ୍ଦ୍ରିୟ ଆଦି ଯେତେ
ଇନ୍ଦ୍ରିୟଅର୍ଥ ସୁରଗଣ
ଯେତେ ଏ ଜଗତେ ଭିଆଣ
ଏମାନେ ତୋହର ଶରୀର
ତୁ ଆଦି କର୍ମ ନିରାକାର । ୨
ବ୍ରହ୍ମାଣ୍ଡେ ତୋର ହୃଦେ ଥାନ୍ତି
ତୋହର ରୂପ ନ ଜାଣନ୍ତି
ତ୍ରିଗୁଣେ ବ୍ରହ୍ମା ବଡ଼ ହୋଇ
ତୋର ସ୍ୱରୂପ ନ ଜାଣଇ । ୩
ସନକ ଆଦି ଯୋଗୀଜନେ
ପୂଜନ୍ତି ତୋହର ଚରଣେ

ମହାପୁରୁଷ ଶୂନ୍ୟରୂପ
ଜୀବ ସଂସାରେ ଭିନ୍ନରୂପ । ୪
କର୍ମ ଯୋଗିଏ ବେଦପଥେ
ତୋତେ ପୂଜନ୍ତି ଯଜ୍ଞମତେ
ଅଖିଳ କର୍ମ ଦେଇ ତୋତେ
ଜ୍ଞାନୀ ସେବନ୍ତି ଯୋଗମତେ
ନିଶ୍ଚଳ ସମାଧିରେ ମନ
ତୋର ଚରଣ କରି ଧ୍ୟାନ ।୫,୬
ଯେବା ପୂଜନ୍ତି ଦୀକ୍ଷାମତେ
ତୋତେ ଦେଖନ୍ତି ସେ ଜଗତେ
ଅନେକ ରୂପ ଏକରୂପୀ
ତୋତେ ଜାଣିବ କେ ନରୋପି ।୭
ଶିବପୁରାଣରେ ଉକତେ
କେ ତୋତେ ଭଜେ ଶିବମତେ*
ତୁ ନାଥ ସର୍ବଦେବମୟେ
ସର୍ବେ ଭଜନ୍ତି ତୋର ପାୟେ
ନାନା ଦେବଙ୍କୁ ଯେ ଭଜନ୍ତି
ଯେ ଭିନ୍ନବୁଦ୍ଧି ଆଚରନ୍ତି
ଅନେକ ଯୋଗ କର୍ମେ ଭ୍ରମି
ଫୁଟି ହୁଅନ୍ତି ପଥଶ୍ରମୀ
ନଦୀ ପୂରନ୍ତି ବୃଷ୍ଟିଜଳେ
ସମୁଦ୍ରେ ହୋନ୍ତି ଏକମେଳେ
ସର୍ବ ଦେବତା ପୂଜା ଯେତେ
ଭଜନ ତୋର ପାଦଗତେ । ୮-୧୦
ତୋର ପ୍ରକୃତି ତହୁଁ ଜାତ
ତାମସ ରଜଗୁଣ ସତ୍ତ୍ୱ
ଇନ୍ଦ୍ରିୟ ଗୁଣ ଗତେ ଛନ୍ଦ
ଜନ୍ତୁଏ ମାୟା ଜଡ଼େ ବନ୍ଦୀ
ତୋତେ ପାଇବେ ଅବା କାହିଁ
ତୋହର ଆଦ୍ୟ ଅନ୍ତ ନାହିଁ । ୧୧
ନମଇଁ ପ୍ରଭୁ ଜ୍ଞାନଆଖି
ସକଳ ବୁଦ୍ଧିଙ୍କର ସାକ୍ଷୀ
ଦେବ ମନୁଷ୍ୟ ପଶୁ ଆଦି
ତୋ ମାୟାବଳେ ସର୍ବେ ବନ୍ଦୀ
ଅନଳ ତୋର ମୁଖୁଁ ଜାତ
ଚରଣୁ ଅବନୀ ସମ୍ଭୂତ
ଆଦିତ୍ୟ ତୋହର ନୟନ
ନାଭିରୁ ପ୍ରକାଶ ଗଗନ
ଶ୍ରବଣୁଁ ତୋର ଦଶଦିଶ
ଶିର ତୋହର ସ୍ୱର୍ଗଦେଶ
ଭୁଜ ତେ ଦଶଦିଗପାଳ
ଉଦର ବଡ଼ବା ଅନଳ
ପଞ୍ଚ ପବନ ତୋର ପ୍ରାଣ
ବୃକ୍ଷ ଔଷଧଗଣେ ଲୋମ
ମେଘ ତୋହର କେଶ ଶିର
ତୋ ନଖ ଅସ୍ଥି ଗିରିବର
ନିମିଷ ହୋନ୍ତି ଦିବାରାତ୍ରି
ତୋର ବୃଷଣ ପ୍ରଜାପତି
ତୋହର ତେଜ ଦେବରାଜ
ବୃଷ୍ଟି କରଇ ତୋର ବୀର୍ଯ୍ୟ ।୧୨,୧୪
ଅବ୍ୟୟ ମୂର୍ତ୍ତି ନିରଞ୍ଜନ
ତୋ ଦେହେ ଚଉଦ ଭୁବନ
ବାସବ ଆଦି ଦେବଗଣେ
ସ୍ଥାବର ସିଦ୍ଧ ଯେ ଚାରଣେ
ବ୍ରହ୍ମାଣ୍ଡେ ତୋହର ଶରୀରେ
ମୀନା ଯେସନେ ଉଡ଼ମ୍ବରେ

(୭) "ଦୀକ୍ଷାମତେ" ଅର୍ଥ ବୈଷ୍ଣବ ଓ ଶୈବ ଆଦି ଦୀକ୍ଷା ଅନୁସାରେ ।
* "ଶିବମତେ" ଶୈବମତ ଅନୁସାରେ ।

ମନର ଆଦ୍ଧ ଅନ୍ତରୂପୀ,
ଜଗତେ ଅଛୁ ନାଥ ! ବ୍ୟାପି
ସଂସାର ଲୀଳା ଏ ଶରୀରେ
ହେ ନାଥ ! ଯେତେ ରୂପ ଧୋର
ତେଣେ ନିର୍ମଳ ହୋଇ ଶତ୍ତ
ତୋ ଯଶ ଗାବନ୍ତ ଜଗତ । ୧୫,୧୬
ନମଇଁ ମତ୍ସ୍ୟରୂପଧାରୀ
ପ୍ରଳୟ ଉଦକ ବିଦାରୀ
ହୟଶୀରଷ ତୋ ଶରୀର
ମଧୁ କୈଟଭ ହତକର
କମଠ-ରୂପୀ କଳେବର
ନମଇଁ ଶଙ୍ଖ ଚକ୍ରଧର
ଶୂକରରୂପେ ମହୀ ଧର
ନମଇଁ ପ୍ରଭୁ ଦଇତ୍ୟାର
ନୃସିଂହମୂର୍ତ୍ତି ତୋ ଶରୀର
ଯେ ରୂପେ ଜନ-ଉପକାର
ବାମନରୂପେ ବଳି ଗୃପି
ନମଇଁ ବିଶ୍ୱକ୍ରମ ରୂପି
ଦୁଷ୍ଟ କ୍ଷତ୍ରିୟ ନିବାରଣ
ନମଇଁ ପ୍ରଭୁ ଭୃଗୁରାମ
ଜାନକୀଛଳେ ଦଶରଥି
କୋପ ନାଶିଲୁ ଲଙ୍କପତି । ୧୭-୨୦
ନମୋ ଗୋବିନ୍ଦ ଦାମୋଦର
ଗିରି ତୋଳିଲୁ ବାମକର
ନମଇଁ ବସୁଦେବ ସୁତ (କ)
ରୋହିଣୀପୁତ୍ର ବଳବନ୍ତ (ଖ)
ରୁକ୍ମିଣୀ ଦେବୀ ପୁତ୍ର, ନାଥ (ଗ)
ନମଇଁ ହେଉ ଯଦୁପତି । ୨୧

ବଉଦ୍ଧରୂପୀ ଶୁଦ୍ଧାକର୍ମା
ଅସୁର ମୋହନେ ତୋ ବାନା
ମ୍ଳେଚ୍ଛ କ୍ଷତ୍ରିୟ ବଳବନ୍ତ
କଳକିରୂପେ କରୁ ଅନ୍ତ । ୨୨
ତୋହର ମାୟାରେ ଜଗତ
ଅଜ୍ଞାନେ ହୋଇ ଆତଯାତ
ପର ଆପଣା ବୋଲି ହୁଡ଼ି
ଭ୍ରମନ୍ତ ମାୟାଚକ୍ରେ ପଡ଼ି
ମୋହର ଆତ୍ମା ପୁତ୍ର ଘର
ଦାରା ସମ୍ପଦ ବନ୍ଧୁ ମୋର
ସ୍ୱପନ ପ୍ରାୟେ ଏ ଜଗତ
ଆବୋରି ଅଛୁ ମୋହପଥ । ୨୩,୨୪
ଅନିତ୍ୟ ସଂସାରସାଗରେ
ମୁଁ ଯେ ବୁଡ଼ିଲି ଦୁଃଖ ଘୋରେ
ଆତ୍ମାର ଗତି ନ ଜାଣଇ
ହେ ନାଥ ! ରଖ ଗାବଗ୍ରାହୀ ! । ୨୫
ଶୀତଳ ଜଳ ଛାଡ଼ି ମୂର୍ଖି
ମୃଗତୃଷ୍ଣାକୁ ଅଛି ଧାଇଁ
ତୃଷିତ ହୋଇଲି ଅପାର
ତେତେ ନ ଜାଣି ଚକ୍ରଧର । ୨୬
ଅଳପ ବଳ ନାଥ ! ମୋର
କର୍ମ ଅଶେଷ ବଳୀୟାର
ମନ ପଶିଲା କର୍ମମେଳେ
ହାରିଲି ଇନ୍ଦ୍ରିୟଙ୍କ ବଳେ
ଇନ୍ଦ୍ରିୟ ଅର୍ଥେ ବିପରୀତ
ହସ୍ତରୁ ପକାଇ ଅମୃତ
ବିଷ ଭକ୍ଷଇଁ ସ୍ୱାଦୁ ମଣି
ଆତ୍ମାର ଗତି ନ ପ୍ରମାଣି । ୨୭

(୨୧)ଚତୁର୍ବ୍ୟୂହ ଯଥା—(କ)ବାସୁଦେବ,(ଖ)ସଙ୍କର୍ଷଣ,(ଗ)ପ୍ରଦ୍ୟୁମ୍ନ,ଅନିରୁଦ୍ଧ।

ମନକୁ ନ ପାରଇ ଧରି
ତୁ ମୋତେ ରଖ ଦଇତ୍ୟାରି !
ତୋହର ଚରଣ କମଳେ
ଶରଣ ରଖ ମୋତେ ବେଳେ
ଅଭୟଚରଣ ତୋହର
ଅଜ୍ଞାନୀ ଜନେ ଅଗୋଚର
ସଂସାର ଛୁଟଇ ତାହାର
ଯେ ତୋତେ କରଇ ବିଚାର
ତୋର ଚରଣେ ଭଗବାନ !
ନିଶ୍ଚଳ କର ମୋର ମନ
ଜ୍ଞାନ ବିଜ୍ଞାନ-ଦାତା-ରୂପୀ
ସର୍ବ ସମ୍ପଦ ମାୟା ବ୍ୟାପୀ
ପରମ ପୁରୁଷ ବିଧାତା
ଅନନ୍ତରୂପ ବଳବନ୍ତା

ନମଇଁ ପ୍ରଭୁ ବାସୁଦେବ
ଭବସାଗରେ ସୁଖ ନାବ
ଇନ୍ଦ୍ରିୟମାନଙ୍କ ଈଶ୍ୱର
ହେ ନାଥ ! ଶରଣ ତୋହର ।୨୮, ୨୯

କହଇ ଦାସ ଜଗନ୍ନାଥ
ଅକ୍ରୁର ଜଳେ ଦେଖି ରଥ
ଆନନ୍ଦେ କଲା ଯେତେ ସ୍ତୁତି
ସୁଜ୍ଞାନୀ ଏଣେ କର ମତି

ଅକ୍ରୁର ସ୍ତୁତି ଯେ ଶୁଣନ୍ତି
ଭବସାଗରେ ନ ପଡ଼ନ୍ତି
କର୍ମବାସନା ହୋଏ କ୍ଷୟ
ତାରନ୍ତି ପ୍ରଭୁ ଦେବରାୟ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅକ୍ରୁର ସ୍ତୁତି-
ର୍ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ॥ ୪୩ ॥



# ଚତୁଶ୍ଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୪୧ଶ ଅଧ୍ୟାୟ )

ଏକଚତ୍ୱାରିଂଶକେଽସ୍ମିନ୍ ରଜକଂ ପ୍ରାବଶନ୍ ପୁରଂ
ହତୋ ବସ୍ତ୍ରନଦାତ୍ରୁ କୃଷ୍ଣଃ ସୁଦାମ୍ନୋ ବାୟୂକସ୍ୟ ଚ ।

ଚତ୍ୱାଳଶେ ରାମ ହରି । ମଥୁରା ରଜକ ସଂହାରି
ସୁଦାମା ଗନ୍ଧାଇତ ବେନି । ବରେ ତୋଷିଲେ ଭବ ଘେନି । ୦

ଶ୍ରୀ ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁବଳା !
ଅକ୍ରୂର ଜଳେ ସ୍ତୁତି କଲା
ପୁଣ ଚରଣତଳେ ଶୋଇ
ବୋଲଇ କୃଷ୍ଣ ସାହା ସାହା
ଭକତବନ୍ଧୁ ଜନାର୍ଦ୍ଦନ
ଜଳେ ହୋଇଲେ ଅନ୍ତର୍ଦ୍ଧାନ
ଯେସନ ନଟବରଗତି
ପ୍ରସ୍ତାବ ସତୃଶେ ଭଜନ୍ତି । ୧
ଅକ୍ରୂରେ ଦେଖାଇ ଶରୀର
ତକ୍ଷଣେ ହୋଇଲେ ଅନ୍ତର
ଅକ୍ରୂର ଥିଲା ପାଦେ ପଡ଼ି
ପୁଣି ଉଠିଲା କର ଯୋଡ଼ି
ଦେଖିଲା କେହି ନାହିଁ ଜଳେ
ଉଠି ଚାହାଁଇ ନଦୀକୂଳେ
ବୃକ୍ଷର ମୂଳେ ରଥେ ଥାଇ
ଡାକନ୍ତି ପ୍ରଭୁ ଭବଗ୍ରାହୀ
ଅକ୍ରୂର ଦେଖି ତୋଷ ମନ
ବେଗେ ସାରିଲା ନିତ୍ୟକର୍ମ
ଉଠି ମିଳିଲା ରଥତଳେ
ପଡ଼ିଲା କୃଷ୍ଣ ପାଦତଳେ
ହସି ବୋଲନ୍ତି ଆଦିମୂଳ
ଜଳେ ତ ବିଳମ୍ବ ତୋହର
ମଥୁରା ଯିବା କେତେବେଳେ ?
କିସ ଦେଖିଲୁ ପୁଣ ଜଳେ
ଗଗନ ଶୂନ୍ୟ ମହୀଭିତରେ
କି ଅବା ଦଶଦିଗ ଲଗେ
ଯାହା ଦେଖିଲୁ କହ ମୋତେ
ତେବେହେଁ ଯିବଇଁ ପରତେ । ୨,୩
ଅକ୍ରୂର ଶିରେ କର ଦେଇ
ବହଇ ଶ୍ରୀମୁଖ ଅନାଇ
ଜଳେ ଦେଖିଲି ମୁହିଁ ଯାହା
ହେ ନାଥ ! ନ ଜାଣୁ କି ତାହା ?
ମୋତେ ପଚ୍ଛରୁ ମାୟା କରି
ଭକତସୋଦର ମୁରାରି
ତୋହର ତହୁଁ ଆନ ନାହିଁ
ଜଳେ ଦେଖିଲି ତୋତେ ମୁହିଁ
କୃଷ୍ଣ ବୋଲନ୍ତି ଶୁଣି ତାହା
ଅକ୍ରୂର ବେଗେ ରଥ ବାହା । ୪,୫

ଅକ୍ରୂର କୃଷ୍ଣ ଆଜ୍ଞା ପାଇ
ରଥେ ବସିଲା ବେଗେ ଯାଇଁ
ଗୋବିନ୍ଦ ପାଦେ ମନ ଦେଇ
ରଥ ବାହାଇ ତୋଷ ହୋଇ
ଆଦିତ୍ୟତେଜ ଅବସାନେ
ମିଳିଲା ମଥୁରା ଭୁବନେ
ପଥେ ଯେ ଥିଲେ ନରନାରୀ
ରଥେ ଦେଖିଲେ ରାମ ହରି
ଦେଖି ଅପୂର୍ବ ରୂପ ଦୁଇ
ହସ୍ତ ଚରଣ ନ ଚଳଇ । ୬,୭
ଗ୍ରାମେ ପ୍ରବେଶ ଭଗବାନ
ଦେଖି ଆନନ୍ଦ କୃଷ୍ଣମନ
ବୋଲନ୍ତି ପ୍ରଭୁ ଗୋପୀନାଥ
ଅକ୍ରୂର ଦଣ୍ଡେ ରୁହା ରଥ
ପଛେ ଅଛନ୍ତି ଗୋପବାଳ
ଏଠାରେ ହୋନ୍ତୁ ଏକମେଳ
ଗୋରସ ଅଛି ଯେତେ ଭାର
ରାଜାର ଉଚିତ ଭଣ୍ଡାର
ସକଳେ ଏକରୁଣ୍ଡ ହୋଇ
ମିଳିବୁଁ ରାଜା ଆଗେ ଯାଇଁ
ତେବେ ହୋଇବ ତୋର ଯଶ
ଶାନ୍ତି ପାଇବୁ ଗ୍ରାମ ଦେଶ
ଏମନ୍ତ ବୋଲୁ ବୋଲୁ ପଥେ
ଗୋପାଳେ ମିଳିଲେ ତ୍ୱରିତେ
ଦେଖି ସାନନ୍ଦ ଭବଗ୍ରାହୀ
ବୋଲନ୍ତି ଅକ୍ରୂରେ ରୁହାଇ
ରଥୁଁ ଓହ୍ଲାଇ ଦାମୋଦର
ଅକ୍ରୂର ହସ୍ତେ ଦେଇ କର
କୋମଳ ଗମ୍ଭୀର ବଚନ
ଆଶ୍ୱାସି ଅକ୍ରୂରର ମନ

ହେ ତାତ ! ରଥ ଘେନ ଯାଅ
କଂସର ଛାମୁରେ ଜଣାଅ ।
ବୋଲି ଅଇଲେ ବେନଭାଇ
ଅଇଲ ତୋଟାରେ ବସାଇ
ସକଳେ ହୋଇ ଏକମେଳ
ସଙ୍ଗେ ଅଛନ୍ତି ଗୋପବାଳ
ଯେତେ ଶକଟ ଅଛି ଭରି
ଧନ ଗୋରସ ଆଦି କରି
ସକଳେ ହୋଇ ଏକସ୍ଥାନ
କାଲି କରିବେ ଦରଶନ
ଏମନ୍ତ କହି ଶ୍ରୀ ଛାମୁର
ଅକ୍ରୂର ଯାଅ ତୋର ଘର
ଆମ୍ଭେ ଦେଖିବୁ ମଧୁପୁର
କେମନ୍ତ ଦିଶଇ ସୁନ୍ଦର । ୮-୧୦
ଅକ୍ରୂର କୃଷ୍ଣମୁଖ ଚାହିଁ
ବୋଲଇ ଶିରେ କର ଦେଇ
ଏ କଥା ନୁହଇ ଉଚିତ
ତୁ କିଂ ନ ଜାଣୁ ଗୋପୀନାଥ !
ତୁମ୍ଭ ଦୁହିଁଙ୍କି ଛାଡ଼ିକରି
ଜୀବନ ପାଇବି କପଟି ?
ଭକତବତ୍ସଳ ମୁରାରି !
ମୋତେ ନ ଛାଡ଼ କୋପ କରି । ୧୧
ହେ ନାଥ ! ଆସ ମୋର ଘର
ବାନ୍ଧବ ଯେବେ ମୁଁ ତୋହର
ସଫଳ କର ମୋର ଘର
ଅଶେଷ ବ୍ରହ୍ମାଣ୍ଡ ଠାକୁର !
ସଙ୍ଗତେ ରୋହିଣୀ କୁମର
ଯେତେ ଗୋପାଳେ ଛନ୍ତି ତୋର
ନନ୍ଦ ଯଶୋଦା ଆଦି କରି
ସଙ୍ଗତେ ଯେତେ ଗୋପନାରୀ

ସବୃନ୍ଦ ଧେନୁ ମୋର ଘରେ
ବିଜୟ କର ଶ୍ରୀପଦ୍ମରେ
ତୋହର ପାଦ ରଜ ମାରି
ପବିତ୍ର କରୁ ମୋର ଘର
ପିତୃ ଯେ ଅଗ୍ନି ଦୈବତ
ଯାହା ଚିନ୍ତନ୍ତି ଅବିରତ । ୧୨,୧୩
ବଳି ଯେ ଧୋଇ ତୋର ପାଦ
ପାଇଲା ଅଶେଷ ସମ୍ପଦ
ଯଶ ରହିଲା ତିନି ଲୋକେ
ଭକତ କଲା ସେହି ଏକେ
ଗଙ୍ଗା ତୋ ଚରଣୁ ବାହାରି
ପବିତ୍ର କଲା ତ୍ରିପୁର
ଶଙ୍କର ବହିଅଛି ଶିରେ
ସଗରପୁତ୍ରେ ସ୍ୱର୍ଗେ ଗଲେ । ୧୪,୧୫
ତୁ ଦେବଦେବ ଜଗନ୍ନାଥ
ପୁଣ୍ୟକୀର୍ତ୍ତନ କୀର୍ତ୍ତିମନ୍ତ
ଯଦୁଉତ୍ତମ ପୁଣ୍ୟଶ୍ଳୋକ
ନମଇଁ ଜଗତପାଳକ । ୧୬
ଶୁଣି ବୋଲନ୍ତି ଚକ୍ରଧର
ଅକ୍ରୂର କନ୍ଧେ ଦେଇ କର
ଶୁଣ ଅକ୍ରୂର ମୋ ବଚନ
ମନେ ନ ବିସ୍ମର ତୁ ଆନ
ଯିବଇଁ ତୋହର ମନ୍ଦିର
ସଙ୍ଗେ ମୁଁ ଘେନି ହଳଧର
ଆଗେ ମୁଁ କଂସଦର୍ପ ଧ୍ୱଂସି
ବନ୍ଧୁ ବାନ୍ଧବ ମାତା ତୋଷି
ପଛେ ମୁଁ ଯିବି ତୋର ପୁର
ସତ୍ୟ ବଚନ ଏ ମୋହର । ୧୭
କୃଷ୍ଣ-ମୋହନ କଥା ଶୁଣି
ଅକ୍ରୂର ଗଲା ରଥ ଘେନି

କଂସର ଆଗେ ଜଣାଇଲା
କୃଷ୍ଣଙ୍କୁ ଆଣିଲି ବୋଇଲା
ନନ୍ଦ ଯଶୋଦା ରାମ ସଙ୍ଗେ
ଗୋରସ ଗୋପାଳଙ୍କ ସଙ୍ଗେ
ରୁଣ୍ଡ ହୋଇଲେ ଚଉଦ୍ୱାରେ
ଆଜକ ରହିବେ ତୋଟାରେ
କାଲି କରିବେ ଦରଶନ
ଶୁଣି ସାନନ୍ଦ କଂସ ମନ
ସନ୍ତୋଷ ମନେ ଭୋଜବୀର
ଅକ୍ରୂରେ ଦେଲେ ଉପହାର
ରତ୍ନ ବସନ ଅଳଙ୍କାର
ମେଲାଣି ପାଇଲା ଅକ୍ରୂର
କଂସକୁ କରି ତୋଷମନ
ମିଳିଲା ଆପଣା ଭୁବନ । ୧୮
କୃଷ୍ଣ ଯେ ଥିଲେ ମଧୁବନେ
ଗୋପାଳେ ମିଳିଲେ ବହନେ
ନନ୍ଦ ଯଶୋଦା ଆଦି ଯେତେ
ଗୋରସ ଶକଟ ସହିତେ
ତୋଟାରେ ହୋଇ ଏକରୁଣ୍ଡ
ଆବୋରି ମଥୁରାର ଦାଣ୍ଡ
ଯେ ଯାହା ମତେ ସାଜ ଘର
ବିବିଧ ନାନା ଉପହାର
କରନ୍ତି ରନ୍ଧନ ଭୋଜନ
ହରଷ ଗୋପାଳଙ୍କ ମନ
ଭୋଜନ ସାରି ବେନିଭାଇ
ଗୋପାଳପୁଅଙ୍କୁ ଅନାଇଁ । ୧୯
ବୋଲନ୍ତି ହୋଇ ହସ ହସ
ଆମ୍ଭେ ମଥୁରା ଯିବା ଆସ
ବେଳ ହୋଇବ ଅବସାନ
ବୁଲି ହୋ ଆସିବା ବହନ

ଦେଖିବା ରାଜାର କଟକ
କେମନ୍ତ ଦିଶଇ ଛଟକ
କିଆଇ ଯାହା ଧନୁଘର
କେମନ୍ତ କରିଛି ବଗର
ଅକ୍ରୂରେ ହାତେ ଦେଲେ ରଥ
ଆମ୍ଭଙ୍କୁ ଅଣାଇଲେ ଏଥ
ଏବେ କି କରିବ ଆମ୍ଭନ୍ତ
ହୋଇଲୁଁ ତାହାର ଆୟତ୍ତ
ଆସ ହୋ ଯିବା ମଧୁପୁରୀ
ଆଗ ହୋଇଲେ ହଳଧାରୀ
ଗୋପକୁମରେ କୃଷ୍ଣସଙ୍ଗେ
ମିଳିଲେ ଗଡ଼ଦ୍ୱାର ଲଗେ
ଦେଖିଲେ ସ୍ଫଟିକେ ନିର୍ମିତ
ଉଚ୍ଚ ପୁରୁଷ ପାଞ୍ଚ ସାତ
ବେନି କବାଟ ହେମମୟେ
ଲୁହାର କଳଣୀ ଯୋଡ଼ାଏ
ତୋରଣୀ ବୃକ୍ଷେ ବୃକ୍ଷେ ବାନ୍ଧ
ବିବିଧ ଫଳ ଡ଼ାଳେ ଛନ୍ଦ
ତମ୍ବାର ପାଟେରି ବହଳ
ଖଣା ଗମ୍ଭୀର ଶୁଦ୍ଧ ଜଳ
ଭିତରେ ନାନା ବୃକ୍ଷ ବନ
ଦିଶୁଛି ଭିନ୍ନେ ଭିନ୍ନେ ବର୍ଣ୍ଣ
ଯେ ଯାହା ମତେ ଅଳଙ୍କାର
କେଢ଼ଏ ଦିଶନ୍ତି ସୁନ୍ଦର
ଉପରେ ଶୋହେ ପୁଷ୍ପମାଳା
ସ୍ଫଟିକ ହୀରାର ମେଖଳା
ବୈଡୂର୍ଯ୍ୟ ମର୍କତ ମୁକ୍ତା
ଲମ୍ବାନ୍ତି ମାଳ ମାଳ ଗୁନ୍ଥା
ସୁବର୍ଣ୍ଣ କାନ୍ଥ ରତ୍ନ ସ୍ଥଳ
ଜଳାକବାଟି ପରିମଳ
ପାରି ମୟୂର ନାଦ କରି
ଶୁକ କୋକିଳ ଆଉ ଶାରୀ
ଗଜ ତୁରଗ ଶାଳା ପାଖେ
ବରାହ ମୃଗ ଝାଙ୍କେ ଝାଙ୍କେ
ବକ କୁକ୍କୁଟ ଆଦି ପେଷା
କୃଷ୍ଣ କରନ୍ତି ପରଶଂସା
ତହୁଁ ପଶିଲେ ପୁରେ ଯାଇଁ
ପୁଏରହୁଁାନ୍ତି ତୋଷ ହୋଇ । ୧୦-୨୨
ଦେଖିଲେ ରାଜମାର୍ଗେ ହରି
ଚନ୍ଦନ ଛେରିଏ ପହଁରି
ଚଣ୍ଡୂଳ ଲଜା ଦୁବା ସଙ୍ଗେ
ନାରୀଏ ବନ୍ଦାନ୍ତି ଆନନ୍ଦେ
ଯେଝାର ଦ୍ୱାରେ ପୂର୍ଣ୍ଣକୁମ୍ଭ
ଦଧି ଅକ୍ଷତ ବସ୍ତ୍ର ଗନ୍ଧ
ଫଳ ପଲ୍ଲବ ଦୀପାବଳୀ
ଶଙ୍ଖ ମହୁରି ହୁଳହୁଳି
ଦ୍ୱାରେ କଦଳୀ ବେନି ବୃକ୍ଷେ
ତୋରଣେ ମାଳ ଧ୍ୱଜ ଉଚ୍ଛେ
ଦ୍ୱାରରଂ ଖମ୍ବେ ପାଟଶାଢ଼ୀ
ଉପରେ ବୃନ୍ଦ ଅଃ ଉହାଡ଼ି ! ୨୩
ବସୁଦେବରଂ ବେନି ସୁତେ
ଗୋପାଳ ମେଳେ ରାଜପଥେ
ଦେଖି ଆସନ୍ତି ନରନାରୀ
ପଡ଼ିଲେ ରାଜପଥେ ପୂରି
ନାନା ପସରା ହାଟ ବାଟେ
କାମିନୀ ଧାଆନ୍ତି ଉଚ୍ଛାଟେ
ବୃକ୍ଷ ଅଟ୍ଟାଳ ଆରୋହନ୍ତି
ପିଣ୍ଡିରେ ଉଠି କେ ଦେଖନ୍ତି
କେ ନାରୀ ଗର୍ଭ ଅନାୟତେ
ବସ୍ତ୍ର ପିନ୍ଧିଲେ ବିପରୀତେ

ଅଙ୍ଗଭୂଷଣ ଅନୁଆନେ
ଅଞ୍ଜନ ଏକଇ ନୟନେ
ଏକ ଶ୍ରବଣେ କାପ ଭରି
ନୂପୁର ଏକ ପାଦେ ଭରି
ବଳୟ ଭରି ବାମ ହସ୍ତେ
କବରୀ ଫିଟିଅଛି ମାଥେ । ୨୪,୨୫
କେ ଭୁଞ୍ଜୁଥିଲେ ଦଧି ଘୃତ
ଧାଇଁଲେ ନ ପଖାଳି ହାତ
ତୈଳ ଅଏଁଲା ଘେନି ଶିରେ
କେ ଅବା ଥିଲେ ଜଳଘାଟରେ
ସ୍ନାନ ଉପେକ୍ଷିଲେ ବର୍ତ୍ତନ
ଧାଇଁଲେ ଶୁଣି ବାଦ୍ୟ ସ୍ୱନ
ଶୋଇଲା ଲୋକଙ୍କୁ ଛାଆଇଁ
ଆସ ଗୋ ବୋଲି ବେଗେ ଧାଇଁ
କାଖରୁ ବାଳକ ପକାଇ
ଧାଆନ୍ତି କୃଷ୍ଣେ ମନ ଦେଇ । ୨୬
ଦେଖିଣ ବସୁଦେବ ସୁତ
ନିର୍ମଳ କଲେ ଚର୍ମ ନେତ୍ର
ମଥୁରା ସ୍ତ୍ରୀଙ୍କର ମନ
ମୋହିଲେ ପ୍ରଭୁ ଭଗବାନ
ଲଳିତ ଗତି ଦିବ୍ୟ ବେଶ
ରଙ୍ଗ ଅଧର ମନ୍ଦହାସ
ମତ୍ତମାତଙ୍ଗ ପ୍ରାୟେ ହୋଇ
କଟାକ୍ଷ ନୟନେ ଅନାଇଁ
ମଥୁରାପୁର ନାରୀଙ୍କର
ଉତ୍ସବ ହୋଇଲା ଅପାର
ଯାହାର ଜନ୍ମ କର୍ମପଥେ
ବାରତା ଶୁଣିଥିଲେ ନିତ୍ୟେ
ଦେଖିଲେ ନୟନ ପୂରାଇ
ଗୋବିନ୍ଦ ସୁଧାରସ ପାଇ

ଆନନ୍ଦେ ଲୋଚନ ବୁଜିଲେ
କୃଷ୍ଣଙ୍କୁ ଭିତରେ ଦେଖିଲେ
ହୃଦରେ କଲେ ଆଲିଙ୍ଗନ
କରି ଗୁଡ଼ିଲେ ଖେଦମନ । ୨୭,,୨୮
ବୃଷ ଅଟ୍ଟାଳି ଗୃହେ ଥାଇ
ଆନନ୍ଦେ ଲୋଚନେ ଅନାଇ
ହରଷେ କୁସୁମ ଅଞ୍ଜଳି
ଦେଇ କରନ୍ତି ହୁଳାହୁଳି
ବ୍ରାହ୍ମଣେ ଆସି ରାଜଦାଣ୍ଡେ
କରଅଞ୍ଜଳି ଦେଇ ମୁଣ୍ଡେ
ଦଧି ଅକ୍ଷତ ଗଙ୍ଗାନୀର
କୁସୁମ ଗନ୍ଧ ଉପହାର
ଆନନ୍ଦେ କୃଷ୍ଣ ବଳରାମ
ବ୍ରାହ୍ମଣେ ପୂଜି ତୋଷମନ । ୨୯,୩୦
ମଥୁରାପୁର ଲୋକେ ମିଳି
ଦେଖିଲେ ରାମ ବନମାଳୀ
ବୋଲନ୍ତି ଗୋପାଳଙ୍କ ଭାଗ୍ୟ
ଶତେକ ଜନମେ କେ ପାଇବ
ଅନେକ ଜନ୍ମେ ତପକରି
ଗୋପରେ ଯେତେ ନରନାରୀ
ଗାଈ ମଇଁଷି ବନଭାଗେ
ଦିନ ବଞ୍ଚିଲେ କୃଷ୍ଣସଙ୍ଗେ
ରାମ ଗୋବିନ୍ଦ ମୁଖ ଚାହିଁ
ଜନ୍ମ ମରଣ ତାଙ୍କ ନାହିଁ । ୩୧
ଏମନ୍ତ ବୋଲୁ ବୋଲୁଁ ଲୋକେ
ରଜକ ମିଳିଲା କଟକେ
ରାଇ ସୋଦର ବନ୍ଧୁ ବଳ
ଘେନାଇ ରାଜା ମଡ଼ିଆଳ
ଆଗେ ବାଜଇ ଶଙ୍ଖ ଧ୍ୱନି
ଗୁଳଇ ମଡ଼ିଆଳ ଘେନି

ଦେଖିଣ ପଚ୍ଛରିଲେ ହରି
କେ ଯାଏ ବାଦ୍ୟନାଦ କରି
ଲୋକେ ବୋଇଲେ ଏ ରଜକ
ଅଟଇ କଂସର ସେବକ
ଏ ନିତ୍ୟେ ମଡିଆଳ ନେଇ
କାଳିନ୍ଦୀଜଳରେ କାଚଇ
ଏ ନେଇ ଦେବ ଗନ୍ତାଘରେ
ଭୋଜନୃପତିର ଛାମୁରେ
ଶୁଣି ଗୋବିନ୍ଦ ତୋଷ ହୋଇ
ଡାକନ୍ତି ରହ ରହ ଭାଇ !
ଆଗେ ଓଗାଳି ହଳଧର
ଯୋଏ ବଡିଲେ ଧାଡିକାର । ୩୨
ରଜକ ମୁଖ ଚାହିଁ ହସି
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି
ଦେଖିବା ରାଜା ମଡିଆଳ
ବସ୍ତ୍ରକୁ ଥୁଅ ଟେକଟ ତଳ
ଆମ୍ଭେ ହୋ ବସୁଦେବ ସୁତେ
ଗୋପରେ ଥିଲୁ ଦିନା କେତେ
ଦେଖିବା କେମନ୍ତ ସୁନ୍ଦର ?
କଂସରାଜାର ମଡିଆଳ
ଯେବେ ତୁ ନ ଦେବୁ ଦେଖାଇ
ଆମ୍ଭଙ୍କୁ ଦିଅ ବସ୍ତ୍ର ଦୁଇ
ନୀଳଧବଳ ଦେହ ଚାହିଁ
ଆମ୍ଭ ଉଚିତେ ବସ୍ତ୍ର ଦିଅ
ଆମ୍ଭେଟି ରାଜାର ଭଣଜା
ବସ୍ତ୍ର ତୁ ଦେଇଣ କହ ଯା
ଶୁଣି ନୃପତି ହେବ ତୋଷ
ସଂସାରେ ଥିବ ତୋର ଯଶ । ୩୩
ରଜକ ଛଦ୍ମରେ କାଳ
ନ ଶୁଣେ ରାମ-କୃଷ୍ଣ ବୋଲ

ପୁଣି ଗୃଲଇ ପହଲ୍ଲ
ଆଗେ ହୋଇଲେ ଭବଗ୍ରାହୀ
ମିଳିଲେ ରୌହିଣୀର ବଳା
ଦେଖି ରଜକ କୋପ କଲା
ଦଇବେ ରାଜାର ସେବକ
ସ୍ୱଭାବେ ରଜକ ମୂରୁଖ
ବୋଲଇ ପରୁଷ ବଚନ
ତୁମ୍ଭେ ଯେ ଅଟ ଜାତିହୀନ
ତୁମ୍ଭର କୁଳମୂଳ ନାହିଁ
ବନେ ଚରାଉଥାଅ ଗାଈ
ଗଉଡ଼ ଜାତିହୀନ ଲୋକ
ଶୃଗାଳ ପ୍ରାୟୁ ତୁମ୍ଭ ମୁଖ
ବାଇଙ୍କ ପ୍ରାୟୁ ଗୋରୁ ଘେନ
ବଜାଉଥାଅ ବେଣୁଧ୍ୱନି
ଏଡ଼େ ଭରସା ଗର୍ବ ବହ
ରାଜା ମଡିଆଳ ଲୁହାଅ । ୩୪,୩୫
ନିର୍ଲଜ ବୋଲି ଏହା ବୋଲି
ଜୀବନ୍ତ ଥାଉଁ ଥାଉଁ ମଲ
ତୁମ୍ଭର ତପ ପୂର୍ବ ନାହିଁ
ଗଉଡ଼େ ଅଛ ଜନ୍ମ ହୋଇ
ଜୀବନେ ଅଛି ଯେବେ ଆଶ
ପଳାଇ ଯାଅ ନିଜ ଦେଶ
ରାଜାର ଲୋକେ ଏହା ଶୁଣି
ସବୁନ୍ତି ପକାଇବେ ହାଣି
ତୁମ୍ଭେ ନ ମାଗ ମଡିଆଳ
ତୁମ୍ଭର ପୁରିବଟି କାଳ
କଂସ ଯେ ଅଛଇ ଅଣାଇ
ଆଜି ମାରିବ ବେନିଭାଇ
ହୋଇବ ଦଶାଦ୍ଧଗେ ବଳା
ଶୁଣି କୋପିଲେ ବନମାଳୀ । ୩୬

ବୃଷ୍ଣପଣ୍ଡେ ମାରି ବାମକର
ଛେଦିଲେ ରଜକର ଶିର
ତାହାର ସଙ୍ଗେ ଯେତେ ଥିଲେ
ବସ୍ତ୍ର ପକାଇ ପଳାଇଲେ
ରଜକ ଭୂମିରେ ପଡ଼ିଲା
ଜୀବନ ଗୋବିନ୍ଦେ ପଶିଲା । ୩୭
ହସି ବୋଲନ୍ତି ଭଗବାନ
ବସ୍ତ୍ର ନେବା ଘେନ ତୋଷ ମନ
ରାମ ଫେଡ଼ିଲେ ବସ୍ତ୍ରପୁଡ଼ା
ଘେନିଲେ ମଡିଆଳ ଯୋଡ଼ା
କାଛୁ ଘେନିଲେ ପୀତ ନୀଳ
ସୁନ୍ଦର ରାଜା ମଡ଼ିଆଳ
ଗୃହାନ୍ତି ବସୁଦେବବାଳ
ଘେନନ୍ତି ସର୍ବେ ମଡିଆଳ
ଗୋପାଳ ପୋଏ ଯେଝାମତେ
ବସ୍ତ୍ର ପିନ୍ଧିଲେ ତୋଷ ଚିତ୍ତେ
ଯେତେ ମଡ଼ିଆଳ ଉବୁରି
ପକାଇ ଗଲେ କୁଢ଼ କରି । ୩୮,୩୯
କନ୍ଧେ ପକାଇ ମଡିଆଳ
ଚହଟାନ୍ତି ମଦନଗୋପାଳ
ଥିଲା ଯେ କଂସ ବେଶକାରୀ
ବେଗେ ମିଳିଲା ଆଗସରି
ବୋଲଇ ଶିରେ କର ଦେଇ
ରାଜାର ଗନ୍ତାଇତ ମୁହିଁ
ବୋଇଲା ପିନ୍ଧାଇବି ରଙ୍ଗେ
କାଛେଣୀ ନାନା ପରିଭଙ୍ଗେ
ଶୁଣି ସାନନ୍ଦ ଗୋପୀନାଥେ
ବସନ ଦେଲେ ତାର ହସ୍ତେ
ତକ୍ଷଣେ ପିନ୍ଧାଇଲା କାଛୁ
ରାମ ଗୋବିନ୍ଦେ ବଳ ଆଛୁ

ବିବିଧ ନାନା ଅଳଙ୍କାର
ସୁଭାବେ ଦିଶିଲା ସୁନ୍ଦର
ବସ୍ତ୍ର ପିନ୍ଧିଲେ ପୀତ ନୀଳ
ଉତ୍ସବ ଯେସନ୍ତେ ପର୍ବ କାଳ
ବାଳକ ହସ୍ତୀ ବେଶ କରି
ଯେସନେ ଆନନ୍ଦେ ଉଭାରି
ରାମ ଗୋବିନ୍ଦ ସେହିମତେ
ଦିଶନ୍ତି ମଥୁରାର ପଥେ । ୪୦,୪୧
ଗୋବିନ୍ଦ ଗନ୍ତାଇତେ ଚାହିଁ
ବୋଲନ୍ତି ପ୍ରଭୁ ଭାବଗ୍ରାହୀ
ସମ୍ପଦ ହେଉ ତୋ ଅନେକ
ବଢ଼ୁତ ପୁତ୍ର ନାତି ଦେଖ
ବଳ ତୋହର ଦେହେ ହେଉ
ମୋହର ପାଦେ ଚିତ୍ତ ଥାଉ
ଅନ୍ତେ ପଶିବୁ ମୋର ଦେହେ
କହି ଚଳିଲେ ଦେବରାୟେ । ୪୨
ଚଳନ୍ତି ମଥୁରାଏ ହେରି
ଗୋପାଳ ପୋଏ ରାମ ହରି
ସୁଦାମା ନାମେ ମାଳାକାର
କୃଷ୍ଣ ମିଳିଲେ ତାର ଘର
ନାନା କୁସୁମେ ପରିମଳ
ପବନ ବହଇ ଶୀତଳ
ମାଳୀର ଦ୍ୱାରେ ଉଭା ହୋଇ
ଡାକନ୍ତି ପ୍ରଭୁ ଭାବଗ୍ରାହୀ
କୋମଳ ଗମ୍ଭୀର ବଚନ
ସୁଦାମା ଶୁଣି ତୋଷମନ
ବାହାର ହୋଇଲା ବହନ
ଦେଖିଲା ରାମ ଭଗବାନ
ପ୍ରଥମେ ଗଡ଼ିଗଲା ଶୋଇ
ବୋଲଇ ଧନ୍ୟ ଭଲ ମୁହିଁ

ପତ୍ନୀ ଆଣିଲା ଜଳଝାରି
ପାଦ ଧୋଇଣ ଶିରେ ଧରି
ପାଦ ଉଦକ ଘେନି ଶିରେ
ସିଞ୍ଚିଲା ନେଇ ଘର ଦ୍ୱାରେ
ପତି ପତ୍ନୀ ଯେ ଜଳ ଖାଇ
ନାଚନ୍ତି ମୁଣ୍ଡେ କର ଦେଇ
ଆନନ୍ଦସାଗରେ ବୁଡ଼ିଲା
ଗୋବିନ୍ଦ ଚରଣ ପୂଜିଲା
ଅର୍ଘ୍ୟ ଆଗମନ ଯେତେକ
ଗନ୍ଧ ଚନ୍ଦନ ଧୂପ ଦୀପ
ରୋହିଣୀସୁତ କୃଷ୍ଣ ସଙ୍ଗେ
ପୂଜିଲା ଗୋପାଳଙ୍କୁ ରଙ୍ଗେ
ପୂଜାର ଅନ୍ତେ ପାଦେ ପଡ଼ି
ବୋଲଇ ଶିରେ କରଯୋଡ଼ି । ୪୩,୪୪
ବୋଲଇ ଧନ୍ୟ ମୋର ଜନ୍ମ
ପବିତ୍ର ହୋଇଲା ଜୀବନ
ପବିତ୍ର ହୋଇଲା ମୋ କୁଳ
ଦେଖିଲି ପ୍ରଭୁ ଆଦିମୂଳ
ପିତୃ ଦେବତା ଋଷି ଯେତେ
ତୋଷ ହୋଇଲେ ଆଜ ମୋତେ
ଦେଖିଲି ପୁରୁଷ ପୁରାଣ
ଅନାଦି ପରମ କାରଣ
ଅବନୀ ଭାରର ଉଶ୍ୱାସେ
ଦେହ ବହିଲ ନର ଅଂଶେ
ଅସୁର ନାଶନେ ଏ ରୂପ
ସାଧୁଙ୍କୁ ଦେଲେ ଆତ୍ମାସୁଖ
ତୁମ୍ଭେ ଜଗତ ତାତ ମାତ
ନାହିଁ ତୁମ୍ଭର ଆଦି ଅନ୍ତ
ସକଳ ଜନ୍ତୁଙ୍କ ଜୀବନ
ପାଳନ ହେତୁ ନିରଞ୍ଜନ
ଭାବ କରନ୍ତି ପ୍ରାଣୀ ଯେତେ
ତାହାଙ୍କୁ ଭାବୁ ଏକଚିତ୍ତେ । ୪୫,୪୬
ହେ ନାଥ ! ଆଜ୍ଞା ମୋତେ କର
କପାଁ ଅଇଲ ମୋର ଘର
ତୋହର ଆଜ୍ଞା ଶିରେ ଘେନି
ତରନ୍ତି ଭବଜଳୁଁ ପ୍ରାଣୀ
ଏମନ୍ତ ବୋଲି ତୋଷ ମନେ
ପଶିଲା ଆପଣା ଭୁବନେ
ସୁଗନ୍ଧ କୁସୁମର ଗଭା
ସୁନ୍ଦର ଦିଶୁଅଛି ଶୋଭା
କୃଷ୍ଣ ନିକଟେ ଦେଲା ନେଇ
ରାମ ଦେଖନ୍ତି ତାଠେ ଫେଇ
ରାମ ଗୋବିନ୍ଦ ବେନିଭାଇ
ତାଠୁ ଘେନିଲେ ମାଳ ଦୁଇ
ସୁଦାମ ଗୁହାଁଇ ଆନନ୍ଦେ
ଲମ୍ବାଇ ରାମ କୃଷ୍ଣ ହୃଦେ
ଚୂଳେ ବାନ୍ଧିଲେ ବେନି ଗଭା
ଦିଶନ୍ତି ରାମ କୃଷ୍ଣ ଶୋଭା
ନିମୁଣ୍ଡୀ ଗଭା ଶିରେ ଦେଇ
ବୋଲନ୍ତି କୃଷ୍ଣ ସାଧୁ ସାଧୁ
ସୁଦାମ ମୁଖ ଚୁହିଁ ହରି
ବୋଲନ୍ତି ରାମ କର ଧରି
ବର ତୁ ମାଗ ତୋଷ ମନେ
ଭକତି କଲୁ ଯେତେ ମନେ ।୪୭—୫୦
ମାଳୀ ବୋଲଇ ଯୋଡ଼ି କର
ଶୁଣିମା ପ୍ରଭୁ ଦାମୋଦର
ସର୍ବ ସମ୍ପଦ ଅଛୁ ହରି
ଭକତି ଦିଅ ତୁ ବିସ୍ତରି
ମୋର ସମ୍ପଦେ କାର୍ଯ୍ୟ ନାହିଁ
ଶୁଣିମା ପ୍ରଭୁ ଭାବଗ୍ରାହୀ !

ଚୋର ଭକତ ଯେତେ ଜନେ
ସେବିବେ ତାହାଙ୍କ ଚରଣେ
ପ୍ରାଣୀଙ୍କି ହେଉ ମୋର ଦୟା
ହେ ନାଥ ! ଦିଅ ମୋତେ ଏହା ।୫୧
ଶୁଣି ସାନନ୍ଦ ମହାବାହୁ
ବୋଇଲେ ଏହି ବର ହେଉ
ମାଳୀର ମନ ତୋଷ କରି
ଧନ ଆୟୁଷ ଯଶ ଶିରୀ
ଦେଇ ଚଳିଲେ ଦାମୋଦର
ଗୋପ କୁମରେ ହଳଧର । ୫୨

କହଇ ଦାସ ଜଗନ୍ନାଥ
ଗୋବିନ୍ଦ ମଥୁରାର ପଥ

ଏବେ ହୋଇବ ମଥୁରା ସ୍ଥିର
ଅସୁର କରିବେ ସଂହାର

ଭକତ ଜନେ ଶୁଣି ଏହା
ଖଣ୍ଡିବେ ଘୋର ଜଡ଼ମାୟା

ଏଣେ ହରିଙ୍କି ଧ୍ୟାନ କର
ଭବ ସାଗରୁଁ ହୁଅ ପାର

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାମ-କୃଷ୍ଣ ମଥୁରା ପ୍ରବେଶୋ ନାମ ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।



## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୪୨ଶ ଅଧ୍ୟାୟ )

ଦ୍ୱିଚତ୍ୱାରିଂଶକେ କୁବ୍‌ଜୋନ୍ନମନଂ ଧନୁଷୋଭିଦା ।
ବଧସ୍ତଦ୍ରକ୍ଷିଣାଂ କଂସା-ରିଷ୍ଟଂ ରଙ୍ଗୋପ୍ରବାଦ ଚ । ୧ ।

କୁଜ ସଳଖା, ଧନୁଭଙ୍ଗ । ସଜାଇବାର ସଭା ରଙ୍ଗ,
କଂସ ଅରିଷ୍ଟ, ରକ୍ଷି ବଧ । ପଞ୍ଚାଲିଶେ ଏ ସମ୍ବାଦ । ୧ ।

ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ବ୍ରହ୍ମଋଷି
ଶୁଣ ରାଜନ କୁରୁବଂଶି !
ସେଠାରୁ ଗଲେ ବନମାଳୀ
ଦେଖନ୍ତି ପୁରଲୋକେ ମିଳି

ଚାଲନ୍ତେ ପ୍ରଭୁ ଦେବରାଜା
ନିକଟେ ଦେଖିଲେ କୁବୁଜା
ସୁଗନ୍ଧ ପେଡ଼ି ଘେନି କାଖେ
ପଥେ ଚାଲଇ ତିନି ବାଙ୍କେ
ମୁଖ ତା ଦିଶଇ ସୁନ୍ଦର
କଟାକ୍ଷେ ଚାହିଁଇ ମଧୁର

ଗନ୍ଧ ଚନ୍ଦନ ନିତ୍ୟ ନେଇ
କଂସର ସ୍ଥାମୁରେ ଭେଟଇ
ତାର ଚନ୍ଦନ ଦେଖି କଂସ
ଅନେକ ପାଏ ମନତୋଷ
ଏମନ୍ତେ କୃଷ୍ଣଙ୍କୁ ଦେଖିଲା
ସଭୟେ ପଥ ଉପେକ୍ଷିଲା
ନିକଟରେ ଗଲା ଆଡ ହୋଇ
ଦେଖନ୍ତି ରାମକୃଷ୍ଣ ଦୁଇ
କୃଷ୍ଣ ମିଳିଲେ ତାର ପାଖେ
ବୋଲନ୍ତି କଂସ ତୋର କାଟଖେ
ଚନ୍ଦନ ପ୍ରାପ୍ୟତ ବାସଇ
କାହାକୁ ଦେଉ ଏହା ନେଇ
କହ ତୋହର ନାମ କିସ
ହଶୁଚୁ ଏମନ୍ତ ଭବିଷ୍ୟ
କାହାର ପତ୍ନୀ ତୁ ବୋଲଉ
ପିଠିରେ ତିନ କୁଜ ବହୁ
କର୍ମେ ତୁ ହୋଇଲୁ ଏମନ୍ତ
ଭୟ ନ କର କହ ସତ୍ୟ
ଆମ୍ଭେ ଗୋ ଅଟୁ ସହୋଦର
ରୋହିଣୀସୁତ ଦାମୋଦର
ଦେଖ ଆମ୍ଭର ଦେହ ଶୂନ୍ୟ
ଥୋକାଏ ଦେବୁ କି ଚନ୍ଦନ
ଆମ୍ଭେ ହୋଇବୁଁ ତୋଷ ମନ
ପାଇବୁ ପରଲୋକେ ଧର୍ମ
ରାଜା ହୋଇବ ମନେ ତୋଷ
ଜଗତେ ରହିବ ତୋ ଯଶ । ୧,୨
କୁବୁଜା କୃଷ୍ଣ ବୋଲ ଶୁଣି
କହଇ ମଧୁରସ ବାଣୀ
ତୁ ଅଟ ଜଗତ ସୋଦର
ଦାସୀ ମୁଁ ହୋଇବି ତୋହର
କଂସର ଅଟଇ ନିଯୋଗୀ
କରଇ ଦେବେ ଗନ୍ଧ ଲାଗି
ସ୍ୱାମୀ ତନୟ ମୋର ନାହିଁ
ଜନ୍ମହୁଁ କୁବୁଜା ଅଟଇ
ବିରୂପ ଦେଖି ମୋର ଶୋଭା
କେହି ନୋହିଲେ ମୋତେ ବିଭା
ଜାତି ମୋହର ଘଟୂଆଣୀ
ଜୀବିକା କଂସ ସେବାକାରୀ
ମୋର ଚନ୍ଦନେ ହୋଇ ତୋଷ
ଦେଇଛି ମୋତେ ତିନି ଦେଶ
ଅନେକ ଧନରହି ମୋର
ଜୀବନ ହୋଇଲା ଅସାର
ନିଷ୍ଫଳ ହୋଇଲା ମୋ ଦେହ
ଯାହା ଅରଜ ଅଛି ମୁହିଁ
ତୋ ରୂପ ଦେଖି ମୋର ମନ
ନିର୍ମଳ ହୋଇଲା ନୟନ
ରାଜାର ଗନ୍ଧ ଏ ଅଟଇ
ତୁମ୍ଭ ଦୁହିଁଙ୍କୁ ସେ ଯୋଗାଇ
କିପାଁ ନ ଦେବି ଗନ୍ଧ ତୋତେ
କଂସ କ୍ରୋପିବ ଯେବେ ମୋତେ
ତାହାକୁ ନାହିଁ ମୋର ଡର
ତୁମ୍ଭେ ମୋହର ବଳୀୟାର । ୩
ଏମନ୍ତ ବୋଲି ଗନ୍ଧ ଫେଇ
ଲେପିଲା କୃଷ୍ଣଅଙ୍ଗେ ନେଇ
ନାଭିରୁ ଶିର ଯାଏ କୋଳ
ଆନନ୍ଦେ ଦେଲା ହୁଳହୁଳ
କପାଳେ ଦେଲା ଠିଆଟିକା
ହୃଦରେ ଲମ୍ବାଇ ମୁକୁତା
ରାମଙ୍କୁ କଲା ସେହିମତ
ଦେଖି ହସନ୍ତି ଗୋପୀନାଥ । ୪,୫

ଦୟାସାଗର ଦାମୋଦର
ଧଇଲେ କୁବୁଜାର କର
ବେନି ଚରଣେ ପାଦ ଦେଇ
ଓଷ୍ଠରେ ଅଙ୍ଗୁଳି ଲଗାଇ
ଅଳପ କରି ଦେଲେ ଟେକି
ଯୋଏ ହସନ୍ତି ତାହା ଦେଖି
ଲାଗନ୍ତେ ଚକ୍ରଧର କର
ତକ୍ଷଣେ ହୋଇଲା ସୁନ୍ଦର । ୬-୮
ତିନି କୁବ୍ଜ କେଉଣେ ଗଲା
ରୂପରେ ଅନଙ୍ଗ ମୋହିଲା
ହୋଇଲା ଅପୂର୍ବ କାମିନୀ
ଦେଖି ଟଳିବେ ସୁର ମୁନି
ଜଗତେ ନାହିଁ ପଟାନ୍ତର
ଦିଶଇ ଅତ୍ୟନ୍ତ ସୁନ୍ଦର
ଦେଖି ଚକିତ ଦେବତାଏ
ହରିହୁଁ ଆନେ ଯୋଗ୍ୟ ନୋହେ
କୁବୁଜା ନିଜ ରୂପ ଗୃହିଁ
କୃଷ୍ଣଙ୍କୁ ଦେଖି ବିଚାରଇ
ଏତ ଅନାଦି ବିଶ୍ୱକର୍ମା
ଜଗତେ ନାହିଁ ତା ଉପମା
ଏହାରେ ହୋଇଲି ସୁନ୍ଦର
ଏ ସେ ମୋହର ନିଜ ବର
ଅନେକ ଅଛି ମୋର ଭାଗ୍ୟ
ଦଇବ କରିଅଛି ଯୋଗ
ଏମନ୍ତ କୁବୁଜା ବିଚାରି
କୃଷ୍ଣର ଧଇଲା ଉତ୍ତରୀ
ଲଜ୍ଜାହିଁ ନ କଲା ରାମକୁ
ବୋଇଲା ଆସ ମୋ ଘରକୁ
ମୋର ମନ୍ଦିରେ ଆଜ ରହି
କାଲି ଭେଟିବ କଂସ ଯାଇ
ତୁ ମୋତେ କଲୁ ଏଡ଼େ ରୂପ
ହେ ନାଥ ! ନ କରିବା କୋପ
ଏ ଦେହ ଆନେ ହେଲେ ଭୋଗ
ଅନଳେ କରିବଟି ଯୋଗ
ତୁ ମୋତେ ଗଲେ ଆଜ ଛାଡ଼ି
ବଜ୍ର ପଡ଼ିବ ମୁଣ୍ଡେ ମାଡ଼ି
ଜୀବନ ରଖ ମୋର ଆଜ
ଶୁଣି ପାଇଲେ କୃଷ୍ଣ ଲାଜ
ଗୋପକୁମରଙ୍କୁ ଅନାଇଁ
ବୋଇଲେ କୁବୁଜା ବୁହାଇ । ୯-୧୧
ଆମ୍ଭେ ଗୋ ଥିଲୁଁ ଗୋପପୁରୀ
ରାଜା ଅଣାଇଅଛି ଧରି
କାଲି ଭେଟିବୁଁ ନୃପବର
ଗୁମୁରେ ଦେଇ ଦୃତସର
ମେଲାଣି ଦେଲେ କଂସରାୟେ
ସଙ୍ଗେ ଅଛନ୍ତି ବାପ ମାଏ
ଏ ଯେ ଅଛନ୍ତି ସଙ୍ଗେ ଯେତେ
ଦଣ୍ଡେହେଁ ନ ଛାଡ଼ନ୍ତି ମୋତେ
ମୋହର ଜ୍ୟେଷ୍ଠ ହଳଧର
ଦେଖ ମୋ ଧରିଛନ୍ତି କର
ରାଜା ମେଲାଣି ଦେନ ଶିରେ
ଏହାଙ୍କୁ ପେଷି ଗୋପପୁରେ
ନିଶ୍ଚୟ ଯିବ ତୋର ପୁର
ସଙ୍ଗେ ନ ଥିବେ ହଳଧର
ଏମନ୍ତେ ପ୍ରଭୁ ଭଗବାନ
ତୋଷିଲେ କୁବୁଜାର ମନ
କୁବୁଜା ବେନି କର ଯୋଡ଼ି
ପୁଣି କହଇ ପାଦେ ପଡ଼ି
ମୁଁ ଯାଇଁ ମଣ୍ଡୁଅଛି ଘର
ବହୁତ ବିଳମ୍ବ ନ କର

ମୁଁ ତୋତେ ନ ପାରିଲେ ଦେଖି
ଉପାଡ଼ି ପକାଇବି ଆଖି
ମନ ମୋ ଅଛୁ ତୋର ଠାଇଁ
ଉତ୍ତର ନ କର ଗୋସାଇଁ !
ଉଭୟ ଗୁଡ଼ଲା କୁବୁଜା
କୃଷ୍ଣ ବୋଇଲେ ଘରେ ଯା ଯା
ଗୋବିନ୍ଦ ପାଦେ ମନ ଦେଇ
କୁବୁଜା ଗଲା ତୋଷ ହୋଇ
ଥିଲା ଯେ ବପ୍ର ଜଗନ୍ନାଥ
ଗୋଡ଼ାଇ ଥିଲା କୃଷ୍ଣପଥ । ୧୨
ଗୋବିନ୍ଦ ଯାଆନ୍ତେ ଆଗସର
ପଡ଼ିଲା ଧନୁଘରେ ଦ୍ୱାର
ବାଟେ ଯେ ଥିଲେ ବଣିଯାରେ
ପସରା ତୋଳିଲେ ଯେଝାରେ
ରାମ-ଗୋବିନ୍ଦ ମୁଖ ଦେଖି
ନିର୍ମଳ କଲେ ଚର୍ମ ଆଖି
ଯେଝାରେ ଯେନ ଉପହାର
ପୁଷ୍ପ ତାମ୍ବୁଲ ଗନ୍ଧ ସାର
ଗୋପାଳକୁମାରଙ୍କ ମେଳେ
ପୂଜିଲେ ବସୁଦେବବାଳେ । ୧୩
କାମିନୀ ଗୃହଁ କୃଷ୍ଣ ମୁଖ
କନ୍ଦର୍ପବାଣେ ମନ ଦୁଃଖ
କୃଷ୍ଣର ଦେହେ ଦେଇ ତୋଳ
କେଶ ବସନ ଅସମ୍ଭାଳ । ୧୪
ମଥୁରାପୁର ନରେ ଗୃହଁ
ବୋଲନ୍ତି ବ୍ରହ୍ମାଣ୍ଡ ଗୋସାଇଁ
ରାଜାର ଧନୁଘର କାହିଁ
ଆମ୍ଭଙ୍କୁ ଦେଖାଇବ ନେଇ
ରାଜାହିଁ ଅଛଇ ଅଣାଇ
ଆମ୍ଭେ ଦେଖିବୁ ଧନୁ ଯାଇ

ଲୋକେ ହୋଇଲେ ଆଗୁଁ ସାର
ପଛେ ଗୋବିନ୍ଦ ହଳଧର
ଗୋପକୁମରେ ଗଲେ ଆଗେ
ମିଳିଲେ ଧନୁଘର ଲଗେ
ଦେଖିଲେ ରାଜା ଧନୁଘର
ଉତ୍ସବ ମଣ୍ଡିଣି ବେଭାର
ଧ୍ୱଜ ପତାକା କେବା କେତେ
ତୋରଣୀ ମୁକୁତାର ଝରା
ଗୁନ୍ଦିଆ ଚଣି ସ୍ତମ୍ଭେ ଫୁଲ
ଚିତ୍ର ବିଚିତ୍ର ପଟ୍ଟମଳ
ସମତ ସ୍ତମ୍ଭେ ଧନୁ ତେଜ
ବାଜଇ ମର୍ଦ୍ଦଳ ମହୁରୀ
ସୁବର୍ଣ୍ଣ ଘଣ୍ଟି ବେନି ଦୁକେ
ଲମ୍ବେ ମୁକୁତା ରତ୍ନମାଳେ
ବିବିଧ ଚାମର ମଣ୍ଡିଣି -
ଇନ୍ଦ୍ରର ଧ୍ୱଜ ପ୍ରାୟେ ମଣି । ୧୫
ବାଜଇ ଶାରନ୍ଦ୍ର-ନାଦ
କେ କହୁ ଧନୁର ସମ୍ପଦ
ଅନେକ ଦେଶୁ ରାଜାମାନେ
ମିଳିଲେ କଂସର ଭୁବନେ
ଧନୁ ଦେଖନ୍ତି ନରନାରୀ
ଯେଝାରେ ଅଳଙ୍କାର ଭରି
ଆନନ୍ଦ ହୋଇ ଯୂଥ ଯୂଥ
ଗହଳ ମଥୁରାର ପଥ
କାମିନୀ ଦେଲେ ହୁଳହୁଳି
ମିଳିଲେ ରାମ ବନମାଳୀ
ପାହାରୀ ଧନୁଦ୍ୱାରେ ରହି
ଭିତରେ ନ ଦିଅନ୍ତି ଯାଇ
କୃଷ୍ଣ ବୋଲନ୍ତି ଗୁଡ଼ ଦ୍ୱାର
ଆମ୍ଭେ ଦେଖିବୁ ଧନୁଘର

ଶୁଣି ପାହାରୀ ପରଜନ
ରାମ କୃଷ୍ଣଙ୍କୁ ଦେଲେ ଗାଳି
ତୁମ୍ଭେ ଯେ ସ୍ୱଭାବେ ଗୋପାଳ
ରାଜ୍ୟେ କି କରୁଅଛ ଗୋଳ ?
ଆମ୍ଭଙ୍କୁ ରାଜା ଆଜ୍ଞା ନାହିଁ
ଦ୍ୱାର ଛାଡ଼ିବୁ କାହିଁ ପାଇଁ ?
ରାଜାଙ୍କ ଆଗେ ଜଣାଇଲେ
ଏବେ ପଶିବ ତୁମ୍ଭେ ଭଲେ
ଶୁଣି ବୋଇଲେ ଦାମୋଦର
ଆମ୍ଭର ପାଇଁ ଧନୁର୍ଘର
ରାଜା ଅକ୍ରୂରେ ପଠାଇ
ଆମ୍ଭଙ୍କୁ ଅଛଇ ଅଣାଇ
ଆମ୍ଭର ପାଇଁ ଟି ଉତ୍ସବ
ହସି ବୋଲନ୍ତି ପଦ୍ମନାଭ
ପାହାରୀ ନ ଛାଡ଼ନ୍ତି ଦ୍ୱାର
ଆଗ ହୋଇଲେ ହଳଧର
ଗୋବିନ୍ଦ ପଶି ଅନ୍ତଃପୁରେ
ଧନୁ ଧଇଲେ ବାମକରେ
ଇନ୍ଦ୍ରର ଧନୁ ପ୍ରାୟେ ଶୋଭା
ରାମ ବୋଇଲେ ଗୁଣ ଦେବା
ଧନୁରେ ଅଛି କେତେ ବଳ
ପୁଣ ଯୋଡ଼ିଲେ ନନ୍ଦବାଳ
ଗୋବିନ୍ଦ ପାଦେ ଧନୁ ମାଡ଼ି
ହସ୍ତେ ବସାଇ ଧନୁ ଭିଡ଼ି
ଧନୁ ଟଙ୍କାର ନାଦ କରି
ଶବଦେ ତ୍ରିଭୁବନ ପୂରି
ଦକ୍ଷିଣି କର୍ଣ୍ଣେ ଯାଏ ଟାଣି
ବଳେ ଆମ୍ଫାଳେ ଚକ୍ରପାଣି
ଧନୁ ହୋଇଲା ବେନି ଖଣ୍ଡ
ଶବଦ କଲା ପରଚଣ୍ଡ
ଛୁଇଁଲା ବ୍ରହ୍ମଲୋକ ଯାଏ
କଂସ ପାଇଲା ମନେ ଭୟେ ।୧୭-୧୮
ପାହାରୀ ଯେ ଥିଲେ ପଳାଇ
ଅଇଲେ ଧନୁ ଭଗ୍ନ ଶୁଣି
ମାରନ୍ତି ନାନା ଶସ୍ତ୍ର ଘେନି
ଚହଲେ କମ୍ପଇ ମେଦିନୀ
ଦେଖି ଧାଇଁଲେ ହଳଧର
ଭାଙ୍ଗିଲା ଧନୁ ଧରି କର
ବୁଲାଇ ପିଟି କୋପଭରେ
ପାହାରୀ ଗଲେ ଯମପୁରେ
ରାଜାର ଯେତେ ବଳ ଥିଲେ
ରାମର ହାତେ ପ୍ରାଣ ଦେଲେ ।୧୯-୨୦
ଦେଖିଣ ଅନନ୍ତ ମୂରତି
ଭୟେ କମ୍ପଇ ସୁରପତି
କମ୍ପିଲେ ଦଶଦିଗପାଳେ
ଚହଲ ଆକାଶ ମଣ୍ଡଳେ
ନିମିଷ ମାତ୍ରେ ଧନୁ ଭାଙ୍ଗି
କଂସର ବଳ ଦର୍ପ ଭଞ୍ଜି
ଗୋବିନ୍ଦ ହୋଇଲେ ବାହାର
ଗୋପକୁମରେ ହଳଧର
ଦେଖିଲେ ରବି ଅସ୍ତ ହେଲା
ହସି ବୋଲନ୍ତି ନନ୍ଦବଳା
ଚାଲ ହୋ ଯିବା ନିଜ ସ୍ଥାନ
କାଲି ସେ ରାଜା ଦରଶନ
ଏମନ୍ତ ବୋଲି ବାହୁଡ଼ିଲେ
ମଥୁରା ତୋଟାରେ ମିଳିଲେ ।୨୧-୨୩
କହନ୍ତି ଶୁକ ମୁନିବର
ଶୁଣ ରାଜନ ରସଭର
ଅକ୍ରୂର ମୁଖ ଶୁଣି କୋପେ
ଯାହା ବୋଇଲେ ନାଥ ଗୋପେ

ବୋଇଲେ ମଥୁରା ଭୁବନ
ଧନ୍ୟଟି କଲେ ନାରୀଗଣ
ଦେଖିଣ ରାମକୃଷ୍ଣ ମୁଖ
ଖଣ୍ଡିବେ କୋଟି ଜନ୍ମ ଦୁଃଖ
ସେ କଥା ହୋଇଲା ସ୍ୱରୂପ
ଦେଖିଲେ ରାମକୃଷ୍ଣରୂପ । ୨୪
ଗୋପାଳେ ଦେଖି ମଧୁପୁର
କହନ୍ତି ଯଶୋଦା ଛାମୁର
ଆମ୍ଭେ ତୋ ସୁତ ସଙ୍ଗେ ଥାଇ
ମଥୁରା ଦେଖିଲୁ ଗୋ ଆଇ
ନିର୍ମଳ ହୋଇଲା ନୟନ
ତୋର ଜୀବନ ବଡ଼ ଧନ୍ୟ
ଯଶୋଦା ଘେନି ବେନି ସୁତ
କୋଳେ ବସାଇ ତୋଷ ଚିତ୍ତ
ଚୁମ୍ବନ ଦେଇ ନନ୍ଦରାୟେ
ପାଖେ ବସିଲେ ବେନି ପୋଏ
ସ୍ନାହାନ କରାଇ ହରଷ
ଭୁଞ୍ଜାନ୍ତି ରାମ ହୃଷୀକେଶ
ଛେନା ଗୋଟିକା ଦୁଧ ସର
ଗୋରସ ଅନେକ ପ୍ରକାର
ଗୋପପୁଅଙ୍କୁ ଘେନି ସଙ୍ଗେ
ଭୁଞ୍ଜନ୍ତି ରାମକୃଷ୍ଣ ରଙ୍ଗେ
ମଣୋହ୍ୱ ସାରି ଭଗବାନ
ଶୀତଳ ଜଳେ ଆଚମନ
ମୁଖବାସକୁ ବାସ ଗୁଆ
ତାମ୍ବୁଳ କର୍ପୂର ବଡ଼ିଆ
ଗନ୍ଧ ଚନ୍ଦନ ଅଙ୍ଗେ ବୋଳି
ବସିଲେ ରାମ ବନମାଳୀ
ଚାମର ଗୋପପୁଅ କଛେ
ଗାଅନ୍ତି ନାନା ଗୀତରଙ୍ଗେ

ପୁଷ୍ପ ବରଷି ସ୍ତୁତି କରି
ଶୋଇଲେ ରାମ ନରହରି । ୨୫
ବୋଲନ୍ତି ଶୁକ ମୁନିବର
କୃଷ୍ଣ ଚରିତ ସୁଧାସାର
ରଜନୀ ହୋଇଲା ଅପାର
ଶୁଣ ହୋ ରାଜାର ବଗୂର
ଧନୁର ଭଗ୍ନ ନାଦ ଶୁଣି
କୃଷ୍ଣର କଥା ମନେ ଗୁଣି
ରଜକ ପେଷି ଯମପୁର
ମୋହର ବସ୍ତ୍ର କଲେ ଜୂର
କୁବୁଜା ଗନ୍ଧ ଦେଲେ ନେଇ
ସୁନ୍ଦର କଲେ ତାର ଦେହ
ଏବେ ଭାଙ୍ଗିବ ଧନୁ ମୋର
ବାଳକେ ଏଡ଼େ ବଳୀୟାର
ନନ୍ଦର ଘରେ ବାଳକାଳେ
ଯେତେ ଅସୁର ମୋରି ଗଲେ
ସବୁ ମାଇଲେ ବେନିଭାଇ
ବଢ଼ୈ ଚରାଉଥାନ୍ତି ଗାଈ
ଏବେ ମୁଁ କରିବ କେମନ୍ତ
ଅଛନ୍ତି ମାଲ ଯେ ମାହୁନ୍ତ
ଗଜ ମୋ ଅଛି କୁବଳୟା
ନ ଜାଣି ବିଧାତାର ମାୟା
କେମନ୍ତ ରଖିବି ଜୀବନ
ଏମନ୍ତେ ଭାଳି ଛନ ଛନ
ନିଦ୍ରା ନ ମାଡ଼ଇ ନୟନେ
ଭାଳଇ ଅତି ଭୟମନେ । ୨୬
ପୁଣି କ୍ଷଣକେ ନିଦ୍ରା ମୋହି
ସଭୟେ ପୁଣିହିଁ ଚିଆଇଁ
ଦେଖଇ ସ୍ୱପ୍ନ ନାନା ବର୍ଣ୍ଣ
ମରଣ ହେତୁଙ୍କର ଚିହ୍ନ । ୨୭

ସୁବର୍ଣ୍ଣ କାନ୍ଥେ ଦେହଗୁଇଁ
ଦେଖଇ ମୂଣ୍ଡ ତାର ନାହିଁ
ଦର୍ପଣେ ଆଦିତ୍ୟର ଜ୍ୟୋତି
ରନ୍ଧ୍ରେ ଦେଖଇ ଭୋଜପତି
ଦୀପ ଦିଶନ୍ତି ଦୁଇ ଦୁଇ
ଚନ୍ଦ୍ର ହିଁ ତେମନ୍ତ ଦିଶଇ
ସୁଷୁପ୍ତିର ଦେହ ଛିଦ୍ରମୟେ
ଶ୍ୱାସ ନ ବାଜେ ଶଙ୍ଖପ୍ରାୟେ
ସୁବର୍ଣ୍ଣ ପ୍ରତିମାଏ ବୃକ୍ଷେ
କଂସକୁ ଦିଶଇ ପ୍ରତ୍ୟକ୍ଷେ
ପଙ୍କ ଧୂଳିରେ ପାଦଚିହ୍ନ
ନ ଦେଖେ ଶୁଅନ୍ତେ ସ୍ୱପନ
ମୃତପିଣ୍ଡକୁ କରି କୋଳ
ସାନନ୍ଦେ ଗୀତନାଦେ ଭୋଳ
ଗର୍ଦ୍ଦଭ କନ୍ଧେ ଚଢ଼ିଯାନ୍ତେ
ବିଷ ଭକ୍ଷଇ ଲୌହପାତ୍ରେ
ତୈଳ ଘଷିଣ ଦିଗମ୍ବର
ହୃଦରେ ଜବାପୁଷ୍ପମାଳ
ଦକ୍ଷିଣ ଦିଗେ ଯାଏ ଧାଇଁ
ଚୂଳ ବନ୍ଧନ ଶିରେ ନାହିଁ
ଏମନ୍ତ ଦେଖଇ ସ୍ୱପନ
କ୍ଷଣକେ ହୋଏ ମୋହମାନ । ୨୮-୩୧
ଏମନ୍ତେ ପାହିଲା ରଜନୀ
କଂସ ଭାଳଇ ଭୟ ଘେନି
ଯେମନ୍ତ ଦେଖିଲି ସ୍ୱପନ
ନିଶ୍ଚୟେ ହୋଇବ ମରଣ
କଂସ ଜାଣଇ ଯୋଗବଳେ
ଗୋବିନ୍ଦ ମାରିଅଛି ବେଳେ
ସେ ବେଳେ ନୋହିଲି ମୁଁ ମୋକ୍ଷ
ଏବେ ମୁଁ ଦେଖିବି ପ୍ରତ୍ୟକ୍ଷ

ଉଦେ ହୋଇଲେ ଦିନକର
କଂସହିଁ ହୋଇଲା ବାହାର
ରଙ୍ଗସଭାରେ ବିଜେ କଲା
ରାଜାଗଣଙ୍କୁ ଅଣାଇଲା
ଆସି ହେଯ ଥିଲେ ରାଜାଗଣେ
କଂସ ଡକାଇ ଜଣେ ଜଣେ
ରାଜାଏ ଶମ୍ବରର ମୂଳେ
ନାରକାସୁର ଶିଶୁପାଳେ
ବଜ୍ରକବଚ ବାଣାସୁର
ପୁଣ୍ଡ୍ରକ ଶାଲ୍ୱ ଦନ୍ତବକ୍ତ୍ର
ଯୋଜନବାହୁ ବଜ୍ରନାଭ
ଏ ଆଦି କେତେକ ଦାନବ
କ୍ଷତ୍ରିୟ ସୋମ ରବି ବଂଶ
କଂସର ଯେତେକ ବିଶ୍ୱାସ
ମୃଗ କଳିଙ୍ଗ ଭଦ୍ରସେନ
ବିଦେହ ନୈଷଧ ରାଜନ
କଂସର ପ୍ରିୟପଣେ ଆସି
ମିଳିଲେ ସୋମ ସୂର୍ଯ୍ୟବଂଶୀ
ଦଇବେ ଭୋଜ ଦଣ୍ଡଧାରୀ
ଅନେକ ମଞ୍ଚା ଅଛି କରି
ମଣ୍ଡିଲା ନାନା ଉପହାରେ
ନିର୍ମିତ ଦର୍ପଣ ସୁନ୍ଦର
ବିବିଧ ମତେ ବସ୍ତ୍ର ଦେଇ
ଉପରେ ଚନ୍ଦ୍ରୁଆ ଖଞ୍ଜାଇ
ଲମ୍ବନ୍ତି ମୁକୁତାର ଝରା
ମାଳ କୁସୁମ କେରା କେରା
ମଧ୍ୟେ କାଞ୍ଚନ ସିଂହାସନ
ଦେଖିଲେ ତୋଷ ହୋଏ ମନ
ସୁଗନ୍ଧ ଧୂପ ଦୀପ ପାତ୍ରେ
ଉପରେ ଶୋହେ ଧ୍ୱଜ ଛତ୍ରେ

ରାଜାଏ କଂସ ଆଜ୍ଞା ପାଇ
ମଞ୍ଚାରେ ବସୁଛନ୍ତି ଯାଇ
ରାଜା ଗୋଟିକେ ଏକ ମଞ୍ଚା
ସମସ୍ତ କରିଅଛି ସଞ୍ଚା
ରାଜା ପୂଜିଲେ ଜଣେ ଜଣେ
ଚନ୍ଦନ କୁସୁମ ବସନେ
ବିବିଧ ମତେ ଭୋଗ ଦେଇ
କହଇ ରାଜାଙ୍କୁ ଅନାଇଁ
ତୁମ୍ଭେ ସକଳ ବନ୍ଧୁଜନେ
କହଇ ଶୁଣ ସାବଧାନେ
ବସୁଦେବର ପୁତ୍ର ଦୁଇ
ବଢିଲେ ଗୋପପୁରେ ଥାଇଁ
ଭଣୋଇ କଲା ମୋତେ ଛନ୍ଦ
ମୋତେ ସେ ନ ଜାଣଇ ନନ୍ଦ
ଅନେକ ବଳ ମୋର ଥିଲେ
ରାମ ଗୋବିନ୍ଦ ସଂହାରିଲେ
ଏବେ ନଗରେ ଗୋଳ କଲେ
ବଳେ ମୋ ଧନୁକି ଭାଙ୍ଗିଲେ
ରଜକ ମାରି ବସ୍ତ୍ର ଜୁରି
ଗନ୍ଧ ଛଡ଼ାଇ ନେଲେ ମୋରି
ଗୋପାଳ ମେଳରେ ଭିଆଇ
ମୋତେ ମାରିବେ ବେନଭାଇ
ଏବେ ମୁଁ ଅଣାଇଲି ଧରି
ତାତ ଜନନୀ ଆଦି କରି
ହସ୍ତୀର ହସ୍ତେ ମରାଇବି
ଏମନ୍ତ ଶତ୍ରୁ ସଂହାରିବି
ଯେବେ ସେଠାରୁ ଉବୁରିବେ
ମାଲଙ୍କ ହସ୍ତେ ପ୍ରାଣ ଦେବେ
ମଞ୍ଚାରେ ବସି ପିତା ମାତା
ଦେଖିବେ ପୁତ୍ରଙ୍କର ହତ୍ୟା

ତୁମ୍ଭେ ସକଳେ ଦେଖୁଥିବ
ମୋହର ଶତ୍ରୁ ନାଶ ଯିବ
ଏମନ୍ତ ବୋଲି ଭୋଜସାଇଁ
ରାଜାଙ୍କୁ ମଞ୍ଚାରେ ବସାଇ
ବାଜଇ ଖରତୁରି ନାଦ
କେ କହୁ କଂସର ସମ୍ପଦ
ଚାଣୁର ମୁଷ୍ଟିକର ମେଳେ
ଶଲ ତୋଶଲ କୂଟ ମାଲେ
ଏହାଙ୍କ ତୁଲେ ଶତେ ମାଲ
ଅଣାଇ କହେ ଭୋଜପାଳ
ତୁମ୍ଭର ବଳେ ମୋ ଭରସା
ଆଜ ମୋ ପୂରିଇବ ଆଶା
ନନ୍ଦ ଯଶୋଦାଙ୍କୁ ଅଣାଇ
ଗୋରସ ଭଣ୍ଡାରେ ଥୁଆଇ
ମଞ୍ଚାରେ ନେଇ ବସାଇଲା
ସମରି ଦେଖିବୁ ବୋଇଲା
ବସୁଦେବର ପୁତ୍ର ଦୁଇ
ଘରେ ଲୁଚାଇ ଥିଲେ ନେଇ
ବସୁଦେବର ମିତ୍ରପଣୁଁ
ତୋହର ଦୋଷ ନାହିଁ ତେଣୁ
ବନ୍ଧୁର ହିତ କଲୁ ଯେବେ
ତାଙ୍କ ମରଣ ଦେଖ ଏବେ
ନନ୍ଦକୁ ମଞ୍ଚାରେ ବସାଇ
ବୋଲଇ ପାତ୍ର ମନ୍ତ୍ରୀ କହିଁ
ତୁମ୍ଭେ ହୋ ଥିବ ମୋର ପାଖେ
ମଞ୍ଚାରେ ବସି ଦେଖ ସୁଖେ
ଆପଣେ ମଞ୍ଚାରେ ବସିଲା
ଦୂତଙ୍କୁ ଯାଅରେ ବୋଇଲା
ବେଗେ ରେ ଯାଅ ମଧୁବନ
ରାମକୃଷ୍ଣଙ୍କୁ ଧରି ଆଣ

କଂସର ଆଜ୍ଞା ଘେନି ଶିରେ
ଦୂତେ ମିଳିଲେ ଧାଡ଼ିକାରେ । ୩୨,୩୮
ବୋଲଇ ଦାସ ଜଗନ୍ନାଥ
ଭେଟିଲେ ରାମ ଗୋପୀନାଥ

ସେ ରାମ-କୃଷ୍ଣଙ୍କର ଚରଣେ
ସୁଜନେ ଚିନ୍ତ ଅନୁକ୍ଷଣେ
ଦୟାସାଗର ନାମ ହରି
ବାପଦୁଁ ଧରିବ ଉଦ୍ଧରି

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରଙ୍ଗସଭା ବର୍ଣ୍ଣନଂ
ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ । ୪୫ ।



## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ
( ମୂଳାନୁସାରେ ୪୩ଶ ଅଧ୍ୟାୟ )

ଦ୍ୱିଚତ୍ୱାରିଂଶକେ ହତ୍ୱା ଗଜେନ୍ଦ୍ରଂ ରାମକୃଷ୍ଣୟୋଃ ।
ରଙ୍ଗପ୍ରବେଶସୌଭାଗ୍ୟଂ ଗୃଣୁରେଣ ଚ ଭାଷଣଂ । ୦ ।

ଯେମନ୍ତେ ରାମକୃଷ୍ଣ ବେନି । କଂସହସ୍ତୀର ପ୍ରାଣ ଘେନି
ପ୍ରବେଶ ହୋଇଲେ ରଙ୍ଗମଧ୍ୟ । ଷଟଚ୍ଛଳିଶେ ସେ ସମ୍ବାଦ । ୦ ।

ଶ୍ରୀ ଶୁକ ଉବାଚ

ବୋଲନ୍ତି ଶୁକ ମୁନିବର
ସାନନ୍ଦେ ଶୁଣ କୁରୁବୀର
ରାମ ଗୋବିନ୍ଦ ମଧୁବନେ
ଭେଟିଲେ କଂସ-ଦୂତମାନେ
ଦୂତଙ୍କ ନିକଟେ ରହାଇ
ସ୍ନାହାନ କଲେ ବେନିଭାଇ
ଭୋଜନ କଲେ ଦୁଧ ସର
ଆନନ୍ଦେ ନାନା ଉପହାର
ବିବିଧ ନାନା ଅଳଙ୍କାର
ବସ୍ତ୍ର ପିନ୍ଧିଲେ ପୀତ ନୀଳ
ମାଲଦୁନ୍ଦୁଭିନାଦ ଶୁଣି
ସାନନ୍ଦ କୃଷ୍ଣ ହଳପାଣି

ଗୋପାଳ ପୋଏ ସଜ ହୋଇ
ମଧ୍ୟେ ବିଜୟ ଭାବଗ୍ରାହୀ
ମଥୁରାନଗରେ ପଶିଲେ
କଂସର ଦୂତେ ଆଗେ ଗଲେ
ରାମ ଗୋବିନ୍ଦ ଦେଖି ପଥେ
ଲୋକେ ମିଳିଲେ ଯୂଥେ ଯୂଥେ
ଏକ ଆରକେ ସଜ ହୋଇ
କାମିନୀଗଣେ ଛନ୍ତି ଧାଇଁ
ସକଳେ ଘରଦ୍ୱାର ଛାଡ଼ି
ଧାମନ୍ତି ରାଜପଥ ମାଡ଼ି
ସ୍ତ୍ରୀ ପୁରୁଷ ବାଳ ବୃଦ୍ଧେ
ଗୋବିନ୍ଦ ଦେଖିବାର ସଧେ
ଆଗେ ଧାମନ୍ତି ବଳବନ୍ତ
ଗହଳ ମଥୁରାର ପଥ

ଅନଳ ଦେଖିଣ ପତଙ୍ଗେ
ଯେସନ୍ତେ ଧାମନ୍ତି ଜବଦବେଗେ
ରାମ ଗୋବିନ୍ଦ ମୁଖ ଚାହିଁ
ନୟନପତା ନ ଚଳଇ
ଦେହ ସଂସାର ପାଶୋରିଲେ
ଆନନ୍ଦ ସାଗରେ ବୁଡ଼ିଲେ
ସ୍ୱର୍ଗେ ଦେଖନ୍ତି ଦେବତାଏ
ରାମ-ଗୋବିନ୍ଦର ବିଜୟେ
କାମିନୀ ଦିଅନ୍ତି ହୁଳହୁଳି
ଦେଖନ୍ତି ଦିଗପାଳେ ମିଳି
ପବନ ବହଇ ଶୀତଳ
ଶୂନ୍ୟେ ଉଡ଼ନ୍ତି ମେଘମାଳ
ଜନ ଗହଳ ରାଜପଥେ
ଗୋବିନ୍ଦ ଦେଖନ୍ତି ଉସତେ
କହନ୍ତି ଏକ ଆରେ ଚାହିଁ
କହେ ହୃଦୟ ହସ୍ତ ଦେଇ
ଦେଖ ଗୋ କଂସର ଅନ୍ୟାୟେ
କି ଦୋଷ କଲେ ବାଳ ପୋଏ
ଏ ଲୁଚିଥିଲେ ନନ୍ଦଘରେ
ସୋଦର ମଉଳାର ଡରେ
ଦୁଷ୍ଟ ଦାନବ ଦୁରାଚାର
କି ଦୋଷ କଲେ ଏ ତାହାର
ଏହାଙ୍କୁ ଆଣିଅଛି ଧରି
ନେଇ ମାରିବ ଘରେ ଭରି
କେମନ୍ତେ ସହିବଟି ଧର୍ମ
ଏହାଙ୍କୁ କରି ଏତେ କର୍ମ
ଏ ପୁଏ ଗୋପପୁରେ ଥିଲେ
କି ଅପରାଧ ତାର କଲେ
ଏହାଙ୍କ କରି ପ୍ରାଣନାଶ
ଭାଙ୍ଗିବ ଗୋପପୁର ଦେଶ

ଏହାଙ୍କ କଷ୍ଟ ଦେଖିବାରେ
ଭଲ, ନ ଥିବା ଏ ନଗରେ
ହୃଦୟ ଧରିବା କେମନ୍ତେ
ଏହାଙ୍କୁ ନ ଦେଖିଲେ ପଥେ
ଏମନ୍ତେ କହି ନରନାରୀ
ବିକଳେ ଚାହାନ୍ତି ମୁରାରି
ହୃଦରେ ବହୁଇ ବିକଳ
ନୟନୁଁ ବହେ ଅଶ୍ରୁଜଳ । ୧
ଗୋପେ ଗୋବିନ୍ଦ ହଳଧର
ମିଳିଲେ କଂସ ରଙ୍ଗଦ୍ୱାର
ଦେଖିଲେ ଦ୍ୱାରେ ଅଛି ଗଜ
ମାହୁନ୍ତ ହୋଇଅଛି ସଜ
କୃଷ୍ଣଙ୍କୁ ଦେଖିଣ ମାହୁନ୍ତ
ଆକର୍ଷି ଗଜ ବଳବନ୍ତ
ଦ୍ୱାର ଆବୋରିଲେ ବହନ
ମାରିବା ପ୍ରାୟେ କୋପମନ । ୨
ସ୍ୱଭାବେ ମତ୍ତ କରିବର
ତେଜ ପ୍ରଚଣ୍ଡ ଗୁରୁତର
ତାହା ଜାଣିଲେ ଭବଗ୍ରାହୀ
ଗୋପାଳପୁଅଙ୍କୁ ବୁଝାଇ
ଦୃଢ଼େ ବାନ୍ଧିଲେ ତାଙ୍କୁ ଚୂଳ
ସୁନ୍ଦର ଅଳକା କପୋଳ
ବସନ ବାନ୍ଧି ଆଣ୍ଠୁ କରି
ସଜ ହୋଇଲେ ହଳଧାରୀ
ମାହୁନ୍ତ କୋପଭର ହୋଇ
ଅଳପେ ଅଳପେ ଟିପଇ
ଦେଖି ଗୋବିନ୍ଦ ଆଗ ହୋଇ
ବୋଲନ୍ତି ଆଡ଼ ହୁଅ ଯାଇ । ୩
ଶୁଣ ମାହୁନ୍ତ ମୋ ଉତ୍ତର
ଆମ୍ଭଙ୍କୁ ଛାଡ଼ ରଙ୍ଗଦ୍ୱାର

ରାଜା ଆମ୍ଭଙ୍କୁ କୋପମନ
ବେଗେ କରିବା ଦରଶନ
ଦ୍ୱାର ତୁ ଛାଡ଼ ବେଗ ହୋଇ
ଉତ୍ତର ବେଳ ନ ଯୋଗାଇ
ଶୁଣି ମାହୁନ୍ତ କୋପ କଲା
କୃଷ୍ଣର ବୋଲ ନ ଶୁଣିଲା
ହସ୍ତୀର କୁମ୍ଭେ ଦେଇ କର
ଦନ୍ତ କରାଇଲା ଉଭାର
କୃଷ୍ଣ ବୋଇଲେ ମାହୁନ୍ତକୁ
ମାରିବା ପ୍ରାୟେ ତ ସଳଖୁ
ଜୀବନେ ଅଛୁ ଯେବେ କାର୍ଯ୍ୟ
ହସ୍ତୀ ତୁ ଦ୍ୱାରୁ ନିଅ ଆଜ
ନୋହିଲେ ଯିବୁ ଯମପୁର
ହସ୍ତୀଙ୍କି ସଙ୍ଗତେ ତୋହର । ୪
ଶୁଣି ମାହୁନ୍ତ ପରଜଳ
ହସ୍ତୀ ଚିପିଲା ପାଦ ରୁଳ
କୃଷ୍ଣଙ୍କୁ ଦେଖି ଗଜ ରୁଷ୍ଟି
କାଳଦେବତା ପ୍ରାୟେ ହୋଇ
ପବନୁଁ ବେଗେ ଧାଇଁ ଖରେ
ଶୁଣ୍ଢ ପିଟିଲା କୃଷ୍ଣଶିରେ
କେଶ ଧଇଲା ଧାଡିକାରେ
ଛଡ଼ାଇ ଗଲେ ଦାମୋଦର
ଗୋବିନ୍ଦ ମାୟାଯୋଗ ବଳେ
ଲୁଚିଲେ ହସ୍ତୀ ପେଟତଳେ
ହସ୍ତୀ ରୁହିଁଇ ଚଉଦିଗେ
କୋପେ ଗର୍ଜ୍ଜଇ ଘୋର ନାଦେ
ଆଘ୍ରାଣେ କୃଷ୍ଣ-ବାସ ପାଇ
ପୁଣି ମାଇଲା ଶୁଣ୍ଢ ନେଇ
ପୁଣ ଛଡ଼ାଇ ତାର କର
ପଛେ ମିଳିଲେ ମାୟାଧର

ହସ୍ତୀର ଲାଞ୍ଜ କରେ ଧରି
ପଛକୁ ଆଣିଲେ ଓଟାରି
ପଚଶ ଧନୁ ଯାଏ ଟାଣି
ରହିଲେ ପ୍ରଭୁ ଚକ୍ରପାଣି
ସର୍ପର ଲାଞ୍ଜତୁଣ୍ଡେ ଭରି
ଗରୁଡ ଯେସନେ ଓଟାରି । ୮
ଲାଙ୍ଗୁଡ଼ ଧରି ବନମାଳୀ
ବାମଦକ୍ଷିଣ ପାଖେ ରୁଳ
ଗଜ ରୁହିଁଇ ଚଉପାଶେ
କୃଷ୍ଣଙ୍କୁ ଧରିବାର ଆଶେ
ବତ୍ସାଙ୍କ ଲାଞ୍ଜ ପୋଏ ଧରି
ଯେମନ୍ତେ ହୋନ୍ତି ଘୂରିଘୂରି । ୯
ଲାଙ୍ଗୁଡ଼ ଛାଡ଼ି ଅତି ଖରେ
ଆଗ ହୋଇଲେ ରୋଷଭରେ
ରୁପୁଡ଼ା ମାରି ହସ୍ତୀମୁଣ୍ଡେ
କୃଷ୍ଣ ପଳାନ୍ତି ଦାଣ୍ଡେ ଦାଣ୍ଡେ
ଦେଖି ଧାଇଁଲା କରିବର
ପ୍ରଚଣ୍ଡ କୋପ ଗୁରୁତର
ଦେଖନ୍ତି ପୁରନରନାରୀ
ଭୟେ ପଳାନ୍ତି ନରହରି
ଶିରେ ଲଗାଇ ଥୋଇ ହସ୍ତ
ଲୋକେ ଦେଖନ୍ତି ରାଜପଥ
ପାଦ ଲାଗନ୍ତେ ଧୂଳି ଉଡ଼େ
କୃଷ୍ଣ ପଡ଼ିଲେ ମୁଖ ମାଡ଼ି
ତକ୍ଷଣେ ହୋଇଲେ ଅନ୍ତର
ମାହୁନ୍ତ ବୋଲେ ମାର ମାର
କୃଷ୍ଣ ପଡ଼ିଲା ପ୍ରାୟେ ମଣି
ଗଜ ମାଇଲା ଦନ୍ତ ଆଣି
ଲୋକେ ହୋଇଲେ ହତଜ୍ଞାନ
ଡାକନ୍ତି ରଖ ନାରାୟଣ

ଏତେକ କର୍ମ କଂସ କଲା
କେ ବୋଲେ ଖାଉଁ ଖାଉଁ ମଲା
ଶୂଳ ନ ଥିବା ଏହା ଦେଶେ
କଂସକୁ ଗାଳି ଦିଅନ୍ତି ରୋଷେ
ଏମନ୍ତ ବୋଲୁଁ ବୋଲୁଁ ଜନେ
ଗୋବିନ୍ଦ ମିଳିଲେ ବହନେ
ନୀଳ ଜୀମୂତ ଦେହ ଝଳି
ଝାଳ ଗଳଇ ଲାଗି ଧୂଳି
ଡାକନ୍ତି ତୋଳି ବେନି କର
ହସ୍ତୀରେ ସମ୍ଭାଳ ଚୋହର
ଦେଖି ଚକିତ ନରନାରୀ
ଶୁପୁଡ଼େ ମାଇଲେ ମୁରାରି
ପଛେ ଯେ ଥିଲେ ହଳଧର
ହସ୍ତୀକି ମାଇଲେ ପଯୂର
ଧାମଇଁ ପଛକୁ ଅନାଇ
ପୁଣ ମାଇଲେ କୃଷ୍ଣ ନେଇ
ଗଜ ଅନାଇ ଆଗ ପଛେ
ମାହୁନ୍ତ ଟିପଇ ପ୍ରତ୍ୟକ୍ଷେ
ନ ଯାଇ ଆଗପଛ ଡରେ
ଗର୍ଜ୍ଜଇ ଅତି କୋପଭରେ
ମାହୁନ୍ତ ପୁଣିହିଁ ଟିପଇ
ଦେଖି ପଳାନ୍ତି ବେନି ଭାଇ
ଦେଖିଣ ଗଜ କୋପଭରେ
ଧାଇଁଲା ପବନହୁଁ ଖରେ
କୃଷ୍ଣର ମୁଣ୍ଡେ ଦେଲା କର
ବେଗେ ଧାଇଁଲେ ଚକ୍ରଧର
ଗୋବିନ୍ଦ ଯୋଗମାୟା ବଳେ
ବୁଲଇ ପକାଇଲେ ତଳେ
ତଳେ ପଡ଼ନ୍ତେ ପ୍ରାଣ ଗଲା
ତକ୍ଷଣେ ଗୋବିନ୍ଦେ ପଶିଲା । ୧୦-୧୩

ଚରଣ ଦେଇ ଗଜମୁଣ୍ଡେ
ଦନ୍ତ ଧଇଲେ ଭୁଜଦଣ୍ଡେ
ବେଗେ ଉପାଡ଼ି ବାମ କରେ
ପିଟିଲେ ମାହୁନ୍ତ ଉପରେ
ରାମ-ଗୋବିନ୍ଦ ବେନି ଭାଇ
କନ୍ଧେ ଘେନିଲେ ଦନ୍ତ ଦୁଇ
ରୁଧିରେ ଭୂଷଣ ଶରୀର
ଧୂଳିରେ ଝାଳ ଜର ଜର
ମୁଖପଙ୍କଜେ ଝାଳ ଶୋଭା
କି ଅବା ପଦ୍ମାନ୍ତର ଦେବା
ଗୋପକୁମରେ ଛନ୍ତି ବେଢ଼ି
ପଶିଲେ ରଙ୍ଗଦ୍ୱାର ମାଡ଼ି । ୧୪-୧୭
କନ୍ଧେ ପକାଇ ଗଜଦନ୍ତ
ମିଳିଲେ ରାମ ଗୋପୀନାଥ
ଲୋକେ ପଶିଲେ ବଳାସ୍ଥାରେ
କେ ବେଗେ ଉଠିଲେ ବୃକ୍ଷରେ
ଜଗତ୍ତ୍ର ଅଟ୍ଟାଳ ଆରୋହି
ଦେଖନ୍ତି ରାମ କୃଷ୍ଣ ଦୁଇ
ରଙ୍ଗ ସଭାରେ ଯେତେ ଲୋକେ
କେତେ କହିବା ଏକେ ଏକେ
ମାଲେ ଯେ ଥିଲେ ମଞ୍ଚାତଳେ
ରାମ କୃଷ୍ଣଙ୍କୁ ଅନାଇଲେ
ବଜ୍ର ପଡ଼ିଲା ପ୍ରାୟେ ଦେଖି
ଭୟେ ବୁଜିଲେ ବେନି ଆଖି
ଯେତେ ଅଛନ୍ତି ପୁରନର
ତାହାଙ୍କୁ ଦିଶନ୍ତି ସୁନ୍ଦର
କାମିନୀ ଲୋଚନେ ଅନଙ୍ଗ
ଗୋପାଳ ଜନଙ୍କୁ ବାନ୍ଧବ
ଅସୁର ନୃପତିଙ୍କୁ କାଳ
ମାତା ପିତାଙ୍କୁ ବେନି ବାଳ

କଂସକୁ ଦିଶେ ଯମ ପରି
ଅଜ୍ଞାନୀ ଦେଖେ ଭୟ କରି
ଯୋଗିଙ୍କ ନେତ୍ରେ ଜ୍ଞାନତତ୍ତ୍ୱ
ବୃଷ୍ଣି ବଂଶକୁ ଦୈବତ । ୧୭-୧୮
ସଖାର ଛଳେ ବେନି ଭାଇ
ଆକାଶେ ଦେବେ ଛନ୍ତି ରହି
ବ୍ରହ୍ମା ଶଙ୍କର ଇନ୍ଦ୍ର ମୁଖେ
ତେତିଶ କୋଟି ଦେବତାଏ
ଶୂନ୍ୟେ ଦେଖନ୍ତି ରାମ ହରି
ଗନ୍ଧର୍ବଗଣେ ଦେବନାରୀ
କଂସ ଚାହିଁଲା ବେନି ଭାଇ
ଭୟେ କମ୍ପଇ ତାର ଦେହ
ଗଜ ମାହୁନ୍ତେ ଦ୍ୱାରେ ମାରି
ଦନ୍ତ ଅଛନ୍ତି କରେ ଧରି
ନିଶ୍ଚୟ ମରଣ ହୋଇଲା
ଏମନ୍ତ ମନେ ବିଚାରିଲା
କମ୍ପଇ ଚୌତରେ ଶରୀର
ବଦନୁଁ ନ ସ୍ଫୁରେ ଉତ୍ତର
ରଙ୍ଗସଭାର ତଳେ ଥାଇ
ରାମ ଗୋବିନ୍ଦ ଡବେନି ଭାଇ
ନାନା ବିଚିତ୍ର ବେଶ ହୋଇ
ଯେସନେ ନଟବର ଦୁଇ
ଦେଖନ୍ତା ପ୍ରାଣିଙ୍କର ମନ
ମୋହିଲେ ରାମ ଭଗବାନ
ମଞ୍ଚାରେ ଯେତେ ରାଜାଗଣେ
ଗ୍ରାମପାଟଣା ପୁରଜନେ
ହରିର ଦେହେ ଚକ୍ଷୁ ଦେଇ
ଦେଖନ୍ତି ରାମକୃଷ୍ଣ ଦୁଇ
ଚକୋର ଚନ୍ଦ୍ର ଦେଖି ଯେହ୍ନେ
ତେସନେ ପିବନ୍ତି ଲୋଚନେ

ତୋଷ ନୋହିଲେ ମୁଖ ଚାହିଁ
ଚାହାନ୍ତେ ପିଞ୍ଛା ନ ଚଳଇ
ପିଇବା ପ୍ରାୟ ଚକ୍ଷୁଦ୍ୱାରେ
ଜିହ୍ୱା କି ଲିହିବ ଶରୀରେ
ଆଘ୍ରାଣ କରି ନାସାଦ୍ୱାରେ
ଆଣି ଭିଡ଼ିବେ ବେନି କରେ
ଏମନ୍ତ ହୋଇ ଉଦବେଗ
ଅଗ୍ନିକି ଯେସନେ ପତଙ୍ଗ
ଯେମନ୍ତ ଶୁଣୁଥିଲେ କର୍ଣ୍ଣେ
ପ୍ରତ୍ୟକ୍ଷ ଦେଖିଲେ ନୟନେ
କୃଷ୍ଣର ରୂପ ଗୁଣମାନ
ଦେଖି ପାଇଲେ ଦିବ୍ୟଜ୍ଞାନ
ଏକକୁ ଆରକେ ଅନାଇଁ
ବୋଲନ୍ତି ଅଙ୍ଗୁଳି ଦେଖାଇ। ୧୯,୨୨
ଏ ବେନି ବସୁଦେବ ସୁତ
ଭାର ନିବାରିବା ନିମନ୍ତେ
ବିଷ୍ଣୁର ଅଂଶେ ଜାତ ହୋଇ
ନୀଳ ଧବଳ ବେନି ଭାଇ
ଦେଖ ଏ କୃଷ୍ଣଦେହ କଳା
ଦେବକୀଗର୍ଭେ ଉପୁଜିଲା
ଏହାକୁ ବସୁଦେବ ନେଇ
ଗୋପରେ ଅଇଲା ଲୁଚାଇ
ଗୁପତେ ଥାଇ ଏତେ ଦିନ
ବଢ଼ିଲେ ନନ୍ଦର ଭୁବନ
ଏହି ବାଳକ ତିନଦିନ
ଶୋଷିଲେ ପୂତନାର ପ୍ରାଣ
ପାଦେ ଶକଟା କଲେ ଚୂର
ନାଶିଲେ ତୃଣାବର୍ତ୍ତ ବୀର
ଅଘା ଧେନୁକା କେଶୀ ବକ
ବତ୍ସା ମାୟାବୀ ଷଣ୍ଢ ରୂପ

କାଳୀୟ ଘଉଡ଼ିଲା ବଳେ
ଅମୃତ କଲା ବିଷଜଳେ
ଗୋରୁ ମହିଷି ଗୋପଶିଶୁ
ବନଅନଳୁ ଅଛୁ ତାରି
ଇନ୍ଦ୍ରର ଦର୍ପ କଲା ଚୂର
କରେ ତୋଳିଲା ଗିରିବର
ସପତ ଦିନ ବରଷିଲା
ଏହାର କରେ ଗିରି ଥିଲା
ଗୋପୀଏ ଚାହିଁ ଏହା ମୁଖ
ଖଣ୍ଡିଲେ ଜନ୍ମବନ୍ଧ ଦୁଃଖ
ଯାଦବବଂଶ ଏ ରଖିବ
ଅବନୀଭାର ଉଶ୍ୱାସିବ
ଦେଖ ଏ ରୋହିଣୀ କୁମର
କୋଟି କନ୍ଦର୍ପ ପଟାନ୍ତର
ଆଗେ ହୋଇଲା ଗୋପେ ଜାତ
ଏହାର ବଳ ଅପ୍ରମିତ
ପ୍ରଲମ୍ବା ଯୁଦ୍ଧେ ନାଶ କଲା
ବତ୍ସା ଧେନୁକା ସଂହାରିଲା । ୨୩-୩୧
ଏମନ୍ତ କହୁଁ କହୁଁ ଜନେ
ବାଜନ୍ତି ବୀରତୂରମାନେ
ମାଲେ ଯେ ଥିଲେ ସଭାତଳେ
କୃଷ୍ଣର ନିକଟେ ମିଳିଲେ
ଚାଣୁର ବୀର ଆଗ ହୋଇ
ବୋଲଇ କୃଷ୍ଣ ମୁଖଚାହିଁ
ତୁ ପରା ଥିଲୁ ନନ୍ଦଘରେ
ରୋହିଣୀ ତନୟ ସଙ୍ଗରେ
ତୁମ୍ଭେ ଯେ ରାମ ବନମାଳୀ
ବୋଲାଅ ବାହୁଯୁଦ୍ଧେ ବଳୀ
ରାଜା ତୁମ୍ଭର କଥା ଶୁଣି
ଯୁଦ୍ଧର ପାଇଁ ଅଛୁ ଆଣି

ଦେଖିବ ଯୁଦ୍ଧ କଉତୁକ
ରାଜାଏ ଅଛନ୍ତି ଅନେକ
ପ୍ରଜାଏ ରାଜାଙ୍କୁ ଅନାଇଁ
ଭୋଗ କରନ୍ତି ସୁଖେ ମହୀ
ବସନ୍ତି ରାଜାର ସମୀପେ
ଧନ୍ୟ ବୋଲନ୍ତି ଇହ ଲୋକେ
ରାଜାର ନୁହନ୍ତି ଯେ ପ୍ରିୟ
ତାହାର ସୁଖ କାହିଁ କହ ?
ତୁମ୍ଭେ ଯେ ଗୋପାଳଙ୍କ ମେଳେ
ଗୋରୁ ଚରାଅ ନଦୀକୂଳେ
ଦେହରେ ଘଷି ରଙ୍ଗମାଟି
ଲଲାଟେ ଗୁଞ୍ଜାରାର ପାଟି
ଏକ ଆରକେ ବାହୁବଳେ
ମାଲ ହିନ୍ଦାଣ କୁତୂହଳେ
ବାଳକ କାଳହୁଁ ସାଧୁଛ
ଏବେତ ପ୍ରତ୍ୟକ୍ଷ ଦିଶୁଛ
ତେଣୁ ତୁମର ତୁଲେ ଆମ୍ଭେ
ରାଜା ନିତୋଷିବା ରଣରଙ୍ଗେ
ଯେଉଁଠି ଅଛନ୍ତି ରାଜାଗଣେ
ଗ୍ରାମ-ପାଟଣା-ପୁରଜନେ
ସକଳେ ହୋଇବେ ପ୍ରସନ୍ନ
ତୋଷିବା କଂସରାଜା ମନ । ୩୨-୩୬
ମାଲଙ୍କ ହିଂସା ବୋଲ ଶୁଣି
କହନ୍ତି ପ୍ରଭୁ ଚକ୍ରପାଣି
ଉଚିତ ବାଣୀ ଦେଶ କାଳ
କହନ୍ତି ମଦନ ଗୋପାଳ
ଯୁଦ୍ଧହିଁ ଇଚ୍ଛା ଆପଣାର
କହିନ୍ତି ମନୁଷ୍ୟ କେଭର
ଶୁଣ ଚାଣୁର ବୀରମଣି
ଉଚିତ ପ୍ରସ୍ତାବ ତୋ ବାଣୀ

ସ୍ୱଭାବେ ଆମ୍ଭେ ବଣ ଲୋକ
ନ ଜାଣୁ ଆମ୍ଭେ ଦୁଃଖ ସୁଖ
ଧନଗୋରସ ଦେଇ ଖଟୁ
ରାଜାଭଣଜା ଆମ୍ଭେ ଅଟୁ
ଅଳପ କରଇ ସଦୟ
ମୋର ମଉଳା କଂସରାୟ
ବାଳୁତ ପୁଅଙ୍କର ମେଳେ
ଖେଳୁଁ କାନନ ନଦୀକୂଳେ
ନାନା ଭିଆଣେ ଖେଳ କରି
ବନସ୍ତେ ଚରାଉଁ ବାଛୁରି
ପୁଅଙ୍କ ଖେଳର ଉଚିତ
ଆମ୍ଭର ଯୁଦ୍ଧ ସେହିମତ
ଏତ ନୁହଇ ଖେଳମୟେ
ତୁମ୍ଭେତ ପର୍ବତ ପରାୟେ
ତୁମ୍ଭର ପ୍ରାୟ ଯେବେ ହୋଇ
ତେବେ ସେ ସଂଗ୍ରାମ ଯୋଗାଇ
ବାଳକେ ଆମ୍ଭେ ବାଳମେଳେ
ଯୁଝିବୁ ରଙ୍ଗ କୁତୁହଳେ
ତୁମ୍ଭର ତୁଲେ ଯୁଦ୍ଧ କାହିଁ ?
ଏ କଥା ଉଚିତ ନୁହଇ
ଅଧର୍ମ ହୋଇବଟି ଭଲେ
ତୁମ୍ଭେ ଯୁଝିଲେ ଆମ୍ଭ ତୁଲେ
ସଭାକୁ କରିବେ ଧିକ୍କାର
ତା ଶୁଣି ହସଇ ଚାଣୁର
ବୋଲଇ ପରୁଷ ବଚନ
କରାଇ କଂସ ସାବଧାନ
ତୁମ୍ଭେ ଯେ ବାଳକ ବୋଲାଅ
କହିଲେ ଲଜ୍ଜାହିଁ ନ ପାଅ
ବାଳ କୁମାର ନୁହ ଯୁବା
ତୁମ୍ଭର ମହିମା କହିବା
ଏ ଯେ ତୋହର ଜ୍ୟେଷ୍ଠ ରାମ
ବଳେତ ନାହିଁ ସରିସମ
ସହସ୍ରେ ମତ୍ତଗଜଦେହା
ବଳ ବହଇ କୁବଳୟା
ତାହାକୁ ଲୀଳାଏ ମାରିଲ
କ୍ଷଣକେ ଦନ୍ତ ଉପାଡ଼ିଲ
ରଜକ ଶିର ଛେଦ କରି
ଧନୁ ଭାଙ୍ଗିଲ ବାମକରି
ତୁମ୍ଭ ମହିମା ସର୍ବଜନେ
ଭଲେ ଜାଣନ୍ତି ତ୍ରିଭୁବନେ
ଏମନ୍ତ ନ କହନା ଆର
ମୁଷ୍ଟିକ ବୋଇଲାରେ ଧର
ଅଧର କାମୋଡ଼ି ଚାଣୁର
ବୋଇଲା ରାମକୁ ତୁ ଧର
କୃଷ୍ଣର ସଙ୍ଗେ ଯୁଦ୍ଧ ମୋର
ଏ ଯେ ବୋଲଇ ବଳୀୟାର
ମୁଷ୍ଟିକ ରାମ ଆଗେ ରହି
କୋପେ ଅଧର କାମୋଡ଼ଇ ।୩୭-୪୧
କହଇ ବିପ୍ର ଜଗନ୍ନାଥ
ଚାଣୁର ଧରି ଗୋପୀନାଥ
ମୁଷ୍ଟିକ ରାମଙ୍କୁ ଧରିଲା
ସେଠାରେ ମନ ମୋ ରହିଲା
ଦେଖିବ ଗୋବିନ୍ଦର ରଣ
ସୁଜନେ ପଶିବା ଶରଣ
ବାଳକ ସଙ୍ଗେ ଯୁଦ୍ଧ କରି
ଦେଖନ୍ତି ପୁର ନରନାରୀ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରଙ୍ଗସଭା ବିଜୟେ
କୁବଳୟାପୀଡ଼ବଧୋ ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ॥ ୪୬ ।

# ସପ୍ତଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୪୩ଶ ଅଧ୍ୟାୟ )

ଚତୁଃଚତ୍ୱାରିଂଶକେ ତୁ ମଲ୍ଲକଂସାଦିମର୍ଦ୍ଦନଂ
କଂସଯୋଷିତ୍‌ସମାଶ୍ୱାସ-ସ୍ତାଭ୍ୟାଂପିତ୍ରୋଶ୍ଚ ଦର୍ଶନଂ । ୦ ।

ମଲ୍ଲଯୁଦ୍ଧ ଯେ କଂସବଧ । ସପ୍ତଚ୍ଚଳଶେ ଏ ସମ୍ବାଦ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ରାଜନ ବୀରରସ
କଂସ ଯେ ହୋଇଲା ହରଷ
ରାମ-ମୁଷ୍ଟିକେ ମରାମରି
ଚାଣୁର ସଙ୍ଗେ ନରହରି
ହସ୍ତ ଚରଣ ଛନ୍ଦାଛନ୍ଦ
ଗଜକୁ ଗଜ ଯେସନେ ବନ୍ଧ
ଏକ ଆରକେ ବଳୀୟାର
ରାମଙ୍କୁ କରେ ସେ ପ୍ରହାର
ମୁଷ୍ଟିକ ମୁଷ୍ଟି ପରିଚାଳ
ଦେହୁଁ ଗଳଇ ଶ୍ରମଝାଳ
ଜାନୁକୁ ଜାନୁ ପରିବନ୍ଧ
କୋପେ କରନ୍ତି ବୀରନାଦ
ମୁଣ୍ଡକୁ ମୁଣ୍ଡ ମରାମରି
ହୃଦରେ ହୃଦ ଭିଡ଼ାଭିଡ଼ି
ଧରି ଘୂରାଇ ପୁଣ ଗୁଡ଼ି
ପୁଣ ବସନ୍ତି ବେଗେ ମାଡ଼ି
ପୁଣି ଛଡ଼ାଇ ପଛଘୁଞ୍ଚି
ଧରନ୍ତି ବେଗେ ବଳ ଆଞ୍ଚି
ଏକ ଆରକେ ଧରି ବେଗେ
ଗର୍ଜି ପଡ଼ନ୍ତି ଭୂମିଭାଗେ
ପେଲି ପକାଇ ପୁଣି ଉଠି
ହୃଦେ ତାଡ଼ନ୍ତି ବଜ୍ର ମୁଷ୍ଟି
ପୁଣ ଧରନ୍ତି ପୁଣ ଗୁଡ଼ି
ମୁଣ୍ଡକୁ ମୁଣ୍ଡ କୋଡ଼ା କୋଡ଼ି
ରୁଧିର ବହେ ତନୁ ଫାଟି
ଦେହକୁ ଦେହ ପିଟାପିଟି
ପର୍ବତ ପ୍ରାୟେ ବେନି ମାଲେ
ଯୁଝନ୍ତି ରାମ କୃଷ୍ଣ ତୁଲେ । ୧-୫
ଦେଖି ବୋଲନ୍ତି ନରନାରୀ
ଅନ୍ୟାୟ କଲା ଦଣ୍ଡଧାରୀ
ବାଳକ ରାମ କୃଷ୍ଣ ଦୁଇ
ମାଲଙ୍କ ସଙ୍ଗତେ ଯୁଝାଇ
କେମନ୍ତେ ଦେଖୁଅଛୁ ଏହା
ହୃଦୟେ ନ ବସଇ ଦୟା
ମରାଇ ବାଳୁତ ପୁଅଙ୍କୁ
ଧର୍ମ କି ସମ୍ଭବ ଏହାଙ୍କୁ
ସଭାରେ ବସି ବଡ଼ ଲୋକେ
ଅଧର୍ମ କରୁଛନ୍ତି ଥୋକେ
ସକଳେ କଂସପ୍ରିୟକାରୀ
ଧର୍ମ ଅଧର୍ମ ନ ବିଚାରି
ଯୁଦ୍ଧେ କେ ଅବା ବଳୀୟାର
ଏହା ନ କରନ୍ତି ବିଚାର । ୬,୭

ପର୍ବତପ୍ରାୟ୍ ବେନ ମାଲ
ବଜ୍ରଶରୀର ଏହାଙ୍କର
ବାଳକ ପୁଅଙ୍କୁ ଅନାଅ
ଅତିହିଁ ସୁକୁମାର ଦେହ
ଏହି ସଭାରେ ଧର୍ମ ନାହିଁ
ଏଠାରେ ଥିବା ନ ଯୋଗାଇ । ୮,୯
ମୁନିଏ କହିଛନ୍ତି ପୂର୍ବେ
ବେଦ ପୁରାଣର ପ୍ରସ୍ତାବେ
ଅଧର୍ମ କୂଟସଭା ଯହିଁ
ପଣ୍ଡିତେ ନ ବସିବେ ତହିଁ
ସଭାର ଦୋଷ ଯେ ଜାଣନ୍ତି
ଦ୍ୱାରେ ପ୍ରବେଶ ନୁହନ୍ତି
ଜାଣି ନ ଜାଣି ପକ୍ଷ ବହି
ନରକେ ପଡ଼ନ୍ତି ସେ ଯାଇ । ୧୦
ଏମନ୍ତେ ରାମ କୃଷ୍ଣ ଭୁଲେ
ସମର କରୁଛନ୍ତି ମାଲେ
ଏକ ଆରକେ ଛିଦ୍ରଟାକି
ନିଶ୍ଚଳ କରୁଛନ୍ତି ଆଖି
ରାମ ଗୋବିନ୍ଦେ ନାରୀ ଗୁହିଁ
କହନ୍ତି ଅଙ୍ଗୁଳି ଦେଖାଇ
ଦେଖ ଏ କୃଷ୍ଣର ବଦନ
ଗଳୁଛି ଝାଳକଣାମାନ
ଫୁଟିଲା ପଦ୍ମକୋଷ କି ସେ
ଜଳ ସିଞ୍ଚିଲା ପ୍ରାୟ ଦିଶେ । ୧୧
ଦେଖ ଏ ରାମର ଲୋଚନ
ତାମ୍ବର ପ୍ରାୟେକ ବଦନ
ଲୁହାନ୍ତ ମୁଷ୍ଟିକ ବଦନ
ଅଳପହାସେ ଶୋଭମାନ । ୧୨
ଧନ୍ୟ ସେ ବ୍ରଜଭୂମି ଦେଶ
ପୁଣ୍ୟ ସେ କଲ୍ପ ଗୋ ଅଶେଷ

ମାୟାମନୁଷ୍ୟ ରୂପ ଧରି
ଯହିଁ ବୁଲନ୍ତି ରାମ ହରି
ଚିତ୍ର ବିଚିତ୍ର ବନମାଳେ
ଗୋପାଳ ପୁଅଙ୍କର ମେଳେ
ଗାଈ ଚରାଇ ବେଣୁସ୍ୱନେ
ପାଦେ ଚଳନ୍ତି ବନେ ବନେ
ଧ୍ୱଜ ଅଙ୍କୁଶ ଚିହ୍ନ ପାଦେ
ଶଙ୍କର ପୂଜନ୍ତି ଆନନ୍ଦେ । ୧୩
ନନ୍ଦର ବ୍ରଜେ ଗୋପନାରୀ
ଅନେକ ତପ ଛନ୍ତି କରି
ଅପୂର୍ବ ମୁଖ ଏହାଙ୍କର
ଦେଖି ତେଜିଲେ ଘର ଦ୍ୱାର
ପିବନ୍ତି ଚକ୍ଷୁଦ୍ୱାରେ ରୂପ
ଅଜ୍ଞାନୀଜନଙ୍କୁ ଦୁରାପ । ୧୪
ଦୋହନେ ମନ୍ଥନେ ରନ୍ଧନେ
ଲେପନେ ଦୋଳା ଅବଧାନେ
ଅଗଣା ପିଣ୍ଡା ଛେରା ଦେଇ
ଯେତେ ବେପାର ଗୃହେ ଥାଇ
ଏହାର ନାମ ଗାଇ ଭୁଣ୍ଡେ
ଗୋପୀଏ ହାଟ ରାଜଦାଣ୍ଡେ
ଏହାର ପାଦେ ଚିତ୍ତ ଦେଇ
ସୁସ୍ୱର କଣ୍ଠେ ଗୀତ ଗାଇ
ଧନ୍ୟ ତାହାଙ୍କର ଜୀବନ
କୃଷ୍ଣହୁଁ ନ ଜାଣନ୍ତି ଆନ । ୧୫
ଗୋରୁ ଚରାଇ ବୃନ୍ଦାବନେ
ଏ ଯେ ଆସନ୍ତି ରାତ୍ରମାନେ
ଯିବାର ବେଳେ ବେଣୁଗୀତ
ଶୁଣି ହୁଅନ୍ତି ମୁରୁଛିତ
ଘରୁ ବାହାର ହୋଇ ଦେଖି
ନିର୍ମଳ କରୁଥାନ୍ତି ଆଖି

**ଶ୍ରୀ ଶୁକ ଉବାଚ**

ଏମନ୍ତ ବୋଲନ୍ତି ବୋଲନ୍ତି ଜନେ
ଚୈତନ୍ୟ ବସିଲା କୃଷ୍ଣମନେ । ୧୬,୧୭
ମଞ୍ଚାରେ ବସି ପିତା ମାତ
ତାନ୍ତ୍ରକ ନିଗଡ଼ିରେ ହସ୍ତ
ପଦକ ଜଡ଼ିଅଛି ଏହା
ଆମ୍ଭରେ ନାହିଁ ତାର ଦୟା
ନନ୍ଦଙ୍କ ଘରେ ଲୁଚାଇଲୁ
ଏବେ କଂସର ମୁଖେ ଦେଲୁ
ବିଧାତା କରିଛି କଷଣ
ଦେଖିବୁ ପୁତ୍ରଙ୍କ ମରଣ
ଦେବକୀ ପୁତ୍ରମୁଖ ଚାହିଁ
ଲୋଚନ ନୟନ ଅଶ୍ରୁ ବହି
ହେଲା ମହା ଶୋକଜଳେ
ଅଛି ବସୁଦେବ କୋଳେ
ମନୁଷ୍ୟ ମଣି କଲେ ଭ୍ରାନ୍ତ
ପୁତ୍ରଙ୍କ ବଳ ନ ଜାଣନ୍ତ । ୧୮
ମାଲଙ୍କ ଭୁଜେ ବେନି ବାନେ
ଯୁଦ୍ଧ କରନ୍ତ କୋପାନଳେ
କୃଷ୍ଣର ମୁଷ୍ଟି ବଜ୍ରପ୍ରାୟେ
କମ୍ପଇ ଚାଣୁରର କାୟେ
ମୂର୍ଚ୍ଛିତ ହୋଇ ମହାବଳୀ
ମୁଖରୁ ରୁଧିର ନିକଳି
ପୁଣି ଉଠିଲା ଜ୍ଞାନ ପାଇ
ଧାଇଁଲା ମୁଥେକ ଉଞ୍ଚାଇ
କୃଷ୍ଣର ହୃଦରେ ପ୍ରହାରି
ଗର୍ଜଇ ମହାନାଦ କରି
ଚାଣୁର ମୁଷ୍ଟି ପଡ଼ି ହୃଦେ
ଗୋବିନ୍ଦ ନ ଘୂର୍ଣ୍ଣିଲେ ପାଦେ
ଫୁଲପେଣ୍ଡାଏ କରେ ଧରି
ଗଜଶରୀରେ ଯେସନ୍ତେ ମାରି
ଚାଣୁରକର କୃଷ୍ଣ ଧରି
ଘୂରାଇ ଅନ୍ତରୀକ୍ଷ କରି
ଭୂମିରେ ପଡ଼ିଲା ତକ୍ଷଣ
ଚାଣୁର ଗୁଡ଼ିଲା ଜୀବନ
ଇନ୍ଦ୍ରର ଧ୍ୱଜପ୍ରାୟ ପଡ଼ି
ଗୋବିନ୍ଦ କଲେ ଘୋର ରଡ଼ି
ଉଠିଲେ ଚାଣୁର ଉପରେ
ଅଳପ କେଶ ଧରିକରେ । ୧୯-୨୩
କୃଷ୍ଣଙ୍କୁ ଚାହିଁ ବଳରାମ
ଦେହେ ବସିଲା ଗରୁ ତମ
ବଜ୍ର ମୁଷ୍ଟିଏ ପ୍ରହାରିଲେ
ମୁଷ୍ଟିକ ମୁଣ୍ଡ ଚୁର କଲେ
ମୁଖରୁ ରୁଧିର ଗଳଇ
ପଡ଼ିଲା ମୃତପିଣ୍ଡ ହୋଇ
ପବନଘାତେ ମହାବୃକ୍ଷ
ଯେସନେ ପଡ଼ଇ ପ୍ରତ୍ୟକ୍ଷ । ୨୪,୨୫
ମାଲେକ କୂଟ ନାମେ ଥିଲା
ରାମର ନିକଟେ ମିଳିଲା
ବାମମୁଷ୍ଟିରେ ମୁଣ୍ଡ ଚିରି
ପଡ଼ିଲା କରି ନାଦ ଘୋରି
ଶଳ ତୋଶଳ ମାଲ ଦୁଇ
ମିଳିଲେ କୃଷ୍ଣପାଶେ ଯାଇ
ପାଦ ପ୍ରହାରନ୍ତେ ମୁରାରି
ମାଲେ ପଡ଼ିଲେ ନାଦ କରି
ଆଉ ଯେତେକ ମାଲେ ଥିଲେ
ରଣ ଉପେକ୍ଷି ପଳାଇଲେ । ୨୬-୨୮
ମାଲେ ପଳାନ୍ତେ ବେନିଭାଇ
ଡ଼ାକନ୍ତ ରହ ରହ ଭାଇ

ଗୋପକୁମରେ ଥିଲେ ସଙ୍ଗେ
ମିଳିଲେ ରାମକୃଷ୍ଣ ଆଗେ
ମାଲ ବନ୍ଧାଣ ଗୁରୁତର
ଭୂମି କମ୍ପଇ ଥରହର
କୃଷ୍ଣର ମାଲଯୁଦ୍ଧ ଦେଖି
ଅସୁରେ ଗ୍ରହାନ୍ତ ନରେଖି
କୃତାନ୍ତପ୍ରାୟ ରୂପ ଦେଖି
ଡରେ ବୁଜିଲେ ବେନି ଆଖି
କମ୍ପଇ କଂସର ଶରୀର
ଦେଖି ହରଷ ସୁର ନର
ବୋଲନ୍ତି କୃଷ୍ଣ ! ସାଧୁ ସାଧୁ
ଚିରିଲେ ମାଲଙ୍କ ପ୍ରମାଦୁ
କୃଷ୍ଣର ଚରଣେ ନୂପୁର
ରୁଲନ୍ତେ ବାଜଇ ସୁନ୍ଦର
ବାଜଇ ଘାଟତ୍ରିର ଧ୍ୱନି
ସ୍ତୁତି କରନ୍ତି ସୁରମୁନି । ୨୯-୩୦
ପଡ଼ିଅଛନ୍ତି ଚୂରି ମାଲେ
ସକଳେ ଭୟେ ପଳାଇଲେ
ଦେଖିଣ ଉଗ୍ରସେନବଳା
ବାଦ୍ୟଶବଦ ରୁହାଇଲା
କୋପେ ବୋଲଇ ଶିର ଝୁଣି
କରେ ଖଡ଼ଗ ଅଛି ଘେନି
ବସୁଦେବର ପୁତ୍ର ଦୁଇ
ରାଜ୍ୟ ବାହାରେ ଥୁଅ ନେଇ
ନନ୍ଦସମ୍ପଦ ଗୋପପୁର
ବହନ କର ଯାଇ ଜୁର
ନନ୍ଦ ବସୁଦେବକୁ ନିଅ
ଶିର ଛେଦାଇ ଶୂଳ ଦିଅ
ଦେବକୀ ଉଗ୍ରସେନ ମୂଳେ
ଯେତେହେଁ ବସିଥିବେ ଶୂଳେ

ରାମ କୃଷ୍ଣଙ୍କୁ ଧରି ନିଅ
ତାହାଙ୍କ ମରଣ ଦେଖାଅ
ଶିର ଛେଦିବ ଏହାଙ୍କରି
ତେବେ ସେ ଶତ୍ରୁ ଯିବ ମୋର
ଯେତେ ଗୋପାଳ ପୁଅ ସଙ୍ଗେ
ହାଣିପକାଅ ଯାଇ ବେଗେ । ୩୧-୩୩
ଏମନ୍ତ କଂସମୁଖୁଁ ଶୁଣି
କୋପେ ରୁହିଁଲେ ଚକ୍ରପାଣି
କଂସର ମଞ୍ଚାରେ ଉଠିଲେ
ସ୍ୱର୍ଗେ ଯେ ଦେବଗଣ ଥିଲେ
ଦେଖି କରନ୍ତି ଜୟ ଜୟ
ଅବଶ୍ୟ ହୋଇଲା ନିର୍ଭୟ
କୃଷ୍ଣଙ୍କୁ ଦେଖି କଂସ ଉଠି
ଖଡ଼ଗ କଲା ଦୃଢମୁଷ୍ଟି
ଉଞ୍ଚାଇ ଗୋବିନ୍ଦ ଉପରେ
ଡେଇଁ ପଡ଼ନ୍ତେ ରୋଷଭରେ
ଛଞ୍ଚାଣ ପ୍ରାୟେ ଧାଡିକାରେ
କେଶ ଧଇଲେ ପ୍ରଭୁ କରେ
ଅସୁର ନ ପାରିଲା ଚଳି
କୃଷ୍ଣଙ୍କୁ ରୁହିଁଲା ନରେଳ
ଚକ୍ଷୁର ବାଟେ ପ୍ରାଣ ଗଲା
କୃଷ୍ଣର ଶରୀରେ ପଶିଲା
ନାଗ ଆବୋରି ଖଗପତି
ତେସନ ଗୋବିନ୍ଦର ଗତି
ଚନ୍ଦ୍ରମୁକୁଟ କଂସଶିରେ
କୃଷ୍ଣ ଝିଙ୍କିଲେ ରୋଷଭରେ
କଂସକୁ ଧରି ବାମକରେ
ଗୋବିନ୍ଦ ମଞ୍ଚରୁ ଉପରେ
ଜଗତସ୍ୱାମୀ ଯୋଗବଳେ
ପଡ଼ିଲେ ରଙ୍ଗସଭା ତଳେ

କଂସଉପରେ ଦାମୋଦର
ମେଦିନୀ ଦିଶଇ ସୁନ୍ଦର
ଯେତେ ଅସୁରରାଜା ଥିଲେ
କୃଷ୍ଣଙ୍କୁ ଦେଖି ପଳାଇଲେ
ସମସ୍ତ ଲୋକେ ଛନ୍ତି ଚାହିଁ
ବିକ୍ରମ ସିଂହ ପ୍ରାୟ ହୋଇ
କଂସର କେଶ ଧରି କରେ
କୃଷ୍ଣ ଝିଙ୍କିଲେ ରୋଷଭରେ
ରଙ୍ଗସଭାର ତଳେ ଯାଇ
ମୃତପିଣ୍ଡକୁ ଘୋଷାଡ଼ାଇ
ଉତ୍ତାନକରି ପଳାଇଲେ
ଗୋପବାଳକେ ଡେଇଁଗଲେ
ଲୋକେ କରନ୍ତି ହାହାକାର
କେ ବୋଲେ ପଡ଼ିଲା ଅସୁର
ଦେଖି ସାନନ୍ଦ ପୁରଜନ
ମଥୁରା ସ୍ତ୍ରୀଗଣଙ୍କର ମନ
ଆକାଶୁ କୁସୁମ ବରଷି
ନିର୍ମଳ ଦଶଦିଗ ଦିଶି
ପବନ ବହଇ ଶୀତଳ
ନିର୍ଭୟେ ଜଳଇ ଅନଳ
ଆକାଶ ଦିଶଇ ସୁନ୍ଦର
ଖଣ୍ଡିଲା ଅବନୀର ଭାର
ଜୟ ଶବଦ ଶୂନ୍ୟ ପୂରି
ନୃତ୍ୟ କରନ୍ତି ଅପସରୀ
ଗୀତ ବିନୋଦେ ବିଦ୍ୟାଧର
ଦୁନ୍ଦୁଭି ବାଜଇ ସୁସ୍ୱର
ତଇବେ କଂସ ଅନ୍ତରତେ
କୃଷ୍ଣଙ୍କୁ ଭୟ କରି ଚିତ୍ତେ
ଜଳ ପିଅନ୍ତେ କଂସ ଦେଖି
ଭୋଜନ କରନ୍ତେ ଡରଇ
ଭୟେ ନ ସ୍ଫୁରଇ ବଚନ
ନିଦ୍ରା ନ ମାଡ଼ଇ ନୟନ
ଯାହାକୁ ଡରୁଥାଇ ନିତ୍ୟେ
ପ୍ରତ୍ୟକ୍ଷେ ଦେଖିଲା ଅଗ୍ରତେ
ଦେହେ ପଶିଲା କଂସରାୟ
ଖଣ୍ଡିଲା ଜନ୍ମ ମୃତ୍ୟୁଭୟ
ନିର୍ମଳ ଯୋଗିଙ୍କ ଦୁର୍ଲ୍ଲଭ
କଂସକୁ ହୋଇଲେ ସୁଲଭ
କଂସର ଅଷ୍ଟଭ୍ରାତ ଥିଲେ
ମିଳିଲେ ରାମକୃଷ୍ଣ ଭୁଲେ
କଙ୍କ ନ୍ୟଗ୍ରୋଧ-ଆଦିକରି
ଧାଇଁଲେ ଖଡ଼ଗ ଉଭାରି
ଭାଇ ମରଣେ କ୍ରୋଧ ପାଇ
ବେଢିଲେ ଗୋବିନ୍ଦଙ୍କୁ ଯାଇ
ଦେଖି ଧାଇଁଲେ ହଳଧର
ବୁଲାଇ ଲୌହର ମୁଦ୍‌ଗର
ସିଂହ ଯେସନେ ହସ୍ତୀଯୁଥେ
ପିଟିଲେ ଅତି ବଳବନ୍ତେ
ପଡ଼ିଲେ ଅଷ୍ଟ ମହାବୀର
ମୁଖରୁ ଗଳଇ ରୁଧିର
ଦେଖି ସାନନ୍ଦ ଦେବଗଣ
ବଳଦେବଙ୍କ ବୀରପଣ
ପୁଷ୍ପ ବରଷି ସ୍ତୁତି କରି
ଜୟ ଶବଦ ନରନାରୀ । ୩୮–୪୨
କଂସର ଅଷ୍ଟଭ୍ରାତମୂଳେ
ଯେତେ କାମିନୀ ପୁରେ ଥିଲେ
ବାହାର ହୋଇଲେ ବିକଳେ
କାନ୍ଦନ୍ତି ସ୍ୱାମୀ ଧରି କୋଳେ
ମୁଣ୍ଡେ ହୃଦୟେ କରତାଡ଼ି
ପଡ଼ନ୍ତି ମହୀତଳେ ହୁଡ଼ି

ହା ନାଥ ! ପ୍ରିୟ ! ମହୀପତି !
ଅନାଥ ହୋଇଲୁଁ ଯୁବତୀ
ହେ ନାଥ ! ମରଣେ ତୋହର
ମଥୁରା ନ ଦିଶେ ସୁନ୍ଦର
ତୋର ବିୟୋଗେ ମଧୁପୁରୀ
ଏବେ ହୋଇଲା ହତଶିରୀ । ୪୩-୪୬
ତୁ ନାଥ ପ୍ରାଣିଙ୍କର ଭୁଲେ
ଦ୍ରୋହ ଚିନ୍ତିଲୁ ସର୍ବ କାଳେ
ଅସୁରବୁଦ୍ଧି ତୋର ମନ୍ଦ
ସାଧୁଙ୍କ ସଙ୍ଗେ କଲୁ ଦ୍ୱନ୍ଦ
ଧର୍ମକୁ ନଷ୍ଟପ୍ରାୟ ଛାଡ଼ିଲୁ
ବାଳକହାତେ ପ୍ରାଣ ଦେଲୁ
ପ୍ରାଣିଙ୍କ ହୃଦୟେ ଅନନ୍ତ
ଜଗତ ଯାର ଗର୍ଭଗତ
ବ୍ରହ୍ମାଣ୍ଡଠାକୁର ମୂରତି
ମାରଇ ପ୍ରାଣିହିଂସାକାରୀ
ତାହାର ସଙ୍ଗେ ବାଦ କଲୁ
ଇତର ପ୍ରାୟେ ତୁ ମଣିଲୁ
ସୃଷ୍ଟି ପାଳନ ଯାର ବାନା
ଭକତଜନ ବନ୍ଧୁ ସେହ୍ନ
ସଂସାରେ ଧର୍ମରୂପ ହୋଇ
ଭବ ଅଭବ ସେ ଘେନଇ
ତାର ମହିମା ତୁ ନ ଜାଣି
ଦ୍ରୋହ ଚିନ୍ତିଲୁ ଚକ୍ରପାଣି
ମରିବା ଉଚିତ ତୋହର
ଅନାଥ କଲୁ ମଧୁପୁର । ୪୭,୪୮
କହନ୍ତି ବ୍ୟାସଙ୍କ ନନ୍ଦନ
ଗୋବିନ୍ଦ ଶୁଣିଲେ ରୋଦନ
ଛାଡ଼ିଲେ କଂସେ ରୋଷମନ
ଦୟାସାଗର ଭଗବାନ

ରାଜକାମିନୀ ମଧ୍ୟେ ଯାଇ
ବିଜୟେ ବ୍ରହ୍ମାଣ୍ଡ ଗୋସାଇଁ
ଲୋକବେଭାରେ ନରହରି-
ଲୋଚନୁ ବହେ ଅଶ୍ରୁବାରି
କାନ୍ଦନ୍ତି ମାଇଁଙ୍କର ମେଳେ
ଗୋବିନ୍ଦ ମାୟା ଯୋଗବଳେ
ବୋଲନ୍ତି ମୋର କର୍ମମନ୍ଦ
ଦଇବ କରିଅଛି ଛନ୍ଦ
ଜାତ ହୋଇଲି ବନ୍ଦୀଘରେ
ପିତା ମୋ ଘେନିଗଲେ ଡରେ
ଗଉଡ଼ପଣେ ଦିନ ନେଇ
ମୋହର କୁଳ ମୂଳ ନାହିଁ
ସେବକପ୍ରାୟେ ନନ୍ଦଘରେ
ଗୋରୁ ଚରାଏଁ ବନ ଘୋରେ
ଦିବସେ ନ ରହୁନା ଘରେ
ଅନ୍ନ ପୂଡ଼ାଏ ଘେନିକରେ
ରାବ ପାଇଲେ ବନେ ଯାଇ
ଏମନ୍ତେ ଜୀବନ ପୋଷଇଁ
ଯେତେ ପଡ଼ିଲା କଷ୍ଟ ମୋତେ
ସୁମରି କହିବଇଁ କେତେ
ମୁଁ ମୋର ଦୁଃଖ ସୁଖେ ଥାଇଁ
ମଉଳା ତାହା ନ ଜାଣଇ
ମାଇଲା ମୋର ଷଡ଼ ଭାଇ
ପିତା ମାତାଙ୍କୁ ଦୁଃଖ ଦେଇ
ମୋତେ ମାରିବ ବୋଲି କଲା
ଅକ୍ରୂର ହାତେ ଅଣାଇଲା
ଧନୁଯାତ୍ରାଏ ମିଛେ କଲା
ଦ୍ୱାରେ ଗୋ ହସ୍ତୀଏ ଥୋଇଲା
ଦଇବେ ତହୁଁ ଉବୁରିଲି
ମାମୁଁଙ୍କ ଛାମୁରେ ମିଳିଲି

ତେବେହେଁ ଦୟା ଗୋ ନ କଲା
ମାଲଙ୍କ ହାତେ ଯୁଝାଇଲ
ତହୁଁ ଜୀଇଲି କର୍ମବଳେ
ମିଳିଲି ଯାଇ ମଞ୍ଚାତଳେ
ବୋଇଲା କୋପଭର ହୋଇ
ତଡ଼ାଇ ଦିଅ ବେନିଭାଇ
ବସୁଦେବଙ୍କୁ ନନ୍ଦ ସଙ୍ଗେ
ହାଣି ପକାଅ ନେଇ ବେଗେ
ଦେବକୀ ସଙ୍ଗେ ଉଗ୍ରସେନ
ଶୂଳରେ ବସାଅ ବହନ
ନନ୍ଦ ସମ୍ପଦ କର ଜୂର
ରାମ ଗୋବିନ୍ଦେ ପଛେ ମାର
ତା ଶୁଣି ଉଠିଲି ମଞ୍ଚାରେ
ତା କୋପ ଶାନ୍ତ କରିବାରେ
ପାଦେ ପଡ଼ିଲି ମୁହିଁ ଯାଇଁ
ଧାଇଁଲା ଖଡ଼ଗ ଉଞ୍ଚାଇ
ତା ଦେଖି ହୋଇଲି ବିକଳ
ବେଗେ ଧଇଲା ମୋର ବାଳ
ମଞ୍ଚାରୁ ଦେଲା ଫୋପଡ଼ାଇ
ତଳେ ଗୋ ପଡୁଥିଲି ମୁହିଁ
ବିକଳେ ଧଇଲି ପୟର
ପଡ଼ିଲା ମୋହର ଉପର
ମଞ୍ଚାରୁ ପଡ଼ି ମାମୁଁ ମଲା
ମୋତେ ତ ଦଇବ ରଖିଲା
ମୋହର କର୍ମେ ନାହିଁ ଭୋଗ
ରାଜା ଭଣଜାପଣେ ଯୋଗ
ଅର୍ଜି ମୁଁ ଥିଲି ଯାହା ପୂର୍ବେ
ଫଳିଲା ମୋତେ ଆସି ଏବେ
ମାୟା ସଂସାର ଏହି ମତେ
ଜନ୍ମ ମରଣ ବେନି ପଥେ
ପ୍ରାଣୀ ହୁଅନ୍ତି ଆତଯାତ
କର୍ମର ଫଳେ ସେ ପ୍ରାପତ

ପଥିକ ପଥଶ୍ରମ ପାଇ
ବସନ୍ତି ବୃକ୍ଷତଳେ ଯାଇ
ଶ୍ରମ ସାରିଲେ ଯେଝାମତେ
ଚଳନ୍ତି ବୃକ୍ଷ ଥାଇ ପଥେ
ତେମନ୍ତ ପ୍ରାୟ ଜନ୍ତୁ ମିଳି
ମାୟାସଂସାରେ ବସ୍ତୁ କେଳି
ଏଣେ ଯେ ନ କରନ୍ତି ଖେଦ
ତାହାଙ୍କୁ ନ ଲାଗେ ପ୍ରମାଦ
ତୁମ୍ଭେ ଗୋ ଅର୍ଜିଅଛ ଯାହା
ଏବେହେଁ ଭୁଞ୍ଜିବନା ତାହା
ଏମନ୍ତ ବୋଲି ଭଗବାନ
ମୋହିଲେ ମାଇଁଙ୍କର ମନ
ଆଶ୍ୱାସ କରି କଂସନାରୀ
ବଦନ ପୋଛିଲେ ମୁରାରି
ଜଣ ଜଣକେ ବୋଧି କଲେ
ଅନଳେ କଂସ ପୋଡ଼ାଇଲେ । ୪୯
ରାମ ଗୋବିନ୍ଦ ବେନିଭାଇ
ପିତାମାତାଙ୍କ କଷ୍ଟ ଚାହିଁ
ନୟନୁ ଅଶ୍ରୁଜଳ ବହି
ମଞ୍ଚ ଉପରେ ବେନିଭାଇ
ଚରଣୁ ବନ୍ଧନ ଫେଡ଼ାଇ
କହନ୍ତି ବଚନ ବିନୟୀ
ଦେବକୀ ବସୁଦେବ ପାଦେ
ପଡ଼ିଲେ ଶୋକ ଗଦଗଦେ
ଦେଖି ଚକିତ ପିତାମାତ
ତୋଳି ବସାଇ ଗୋପୀନାଥ
ଭୟେ କମ୍ପନ୍ତି ଥରହର
ବୋଲନ୍ତି ଶରଣ ତୋହର
ଅନାଦି ନାଥ ନିରଞ୍ଜନ
ଆମ୍ଭର ଦୋଷ ତୁ ନ ଘେନ
ପୂର୍ଣ୍ଣ ପ୍ରାପ୍ତେକ ତୋତେ ମଣି
ଯାହା ବନ୍ଦିଲୁ ଚକ୍ରପାଣି !

ଏ ଦୋଷ ନ ଘେନ ଆମ୍ଭର
ଶରଣ ରଖ ଚକ୍ରଧର
ଏମନ୍ତ ବୋଲି କମ୍ପେ କାୟେ
ଚକ୍ଷୁ ବୁଜିଲେ ମହାଭୟେ । ୫୦,୫୧
ବୋଲନ୍ତି ଶୁକ ମୁନିବର
ଶୁଣ ହୋ କୃଷ୍ଣର ଚରିତ୍ର
ବଳଦେବଙ୍କୁ ଅନାଇଲେ
ବୋଇଲେ ଜ୍ଞାନ ନ ପାଇଲେ
ଆମ୍ଭଙ୍କୁ ଛାଡ଼ିଲେ ଏ ଆଜ
କେମନ୍ତେ ହେବ ଦେବକାର୍ଯ୍ୟ
ଏମନ୍ତ ବୋଲି ବିଚାରିଲେ
ବିଷ୍ଣୁ ମାୟାକୁ ପ୍ରକାଶିଲେ
ପିତାମାତାଙ୍କ ଦେହେ ଯାଇ
ପଶିଲେ ଶୋକ ମୋହ ହୋଇ

ସେ ମାୟାଧର ପାଦଗତେ
ଭଜଇ ବିପ୍ର ଜଗନ୍ନାଥେ
କଂସ ଦାନବ ସଂହାରିଲେ
ଅବନୀଭାର ନିବାରିଲେ
ଭକତଜନଙ୍କର ବନ୍ଧୁ
ନାମ କରୁଣାମୟ ସିନ୍ଧୁ
ଏଣେ ନିବେଶି କୃଷ୍ଣ ମନ
ଶରଣ ପଶ ଭଗବାନ
ବୁଡ଼ି ନ ମର ଭବଜଳେ
କୃଷ୍ଣସୁନ୍ଦର ଉଠ କୂଳେ
ବ୍ରାହ୍ମଣ କୁଳେ ଜାତ ହୋଇ
ବିଷ୍ଣୁ ବାସନା ମୋର ନାହିଁ
ସ୍ୱପନେ କହିଲେ ମୁରାରି
ପୁରାଣ ଗୀତ ନାଦ କରି
ଏଣୁ ମୋହର ଭୟ ନାହିଁ
ସୁଜନେ ତର ଏହା ଗାଇ ॥

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ କଂସବଧୋ ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ । ୪୭ ।**

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

( ମୂଳାନୁସାରେ ୪୫ ଅଧ୍ୟାୟ )

ପଞ୍ଚଚତ୍ୱାରିଂଶକେଽଥ ପିତ୍ରୁନନ୍ଦାଦ୍ଧ ସାନ୍ତ୍ୱନଂ ।
ଉଗ୍ରସେନାଭିଷେକଶ୍ଚ ଗୁରୌ ବାସାତ୍ ପୁରାଗମଃ । ୦ ।

ଅଷ୍ଟଚାଳିଶେ କୃଷ୍ଣ ରାମ । ରାଜନ କରି ଉଗ୍ରସେନ ।
ବିଦ୍ୟା ପଢ଼ିଣ ଗୁରୁଘରେ । ପୁଣି ପ୍ରବେଶ ମଥୁରାରେ । ୦ ।

ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର
କହନ୍ତି ବ୍ୟାସଙ୍କ କୁମର
ଜଗତବନ୍ଧୁ ଜନାର୍ଦ୍ଦନ
ମୋହିଲେ ପିତାମାତା ମନ

ରାମର ମୁଖକୁ ଚାହିଁଲେ
ବିଷ୍ଣୁର ମାୟା ପ୍ରକାଶିଲେ
ଅଶେଷ ଜୀବଜନ୍ତୁ ଦେହୀ
ଅଛଇ ଯେଉଁ ମାୟା ମୋହି
ତାତ ଜନନୀ ପାଦତଳେ
ରାମ ଗୋବିନ୍ଦ ଏକମେଳେ

ବିଶ୍ୱାସେ ପୁଣ ପଡ଼ି ପାଦେ
କହନ୍ତି ଶୋକ ଗଦଗଦେ
ହେ ତାତ ! ମାତ ! ଶୁଣ ମୋର
ଏଇ ବଚନ ବଳୀୟାର
କଂସର ଡରେ ବେନିଭାଇ
ଏତେ ଦିବସ ଗୋପେ ଥାଇ
ବାଳକକାଳେ ମାତାକୋଳେ
ସୁତେ ବସନ୍ତି ସୁଖଭୋଳେ
ସେ ସୁଖ ନୋହିଲା ଆମ୍ଭର
କର୍ମର ଫଳ ବଳୀୟାର । ୧-୪
ତାତ ଜନନୀ ଉପକାର
ଶୁଝି ପାରିବ କେ କୁମର
ଗର୍ଭେ ବହନ୍ତି ଦୁଃଖ ସହି
ପୁଣ ପାଳନ୍ତି କ୍ଷୀର ଦେଇ
ସର୍ବ ସମ୍ପଦ ପୁଣ ଦେଇ
ତାହାଙ୍କ ପୋଷଣେ ଜୀଅଇ
ତାହାଙ୍କ ପ୍ରତି ଉପକାରେ
ଶତ ବରଷେ କେହୁ ପାରେ
ସେ ତାତ ଜନନୀ ପୋଷଣେ
ସମର୍ଥ ନୁହନ୍ତି ଯେ ଜନେ
ତାହାଙ୍କ ଜୀବନର ଅନ୍ତେ
ବେଗେ ମିଳନ୍ତି ଯମଦୂତେ
କର ଚରଣ ବାନ୍ଧି କୋପେ
ଘେନାଇ ଯାନ୍ତି ପରଲୋକେ
ନର୍କ ପଥେ ସେ ବିକଳେ
କାନ୍ଦନ୍ତି କ୍ଷୁଧାର ଆକୁଳେ
ତାର ବିକଳ ଦେଖି ପଥେ
କୋପେ ବୋଲନ୍ତି ଯମଦୂତେ
ମାତା ପିତାଙ୍କୁ ଦୁଃଖ ଦେଇ
ଜୀବନ ପୋଷିଲୁ ଯେ ତୁହି
ଯମ ଯେ ବୋଲିବେ ଅପାର
ଦଣ୍ଡିବେ ତାହାର ଉପର
ବୋଲିବେ ପୁଣ୍ୟ ଥିଲା ତୋର
ସେ ପାପେ ହୋଇଲା ଅନ୍ତର
ଏବେ ଖାଇବୁ ଆର କିସ
ଏମନ୍ତ ବୋଲି ତାର ମାଂସ
କାଟି ତାହାର ମୁଖେ ଦ୍ୟନ୍ତି
ନଦ୍ଧେ ଯେ ଯଷ୍ଟି ପ୍ରହାରନ୍ତି । ୫,୬
ହେ ତାତ ! ଶୁଣ ଏକଚିତ୍ତେ
ବିପ୍ରେ କହନ୍ତି ବେଦମତେ
ତାତ ମାତାଙ୍କ ବୃଦ୍ଧକାଳେ
ନିଜ ଭାରିଯା ଶିଶୁ ମେଳେ
ଗୋରୁ ବ୍ରାହ୍ମଣ ଗୁରୁଜନ
ଏହାଙ୍କୁ ନ ଦେଲୁ ଭୋଜନ
ଯେ ପ୍ରାଣୀ ଆତ୍ମାକୁ ତୋଷନ୍ତି
ଜୀବନ ଥାଉଁ ସେ ମରନ୍ତି । ୭
କଂସର ଡରେ ଗୋପେ ଥାଇ
ଦୁଃଖେ ବଞ୍ଚିଲୁ ବେନିଭାଇ
ତୁମ୍ଭ ସେବାରେ ନାହିଁ ମନ୍ତ୍ର.
ନିଷ୍ଫଳେ ଗଲା ଆମ୍ଭ ଦିନ
ସେ ଦୋଷ କ୍ଷମାକର ତାତ
ଆମ୍ଭେ ହୋଇଲୁ ପରଯୁତ । ୮,୯
ଏମନ୍ତ କହି ଦାମୋଦର
ମନ ମୋହିଲେ ତାହାଙ୍କର
କୃଷ୍ଣବଚନେ ପିତା ମାତା
ଛାଡ଼ିଲେ ମନଦୁଃଖ ଚିନ୍ତା
ଅତି ଆନନ୍ଦେ ବେନି ଜନ
ପୁତ୍ରଙ୍କୁ ଦିଅନ୍ତି ଚୁମ୍ବନ
କୋଳେ ବସାଇ ହୃଦେ ଭିଡ଼ି
ବେନି ଲୋଚନୁ ବହେ ବାରି
ବୁଡ଼ିଲେ ମାୟା ମୋହଜଳେ
କଂସେନଷ୍ଟ ରେ ଶୋକଭରେ । ୧୦,୧୧
ଏମନ୍ତେ ପ୍ରଭୁ ବ୍ରହ୍ମରାଶି
ତାତ ଜନନୀ ମନ ତୋଷି

ଉଗ୍ରସେନଙ୍କୁ ଅଣାଇଲେ
ରାଜଆସନେ ବସାଇଲେ
ବୋଲନ୍ତି ପ୍ରଭୁ ଦେବରାଜା
ଆମ୍ଭେ ସକଳେ ତୋ ପରଜା

ତୁ ଭୋଜବଂଶ ନୃପବର
ବହିବୁ ରାଜ୍ୟ-ମହାଭାର
ଯଯାତି ନାମେ ମହାନୃପ
ଯଦୁଙ୍କୁ ଦେଇଅଛୁ ଶାପ

ଏଣୁ ଯଦୁଙ୍କୁ ପାଟ ନାହିଁ
ରାଜା ହୋଇଲେ କ୍ଷୟ ଯାଇ

ତୁ ଆମ୍ଭ ବୋଲେ ନୃପବର
ଆମ୍ଭେ ଖଟିବୁ ତୋ ପର୍ଯ୍ୟୁର । ୧୨,୧୩

ଏମନ୍ତ ବୋଲି ବନମାଳୀ

ଆପଣେ କଲେ ନିଜଗୁଳ
ସୁବର୍ଣ୍ଣକୁମ୍ଭେ ଗଙ୍ଗାନୀର
ଦଧି ଅକ୍ଷତ ଗନ୍ଧସାର

ଗୋବିନ୍ଦ ତୋଳି ବେନି କରେ

ଢାଳିଲେ ଉଗ୍ରସେନ ଶିରେ
ନାନା ଉତ୍ସବେ ଅଭିଷେକ

ସ୍ୱର୍ଗେ ଦେଖନ୍ତି ଦେବଲୋକ

ବାଜଇ ସ୍ୱରତୂର ନାଦ

ମଥୁରା ହୋଇଲା ଆନନ୍ଦ

ଉଗ୍ରସେନଙ୍କୁ ରଜା କରି
କୃଷ୍ଣ କହନ୍ତି କରଯୋଡ଼ି

ଭ୍ରାନ୍ତି ତୁ ନ କର ମନରେ
ତୋ ଭୟ ନାହିଁ ଏ ସଂସାରେ

ମୁହିଁ ଯାହାର ଆଜ୍ଞାକାରୀ
କେ ତାର ହୋଇବ ବଇରୀ

ଇନ୍ଦ୍ର ଆଦି ଯେ ଦିଗପାଳେ

ଖଟିବେ ତୋର ପାଦତଳେ

ମଞ୍ଚରାଜାଙ୍କୁ ନାହିଁ ଡର
ବୋଲନ୍ତି ବ୍ରହ୍ମାଣ୍ଡଠାକୁର । ୧୪

ଏମନ୍ତେ ରାଜପଦ ଦେଇ
ରାମ ଗୋବିନ୍ଦ ବେନି ଭାଇ

ଯେତେ ଡ଼ଗରେ ଥିଲେ ଦେଶେ
ଅଣାଇ କହିଲେ ବିଶ୍ୱାସେ

ତୁମ୍ଭେ ହୋ ଯାଅ ଗୃହଦିଗେ

ମୋହର ଆଜ୍ଞା ଘେନ ବେଗେ

ଯାଦବ ଆଦି ସାତ୍ୱଂଶେ

ଯେ ଅବା ଛନ୍ତି ଯେଉଁ ଦେଶେ

ନିର୍ଭୟ ହୋଇ ତୁମ୍ଭେ ଆସ

ଗୋବିନ୍ଦ ତୁମ୍ଭର ବିଶ୍ୱାସ

ଏମନ୍ତ ବୋଲି ଆଜ୍ଞା ଦେଲେ
ବନ୍ଧୁ ବାନ୍ଧବ ଅଣାଇଲେ
ଜଣ ଜଣକେ ତୋଷ କରି

ଦାସ ବତ୍ସଳ ନରହରି

ଯେଝାରପୁରେ ଦେଲେ ବାସ
ଧନ ସମ୍ପଦ ଅନ୍ନ ଦେଶ । ୧୫,୧୬

ଯାଦବେ କୃଷ୍ଣର ବିଶ୍ୱାସେ
ଗୃହେ ରହିଲେ ମନତୋଷେ
ରାଜ ଦିବସେ କୃଷ୍ଣମୁଖ
ଦେଖି ଘୁଞ୍ଚିଲେ ମନୁଦୁଃଖ
ବୃଦ୍ଧ ବାଳକ ଦୁଃଖୀ ନାହିଁ
ସକଳେ ଯୁବା ପ୍ରାପ୍ତ ହୋଇ
କୃଷ୍ଣର ଅପୂର୍ବ ବଦନ
ଦେଖି ହୋଇଲେ ତୋଷମନ ।୧୭,୧୯
ସେ କୃଷ୍ଣ ଚରଣେ ବିଶ୍ୱାସ
ଭଣଇ ଜଗନ୍ନାଥ ଦାସ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଉଗ୍ରସେନ ସିଂହାସନାରୋହଣଂ
ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ । ୪୮ ।
ସମାପ୍ତଶ୍ଚାୟଂ ଦଶମସ୍କନ୍ଧପୂର୍ବାର୍ଦ୍ଧଃ । ଶ୍ରୀ କୃଷ୍ଣାର୍ପଣମସ୍ତୁ ।

# ବିଜ୍ଞାପନ

**ଆମ୍ଭ ଷ୍ଟାଲରେ ନିମ୍ନଲିଖିତ ଅଷ୍ଟାଦଶ ପୁରାଣ ମିଳେ ।**
**ଅଗ୍ରୀମ ସହ ଅର୍ଡର ପ୍ରାର୍ଥନୀୟ ।**

| | | |
|---|---|---|
| ବ୍ରହ୍ମାଣ୍ଡ ପୁରାଣ | | ଟ ୩-୫୦ |
| ବ୍ରହ୍ମବୈବର୍ତ୍ତ ପୁରାଣ ( ସେଟ୍ ) | | ଟ ୩୦-୦୦ |
| ମାର୍କଣ୍ଡେୟ ପୁରାଣ | | ଟ ୮-୫୦ |
| ଭବିଷ୍ୟ ପୁରାଣ | | ଟ ୨-୦୦ |
| ବାମନ ପୁରାଣ | | ଟ ୯-୦୦ |
| ବ୍ରହ୍ମ ପୁରାଣ ( ସେଟ୍ ) | | ଟ ୧୬-୦୦ |
| ମହାବିଷ୍ଣୁ ପୁରାଣ | | ଟ ୭-୦୦ |
| ଭାଗବତ ( ସେଟ୍ ) | | ଟ ୩୨-୦୦ |
| ଭାଗବତ ( ସେଟ୍ ) | ( ଷଢ଼ଜଣୋର ) | ଟ ୪୫-୦୦ |
| ଗରୁଡ଼ ପୁରାଣ | | ଟ ୫-୭୫ |
| ନାରଦୀୟ ପୁରାଣ | | ଟ ୭-୫୦ |
| ପଦ୍ମ ପୁରାଣ | | ଟ [illegible]-୦୦ |
| ବରାହ ପୁରାଣ | | ଟ ୪-୦୦ |
| ମତ୍ସ୍ୟ ପୁରାଣ | | ଟ ୨-୦୦ |
| କୂର୍ମ ପୁରାଣ ୧ମ, ୨ୟ ଓ ୩ୟ ( ଏକତ୍ର ) | | ଟ ୮-୦୦ |
| ଲିଙ୍ଗ ପୁରାଣ | | ଟ ୯-୦୦ |
| ବାୟୁ ପୁରାଣ ( ସେଟ୍ ) | } | ଟ ୨୦-୦୦ |
| ମହାତ୍ମ୍ୟରେ | } | |
| ଶିବ ପୁରାଣ ( ସେଟ୍ ) | } | ଟ ୧୮-୭୫ |
| ସ୍କନ୍ଦ ପୁରାଣ | | ଟ ୨-୦୦ |
| ଅଗ୍ନି ପୁରାଣ | | ଟ ୫-୦୦ |

ପ୍ରାପ୍ତିସ୍ଥାନ

**ଓଡ଼ିଶା ଜଗନ୍ନାଥ କମ୍ପାନୀ**

**ବାଲୁବଜାର, କଟକ-୨**